# ମନେପଡେ

ଅ୍ୟାନା ଏଲୀନର ଉକ୍‌ଭେଲ୍‌ଟ୍‌ଙ୍କ ପ୍ରଣୀତ

ଚନ୍ଦ୍ରଶେଖର ପୁସ୍ତକାଳୟ

ପ୍ରକାଶକ
ଶ୍ରୀ ଆକୁଳ ମିଶ୍ର ବି, ଏ
ଚନ୍ଦ୍ରଶେଖର ପୁସ୍ତକାଳୟ
୧୨୩।୧ଏ, ବହୁବଜାର ଷ୍ଟ୍ରୀଟ, କଲିକତା—୧୨

Oriya Translation of
THIS I REMEMBER
(Condensation)
By
Eleanor Roosevelt



ମୁଦ୍ରାକର
ପି, ସି, ବିଶ୍ୱାସ
ଆଂଲୋ ଓଡ଼ିଆ ପ୍ରେସ,
୧୧୮, ବହୁବଜାର ଷ୍ଟ୍ରୀଟ,
କଲିକତା—୧୨

ମୂଲ୍ୟ ଦୁଇଟଙ୍କା

# ମନେ ପଡ଼େ

ମୋ ସ୍ୱାମୀ ଓ ସେ ଯେଉଁମାନଙ୍କ ସାଙ୍ଗରେ କାମ କରୁଥିଲେ, ସେମାନଙ୍କ ସମ୍ବନ୍ଧରେ ଆଗାମୀ କେତେ ବର୍ଷ ମଧ୍ୟରେ ବହୁ ବହି ଲେଖା ହେବାର କଥା । ସେଇଥି ପାଇଁ ମୋର ଯାହା କହିବାର ଅଛି ସେଥିରେ ଯଦି ତାଙ୍କର ଜୀବନ, ଚରିତ୍ର ଓ ଉଦ୍ଦେଶ୍ୟ ଜାଣିବା ପକ୍ଷରେ ବିନ୍ଦୁମାତ୍ର ସାହାଯ୍ୟକରେ, ତାହା ବ୍ୟକ୍ତି ହିସାବରେହିଁ କରିବ ।

ଏ ଦାବୀ ମୁଁ କରୁନାହିଁ ଯେ ତାଙ୍କ ସଙ୍ଗରେ ମୁଁ ପୂରାପୂରି ବସ୍ତୁନିଷ୍ଠ ହୋଇ ପାରିବି ବୋଲି । କିନ୍ତୁ ତାଙ୍କ ସମ୍ବନ୍ଧରେ ମୁଁ ଏତେ ବେଶୀ କଥା ଜାଣିଛି, ଯାହା ଆଉ କାହା ପକ୍ଷରେ ଜାଣିବା ଏକାବେଳେ ଅସମ୍ଭବ । ଏ ସମ୍ବନ୍ଧରେ ମୁଁ ନିଶ୍ଚିତ । ଅନ୍ୟ କେହି ହୁଏତଃ ଫ୍ରାଙ୍କଲିନ୍‌ଙ୍କ ଚରିତ୍ରର କୌଣସି ଗୋଟିଏ ଦିଗ ବା ତାଙ୍କ ଚରିତ୍ରର ବିଶିଷ୍ଟ ଲକ୍ଷଣ ଭଲ-ଭାବରେ ଜାଣିପାରନ୍ତି, ହେଲେ ମୁଁ ଯାହା ଜାଣେ ଓ ସତ୍ୟବୋଲି ମନେକରେ ସେ ସବୁ ଯଦି ଲିପିବଦ୍ଧ କରିପାରେ, ତାହେଲେ ଭବିଷ୍ୟତ ଐତିହାସିକ ମାନଙ୍କ ପାଇଁ ତାଙ୍କର ଛବିର ଗୋଟିଏ ପୂର୍ଣ୍ଣାଙ୍ଗ ଅଙ୍କନ କରାଇବା ଦିଗରେ ସାହାଯ୍ୟ କରିବ ମାତ୍ର ।

ଫ୍ରାଙ୍କଲିନ୍ ସାଧାରଣତଃ ମୋତେ ଅନ୍ୟର ମନକଥା ଯାଞ୍ଚ କରିବା କାମରେ ଲଗାନ୍ତି । ସେ ଜାଣୁଥିଲେ ଯେ ବହୁ ପ୍ରକାରର ଲୋକଙ୍କ ସହିତ ଦେଖା ସାକ୍ଷାତ ଓ ଆଲାପ ଆଲୋଚନା କରିବା ହେଲା ମୋର କାମ । ବକ୍ତୃତା ଦେଇ ବୁଲିବା ବା ଦେଶର ବିଭିନ୍ନ ସ୍ଥାନର ପରିକଳ୍ପନା କାମ ଦେଖିବା ମୋର ଦରକାର ନାହିଁ । ସ୍ୱାମୀ ଜାଣୁଥିଲେ ଯେ କେବଳ ସରକାରୀ

ଗୃହ କର୍ତ୍ରୀଙ୍କ ଭୂମିକାରେ ମୋ ମନ ବୁଡ଼ି ରହୁନଥିଲା । ସେ ଅନେକ ସମୟରେ ପ୍ରସ୍ତାବ କରୁଥିଲେ ଯେ ମୁଁ ଯେପରି ଘରକରଣା କାମରେ ମନଯୋଗ ଦିଏ । ସେ ଚାହୁଁଥିଲେ ଯେ ମୁଁ ଯେପରି ସବୁବେଳେ କିଛି ନା କିଛି କରୁଛି । ତା ନହେଲେ ମୋ ଜୀବନ ନିରାନନ୍ଦ ହୋଇପଡ଼ିବ ।

ପ୍ରାୟ ଯେତେବେଳେ ପରାମର୍ଶଦାତା ମାନଙ୍କ ସହିତ କୌଣସି ଗୋଟିଏ ବିଷୟରେ ଦ୍ୱନ୍ଦ ହୁଏ, ସେ ନୈଶ ଭୋଜନ ସମୟରେ ସେ କଥା ଉତ୍ଥାପନ କରନ୍ତି । ମୋ ସାଙ୍ଗରେ ମିଳିବ ନାହିଁ ଏହା ଜାଣି ଶୁଣି ଗୋଟିଏ ନିଜର ମତ ଉପସ୍ଥାପିତ କରନ୍ତି । ଏପରି ଭାବରେ ସେ ମୋତେ ଆଲୋଚନାରେ ବ୍ୟାପୃତ କରାଉଥିଲେ । ତାଙ୍କ ବିପକ୍ଷର ଯୁକ୍ତି ଗୁଡ଼ିକ ସେ ଧରି ବସନ୍ତି ଓ ମୁଁ ଉତ୍ତ୍ୟକ୍ତ ହୋଇ ପଞ୍ଚମ ସ୍ୱରରେ ତାଙ୍କର ଯୁକ୍ତି ସବୁକୁ ଖଣ୍ଡନ କରୁବାକୁ ଚେଷ୍ଟା କରୁଥିଲି । ରାଜନୀତି ଆଡୁ ସ୍ୱାମୀ ଉପରେ ମୋର ପ୍ରଭାବ ବିରାଟ, ଏକଥା ଲୋକେ ପ୍ରାୟ ଭାବିଥାନ୍ତି । ବାରମ୍ବାର ସେମାନେ ତାଙ୍କର କାର୍ଯ୍ୟାବଳି, ଅଧିକନ୍ତୁ ତାଙ୍କର କେତେଗୁଡ଼ିଏ ନିୟମ ସମ୍ବନ୍ଧରେ ମୋତେହିଁ ଦାୟୀ କରିଛନ୍ତି, କୃତିତ୍ୱ ଯେ ନ ଦେଇଛନ୍ତି, ତାହାନୁହେଁ । ବେଳେବେଳେ କର୍ମନିଯୋଗ ନାମ ତାଲିକାରେ ନାମସବୁ ଦଳଗତ ବା ବ୍ୟକ୍ତିଗତ ଭାବରେ ବାହାରେ । ସ୍ତ୍ରୀଲୋକମାନଙ୍କର ନାମ ସେ ତାଲିକାରେ ଦେଖିବାକୁ ମିଳେ ନାହିଁ । ଅନେକ ସମୟରେ ମୁଁ ସ୍ୱାମୀଙ୍କ ନିକଟକୁ ଯାଇ କହେ, କହି କହି ମୁଁ ଥକିଯାଇଛି ଯେ ସେ ଯେପରି ତାଙ୍କ ମନ୍ତ୍ରୀ ସଭାର ସଦସ୍ୟ ଓ ପରାମର୍ଶଦାତାମାନଙ୍କୁ ଚେତାଇ ଦିଅନ୍ତି ଯେ ସ୍ତ୍ରୀଲୋକମାନେ ବି ବଞ୍ଚିଛନ୍ତି । ସେମାନେ ବି ଜାତିର ଜୀବନରେ ଗୋଟିଏ ଅଙ୍ଗ ବିଶେଷ । ରାଜନୀତି ଦୃଷ୍ଟିକୋଣରୁ ସେମାନଙ୍କ ଗୁରୁତ୍ୱ କ୍ରମେ ବଢ଼ୁଛି । ସେ ସବୁବେଳେ ମୃଦୁ ହସ ହସି କହୁଥିଲେ "ନିଶ୍ଚୟ, ମୁଁ ତ ଭାବିଥିଲି କୌଣସି ସ୍ତ୍ରୀଲୋକଙ୍କ ନାମ ତାଲିକାଭୁକ୍ତ ହୋଇଛିବୋଲି, ସମସ୍ତଙ୍କୁ କହିଦିଅ, ସ୍ତ୍ରୀଲୋକମାନେ ସ୍ଥାନ ପାଉନ୍ତୁ, ଏହା ମୋହର ଇଚ୍ଛା ।" ଏହାରି ଫଳରେ ମୋତେ ବେଳେବେଳେ ପରାମର୍ଶ ପାଇଁ ଡାକରା ପଡ଼ୁଥିଲା । ସେତେବେଳେ ମୁଁ ଦୁଇ ତିନି ଜଣଙ୍କ

ନାମ କରୁଥିଲି । ବେଳେବେଳେ ସେ ସବୁର ବିଚାର ହେଉଥିଲା, ପୁଣି କେତେବେଳେ ବି ସେ ସବୁର ମୋଟେ ବିଚାର ହେଉନଥିଲା ।

ଯେଉଁ ରାଜନୈତିକ ପ୍ରଭାବ କଥା ମୋ ସମ୍ବନ୍ଧରେ କୁହା ହେଉଥିଲା ସ୍ୱାମୀଙ୍କ ଉପରେ ମୋର ତାହା ଆଦୌ ନଥିଲା । ସବୁଠୁଁ ଏହାର ବଡ଼ କାରଣ ହେଲା ମୁଁ ଜାଣିଥିଲି ଯେ ଯାହା ମୁଁ ପାରିବି ନାହିଁ, ତାହା କରିବା ପାଇଁ ବିନ୍ଦୁମାତ୍ର ଚେଷ୍ଟା କରୁନଥିଲି । ଯେବେ କେତେବେଳେ ମନ ମଧ୍ୟରେ ଖୁବ୍ ଆବଶ୍ୟକତା ଅନୁଭବ କରୁଥିଲି, ଫ୍ରାଙ୍କଲିନ୍‌ଙ୍କୁ ତାହା କହୁଥିଲି, କାରଣ କରିବାର ମାଲିକ ସେ, ମୁଁ ନୁହେଁ । କିନ୍ତୁ ସେ ସବୁବେଳେ ମୁଁ ଯେପରି ଭାବୁଥିଲି—ସେ ମଧ୍ୟ ସେପରି ଭାବୁଥିଲେ ।

ସେତେବେଳରୁ ମୁଁ ଏହା ଆବିଷ୍କାର କରିଛି ଯେ ବହୁ ସରକାରୀ କର୍ମଚାରୀ ମୋର ଚିଠି ପାଇ ସେ ସବୁ ଦ୍ରୁତ ନିଷ୍ପନ୍ନ କରିବାର ଆଦେଶ ବୋଲି ଧରି ନେଉଥିଲେ । ସେମାନେ ନିଶ୍ଚୟ ଭାବୁଥିଲେ, ମୁଁ ଯାହା କହୁଛି, ସେ ସବୁ ଯଦି କରା ନହୁଏ, ମୁଁ ମୋ ସ୍ୱାମୀଙ୍କ ପାଖରେ ଅଭିଯୋଗ ଜଣାଇବି । ସତ କହିବାକୁ ଗଲେ ମୁଁ କେବଳ ଏତିକି ଚାହୁଁଥିଲି ଯେ ଯାହାର ଯେଉଁ କାମ କରିବା କଥା, ସେ ଆଡ଼କୁ ତାଙ୍କର ଦୃଷ୍ଟି ପଡ଼ୁଥାଏ । କାରଣ, ସରକାର ଜନସାଧାରଣଙ୍କର ମଙ୍ଗଳ କାମନାହିଁ କରିଥାନ୍ତି ।

ମୋହର ସ୍ୱାମୀ ଯେତେବେଳେ ଗଭର୍ଣ୍ଣମେଣ୍ଟ ଓ ପ୍ରେସିଡେଣ୍ଟ ଥିଲେ. ଆମେ ସେତେବେଳେ ହ୍ୱାଇଟ୍ ହାଉସକୁ ଆସୁ । ଆମେରିକାର ଗଣଜୀବନ ସହିତ ସେ ଓତପ୍ରୋତ ଭାବରେ ଜଡ଼ିତ । ତାଙ୍କର ପାରିବାରିକ ସମସ୍ୟା ସମ୍ବନ୍ଧରେ ମୁଁ ବହୁବାର ଗମ୍ଭୀର ଭାବରେ ଚିନ୍ତା କରି ଦେଖିଛି । ବିଶେଷ ଭାବରେ ସେ ଯଦି ଏପରି ଗୋଟିଏ ମନୁଷ୍ୟ ହୁଅନ୍ତି ଯେ ଘୋର ମତ ଦ୍ୱୈଧର ବିଷୟ—କେହିବା ତାଙ୍କୁ ଆନ୍ତରିକ ଘୃଣା କରନ୍ତି ପୁଣି କେହି ତାଙ୍କୁ ଆନ୍ତରିକ ଭଲପାନ୍ତି—ତାଙ୍କ ପ୍ରତି ମନୁଷ୍ୟର ଏହି ବ୍ୟବହାର ତାଙ୍କର ପରିବାରବର୍ଗଙ୍କ ମଧ୍ୟରେ ନିଶ୍ଚୟ ପ୍ରବେଶ କରିବ ଓ ସେମାନଙ୍କ ଉପରେ ସେ କିଞ୍ଚିତ୍ ପରିମାଣରେ ପ୍ରଭାବ ନ ପକାଇବ ଏମିତ ନୁହେଁ । ପିଲାମାନଙ୍କ ପକ୍ଷରେ ବ୍ୟାପାରଟି

ଖୁବ୍ ଜଟିଳ ହୋଇ ଉଠିବ । ସବୁ ଆଡ଼ୁ ସେମାନଙ୍କୁ ବିଶେଷ ସୁଯୋଗ ଓ ସୁବିଧା ଦେବାକୁ ହେବ । ସେମାନେ ତାହା ନନେଲେ ସେମାନଙ୍କୁ ଅକୃତଜ୍ଞ ବୋଲି ଗଣିବାକୁ ହେବ । ନେଲେ ସେମାନଙ୍କୁ ସ୍ୱାର୍ଥପର, ଉଦ୍ଧତ, ଲୋଭୀ ବୋଲି ଦୋଷୀ ପ୍ରତିପନ୍ନ କରିବାକୁ ହେବ । ଲୋକେ କହିବେ ସେମାନେ ନିଜକଥା ଷୋଳଅଣା ବୁଝନ୍ତି । ନିଜକୁ ଖୁବ୍ ବଡ଼ ବୋଲି ଭାବନ୍ତି । ପିଲା-ମାନଙ୍କ ମଧ୍ୟରେ ଯେଉଁ ସବୁ ବଦ୍‌ସ୍ୱଭାବ ଦେଖିଲେ ଆମେ ସବୁ ନିନ୍ଦାକରୁ, ସେ ସବୁଗୁଡ଼ିକ ସେମାନଙ୍କ ଉପରକୁ ଆସିଯିବ ।

ମନେପଡ଼େ, ଗ୍ରେଟ ଫ୍ରାଙ୍କଲିନ୍ ସେତେବେଳକୁ କଲେଜରେ ଅଧ୍ୟୟନ କରୁଥାଏ । ଆଲ୍‌ବାନି ଓ ବୋଷ୍ଟନ ବାଟରେ ବେଆଇନ ତୀବ୍ର ଗତିରେ ଗାଡ଼ି ଚଳାଇଥିଲେ ବୋଲି ତାଙ୍କୁ ଗ୍ରେପ୍ତାର କରିହୁଏ । ତାଙ୍କର ବାପା ଓ ମୁଁ ଆଶା କରୁଥିଲି, ଯେତେଦୂର ଶାସ୍ତି ସମ୍ଭବ, ତାକୁ ଦିଆଯିବ । ତାହେଲେ ସେ ଯାଇ ବୁଝିବ ଦୋଷ ଗୁରୁତର ନହେଲେ ବି ଆଇନ ଅମାନ୍ୟ କରିବାର ଅବଶ୍ୟମ୍ଭାବୀ ଫଳ ଯେ କ'ଣ, ତାହା ହାଡ଼େ ହାଡ଼େ ବୁଝିବ । ସବୁଠାରୁ ଆମ୍ଭେ ଏହାହିଁ ଚାହୁଁଥିଲୁ ଯେ ସେ ଶିଖୁ ଆଇନ ଭାଙ୍ଗିବାର ଶାସ୍ତି ନିର୍ମମ ଭାବରେ ଗଣତାନ୍ତ୍ରିକ ରାଷ୍ଟ୍ରରେ ସମସ୍ତଙ୍କ ଉପରେ ଆସି ପଡ଼ିଥାଏ । ମନେ-ପଡ଼େ, ନିରାଶହିଁ ହୋଇଥିଲି, ଯେତେବେଳେ ଜାଣିଲି, ସାମାନ୍ୟ ଅର୍ଥଦଣ୍ଡ ନକରି ତାକୁ ଛାଡ଼ି ଦିଆହୋଇଛି । ଆମେ ଭଲକରି ଜାଣିଥିଲୁ, ପିଲାଟାକୁ ଉଚିତ ଦଣ୍ଡ ହୋଇନାହିଁ ବୋଲି । କୌଣସି ଲୋକ ବିଶ୍ୱାସ କରନ୍ତି ନାହିଁ ଯେ ଆମେ ଆମର ପ୍ରଭାବ ବିସ୍ତାର କରିବାରେ ଚେଷ୍ଟା କରିନାହୁଁ କିମ୍ବା ଏଥି ପାଇଁ ବିଶେଷ ଅନୁଗ୍ରହର ଦାବି କରିନାହୁଁ ବୋଲି । ଆମର ପିଲା-ଝିଲାଙ୍କ ସଂଖ୍ୟା ପାଞ୍ଚୋଟି । ଏମାନେ ଏପରି ଗୋଟିଏ ପରିବାର ମଧ୍ୟରେ ଲାଳିତ ପାଳିତ ଯେ ଯେଉଁଠାରେ ପିତା ସର୍ବଦା ଜନସାଧାରଣଙ୍କ କାର୍ଯ୍ୟରେ ଦିନରାତି ବୁଡ଼ି ରହିଥାନ୍ତି ଆଉ ସେମାନଙ୍କର ଗୋସାଇଁ ଡେଲେନୋ ଐତିହ୍ୟ ବଜାୟ ରଖି ପରିବାରର କର୍ତ୍ତୃତ୍ୱ ନେଇ ସବୁବେଳେ ବୁଝାଇବାକୁ ଚାହୁଁ-ଥିଲେ ଯେ ମୋର ଜୀବନ କେଭେହେଲେ ନିରାନନ୍ଦମୟ ନୁହେଁ ।

କେବଳ ପିଲାମାନଙ୍କର ବିପଦ ଘର ବାହାରୁ ଯେ ଆସିଲା ତା ନୁହେଁ । ଗୋଟିଏ ଆଡୁ ସେମାନଙ୍କର ସୁଯୋଗ ଓ ସୁବିଧା ଥିଲା ପ୍ରଚୁର । ସମାଲୋଚନାର ଶେଷ ନଥିଲା ସେମାନଙ୍କର । ଆଉରି ଗୋଟିଏ କାରଣରୁ ବିପଦ ମଧ୍ୟ ଆସିଲା । ମୋ ଶାଶୁ ପିଲାମାନଙ୍କୁ ଖୁବ୍ ଆବ୍ଦାର ଦେଉଥିଲେ ଓ ସେମାନଙ୍କୁ ନିଜ ପୁତ୍ରବତ୍ ସ୍ନେହ କରୁଥିଲେ । ମୁଁ ସେମାନଙ୍କୁ ଭଲମନ୍ଦ ନ ବୁଝାଉଥିବାରୁ ସେ ମୋ ଉପରେ ଅନେକ ସମୟରେ ବିରକ୍ତି ପ୍ରକାଶ କରନ୍ତି । ହେଲେ, କେଉଁଟା ଭଲ ବା କେଉଁଟା ମନ୍ଦ ସେ ସମ୍ବନ୍ଧରେ ମୁଁ ନିଜେ ବି ନିଶ୍ଚିତ ନଥିଲି ।

ଗ୍ରେଟ ଫ୍ରାଙ୍କଲିନ୍ ସ୍କୁଲ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାରିଲା ପରେ ଖଣ୍ଡିଏ ଗ୍ଲେଟ ଗାଡ଼ି ଉପହାର ଦେଇଥିଲି । ସେ ଖଣ୍ଡିକ ସେ ଭାଙ୍ଗି ଚୂରମାର କରିଦିଏ । ଆମେ ଠିକ୍ କଲୁ କିଛିଦିନ ପାଇଁ ଗାଡ଼ି ବ୍ୟତୀତ ଚାଲିକରି ଯିବାଆସିବା କରିବା ତାର ହେବ ଉଚିତ ଶାସ୍ତି । ଆମେ କିନ୍ତୁ ବିନ୍ଦୁମାତ୍ର ଜାଣିପାରିଲୁ ନାହିଁ ଯେ ଇତି ମଧ୍ୟରେ ତା ଗୋସାଁମା ଆଗରୁ ଢେର ବେଶୀ ଦାମରେ ଖଣ୍ଡେ ଗାଡ଼ି କିଣି ଦେଇଛନ୍ତି । ଆମେସବୁ ଯେତେବେଳେ ପ୍ରତିବାଦ କଲୁ, ସେ ବେଶ୍ ଶାନ୍ତଭାବରେ କହିଲେ ଆମେ ସବୁ ଯେ ଏ ବିଷୟ ପସନ୍ଦ କରିବୁ ନାହିଁ, ସେ କଥା ସ୍ୱପ୍ନରେ ହେଲେ ସେ ଭାବିନଥିଲେ ।

ଜନ୍ ନିଜ ଜିନିଷ ବିଷୟରେ ଖୁବ୍ ସତର୍କ ଥିଲା । ସେ ଶାନ୍ତ ଓ ଟିକିଏ ବେଶୀ ଧରଣର ରକ୍ଷଣଶୀଳ । ସେଇଥି ଯୋଗୁ ତାର ଦାବି ବି ବେଶୀ ନଥିଲା । ସେ କଲେଜରେ ପ୍ରଥମ ବର୍ଷରେ ପୋଲୋ ଖେଳୁଥିଲା । ପରେ ବୁଝିପାରିଲା ଯେ ତା ପକ୍ଷରେ ଖେଳ ଖର୍ଚ୍ଚ ଚଳାଇବା ଅସମ୍ଭବ । ସୁତରାଂ ସେଥିରେ ବେଶୀ ନ ମାତି ଖେଳ ଛାଡିଦେଲା । ସବୁବେଳେ ସେ ତାର ଚରିତ୍ରରେ ଦୃଢ଼ତା ଦେଖାଇଛି । ଆଉରି ମଧ୍ୟ ଆର୍ଥିକ ବ୍ୟାପାରରେ ସେ ଖୁବ୍ ବିଚକ୍ଷଣତା ମଧ୍ୟ ଦେଖାଇଛି ।

ପିଲାଝିଲାଏ ଲେଖାପଢ଼ା ଶିଖି ଯେ କ'ଣ କରିବେ, ଏ ସମ୍ବନ୍ଧରେ ମୋର ସ୍ୱାମୀଙ୍କର କେତୋଟି ନିଜସ୍ୱ ମତ ଥିଲା । ସେମାନଙ୍କର ଶିକ୍ଷା ଶେଷ ନ

ହେବାଯାଏ, ସେମାନେ ପାରିବାରିକ ଜୀବନ ଓ ସମ୍ପତ୍ତି ଭୋଗକରି ପାରିବେ । କିନ୍ତୁ ସେ ମନେ କରୁଥିଲେ, ପିଲାଏ ଗ୍ରାଜୁଏଟ୍ ହୋଇ ସାରିଲା ପରେ କାମ କରି ନିଜ ନିଜ ଗୁଜୁରାଣ ମେଣ୍ଟାଇବେ ।

ମୋର ବାପା ମାଙ୍କ ନିକଟରୁ ଅଧିକାଂଶ ସୂତ୍ରରେ ଯେଉଁ ଟଙ୍କା ପାଉଥିଲି ତାହା ଆର୍ଥିକ ସଙ୍କଟ ସମୟରେ କମିଆସିବାକୁ ଲାଗିଲା । ଅବଶେଷରେ ବାର୍ଷିକ ଆୟ ଖୁବ୍ କମରେ ଯାଇଁ ପହଞ୍ଚିଲା । ଯାହାହେଉ, ୧୯୩୩ ମସିହାରେ ନିଉୟର୍କ ଛାଡ଼ିବାର ବହୁ ପୂର୍ବରୁ ମୁଁ ପଢ଼ାଇବା, ପ୍ରବନ୍ଧ ଲେଖିବା ଓ ବେତାର କାର୍ଯ୍ୟରେ ଆତ୍ମନିୟୋଗ କରି ବେଶ୍ ଦୁ'ପଇସା ରୋଜଗାର କରିବାକୁ ଲାଗିଲି । ବର୍ତ୍ତମାନ ବେଶ୍ ମନେପଡ଼େ, ସେଦିନର ଆନନ୍ଦର କଥା । ଯେଉଁଦିନ ନାରୀ ଶ୍ରମିକ ସଂଘର ଘରଖଣ୍ଡିକୁ ବନ୍ଧକରୁ ମୁକୁଳାଇ ପାରିଥିଲି ଓ "ଝିଲକିଲ" ପତ୍ରିକା ପରିକଳ୍ପନା ପାଇଁ ବେଶ୍ ଭଲ ଭାବରେ ସାହାଯ୍ୟ କରିପାରିଥିଲି । ସେହି ଦାରୁଣ ଅର୍ଥ ସଙ୍କଟ ଦିନରେ ବେତାର କାମରୁ ପ୍ରଥମ ଯେଉଁ ଟଙ୍କା ପାଇଥିଲି, ତାହାରି ସାହାଯ୍ୟରେ ଦୁଇଟି ପ୍ରତିଷ୍ଠାନ ଗଢ଼ିଉଠିଲା । ଯେଉଁସବୁ ବେକାର ବାଳିକାଗଣ ଜୀବିକାର୍ଜ୍ଜନ ସନ୍ଧାନରେ ଏଣେତେଣେ ବୁଲୁଥିଲେ, ସେମାନେ ସେଠାରେ ମଧ୍ୟାହ୍ନ ଆହାର ପାଇଁ ଖାଦ୍ୟ ଓ ବିଶ୍ରାମ ପାଇଁ ସ୍ଥାନ ମଧ୍ୟ ପାଇବେ । ଗୋଟିଏ ପ୍ରତିଷ୍ଠାନ ନାରୀ ଶ୍ରମିକ ସଂଘର କ୍ଲାବଘରେ । ଅପରଟି ମ୍ୟାଡ଼ିସନ ଏଭିନିଉର ବାଳିକା ସେବା ସଂଘର ପ୍ରଧାନ ଘାଟିରେ । ଆମ୍ଭେମାନେ ଦିନବେଳେ ବାଳିକାମାନଙ୍କୁ ଗରମ ଗରମ ମଧ୍ୟାହ୍ନ ଭୋଜନ ଓ ଅନ୍ୟ ସମୟରେ ଯତ୍ ସାମାନ୍ୟ ଆହାର ଦେଉଥିଲୁ । ବୁଣିବା, ରିପୁକରିବା ପ୍ରଭୃତି କୁଟିର ଶିଳ୍ପ ସଂକ୍ରାନ୍ତୀୟ କାର୍ଯ୍ୟ ସବୁ ଯୋଗାଇ ଦିଆ ହେଉଥିଲା । କୌଣସି କୌଣସି ଭଦ୍ରମହିଳାଙ୍କର ଦୃଷ୍ଟି ଏ ଆଡ଼କୁ ପଡ଼େ । ସେମାନେ ଖୁବ୍ ଉତ୍ସାହ ସହିତ ନାନାବିଧ ଜିନିଷଦେଇ ମୋତେ ସାହାଯ୍ୟ କରିବାକୁ ଲାଗିଲେ । ପୁଣି କେହି ବା ଇଚ୍ଛାରେ ରନ୍ଧନ କାର୍ଯ୍ୟ ବା ଖାଦ୍ୟ ପରିବେଷଣ କାର୍ଯ୍ୟରେ ଅଗ୍ରସର ହୁଅନ୍ତି । ଝିଅମାନଙ୍କ ସହିତ ଆଳାପ ଆଲୋଚନା କରି ପରାମର୍ଶ ଦେବାକୁ ଲାଗିଲେ । ଲେଖା ଓ

ବେତାର କାମରୁ ଯେଉଁ ପ୍ରଚୁର ଅର୍ଥ ଏହି ସଙ୍କଟ ସମୟରେ ମୁଁ ପାଇଲି, ସେଥିରେ କେବଳ ସୁନିୟନ୍ତ୍ରିତ ଦାକ୍ଷିଣ୍ୟର କେନ୍ଦ୍ର ସମୂହର ଦାନ କରିବା ମୋ ପକ୍ଷରେ ସମ୍ଭବପର ହେଲା ନାହିଁ । ଯେଉଁମାନଙ୍କୁ ଚିରାଚରିତ ଉପାୟରେ ସାହାଯ୍ୟ କରିବା ସମ୍ଭବପର ନୁହେଁ, ସେମାନଙ୍କୁ ବି କାମଦେଲି ଓ ସାହାଯ୍ୟ କରିବାକୁ ଲାଗିଲି । ମୁଁ ଆଜି ସ୍ୱୀକାର କରିବାକୁ ବାଧ୍ୟ ହେଉଛି ଯେ ମୋର ଦାନ ଅନେକ ସମୟରେ ଅପାତ୍ରରେ ପଡ଼ିଛି । ହେଲେ ସେହିସବୁ ଦିନରେ ଯୋଗ୍ୟପାତ୍ରୀ ମାନଙ୍କୁ ବଞ୍ଚିତ କରିବା ଅପେକ୍ଷା ଅଯୋଗ୍ୟ ପାତ୍ରରେ ଦାନ କରିବା ବରଂ ବହୁଗୁଣରେ ଭଲ । ବହୁଥର ହତାଶ ହୋଇ ମୁଁ ଆମେରିକାନ୍ ଫ୍ରେଣ୍ଡସ ସାର୍ଭିସ ସହିତ ବ୍ୟବସ୍ଥା କରିଥିଲି । ବେଶୀର ଭାଗ ଅନୁସନ୍ଧାନ ସେମାନେହିଁ କରନ୍ତି । ମୁଁ ବେତାରରୁ ଯେଉଁସବୁ ଟଙ୍କା ପାଉଥିଲି, ସେ ସବୁକୁ ସେମାନଙ୍କ ହାତରେ ଦେଇ ଦେଉଥିଲି ।

ହ୍ୱାଇଟ୍ ହାଉସରେ ଯେତେବେଳେ ଥିଲି, ବେତାର କାମର ସମସ୍ତ ଟଙ୍କା ଓ ଲେଖା ବାବଦ ପାଉଥିବା ଟଙ୍କାରୁ କିଛି ସାହାଯ୍ୟ ଭଣ୍ଡାରରେ ଗୃହା ଦେଇ ବ୍ୟୟ କରିବାକୁ ମନ ଉଠିଲା ନାହିଁ । ମୋ ମନେହେଲା ଏ ଟଙ୍କାଦ୍ୱାରା ଏପରି କିଛି କରିବାକୁ ହେବ, ଯଦ୍ୱାରା ମନୁଷ୍ୟ ନିଜ ଗୋଡ଼ରେ ଠିଆ ହୋଇପାରେ । ଫ୍ରେଣ୍ଡସ ସାର୍ଭିସ୍ କମିଟିର ଉଦ୍ଦେଶ୍ୟ ମଧ୍ୟ ଥିଲା ସେଇଆ । ମୁଁ ମୋର ଟଙ୍କା ସେମାନଙ୍କ ହାତରେ ଧରି ଦେଲି । ମୋର ରୋଜଗାରର ଟଙ୍କାରୁ କିଛି ହେଲେ କୌଣସି ପୁଅ ଝିଅଙ୍କୁ ଉପହାର ଦେଇନାହିଁ । ବେଳେ ବେଳେ ମୋର ସାମାନ୍ୟ ସଞ୍ଚିତ ଅର୍ଥରୁ ଯତ୍‌ସାମାନ୍ୟ ବ୍ୟୟ କରିବାକୁ ପଡ଼ିଛି, କାରଣ ମୁଁ ସେତେବେଳକୁ ଏତେ ଦେଇ ପକାଉଥିଲି ଯେ, ଆୟକର ଦେବାକୁ ମୋ ହାତରେ ଅନେକ ସମୟରେ ଟଙ୍କା ରହୁ ନଥିଲା । ମୁଁ ସେ ବର୍ଷ କେଉଠାରେ ଗୋଟିଏ ହେଲେ ପଇସା ରଖି ଯାଇ ନାହିଁ । ମୋ ମନେ ହେଉଥିଲା ତାହା ଠିକ୍ ନୁହେଁ ବୋଲି । ସୁତରାଂ ହ୍ୱାଇଟ୍ ହାଉସ୍ ଛାଡ଼ି ଆସିଲା ବେଳକୁ ମୋର ଅସଲ ଟଙ୍କା ହିସାବ କରିବାପାଇଁ ଓ୍ୱାଶିଂଟନକୁ ହିସାବ କରିବାକୁ ଯାଇ ଦେଖେ, ସେତେବେଳକୁ ଟଙ୍କାର ପରିମାଣ ଖୁବ୍ କମ୍ ଅଛି ।

ମୋ ବାହାଘର ବେଳକୁ ମୋର ଆୟ ବାର୍ଷିକ ୫ହଜାରରୁ ୮ହଜାର ଡଲାର ଭିତରେ । ଫ୍ରାଂକ୍ଲିନ୍ ଟଙ୍କା ଦେଣା ପାଉଣା ସମ୍ବନ୍ଧରେ ଜାଣୁଥିଲେ ଯେ ମୋ ଜ୍ଞାନ ଏ ଦିଗରେ ଖୁବ୍ କମ୍ ବୋଲି ।

ଟଙ୍କା କଉଡ଼ି ସମ୍ବନ୍ଧରେ ଆଉ ଯେଉଁସବୁ ବ୍ୟବସ୍ଥା ଥିଲା, ତାହା ବଦଳାଇବାର ଅଧିକାର ମୋର ନାହିଁ । ଏ ବ୍ୟବସ୍ଥାରେ ମୋ ପରିବାରର ପ୍ରବୀଣ ବ୍ୟକ୍ତିଗଣ ଟଙ୍କା କଉଡ଼ି ବିଲ୍ ବନ୍ଦୋବସ୍ତ କରୁଥିଲେ । ମୁଁ କେବଳ ନିର୍ଦ୍ଦିଷ୍ଟ ସମୟରେ ଟଙ୍କା ପାଉଥିଲି । ମୋ ଗୋସେଁମା, ବାବା, ଓ ମା ମରିଯିବା ପରେ ମୋତେ ପାଳନ କରନ୍ତି । ସେ ମୋତେ ଏକୋଇଶ ବର୍ଷ ଯାଏ ଏତେ କମ୍ ହାତ ଖରଚ ଦେଉଥିଲେ ଯେ, ମୁଁ ସେଥିରେ ଯେନ କେନ ପ୍ରକାରେଣ ଚଳାଇ ନେଇ ଶିଖିଥିଲି । ଟଙ୍କା ଅନ୍ୟ କେଉଁଥିରେ ଖଟାଇ ବେଶୀ ଆୟ ବଢ଼ାଇବାର ଭାବନା ମୋ ମନରେ କେବେହେଲେ ଆସିନାହିଁ । ଯେଉଁ ଟଙ୍କା ଆୟ ହେଉଥିଲା, ତା ଦେଇ ମୁଁ ଚଳାଇ ନେଉଥିଲି ।

ବର୍ଷକୁ ବର୍ଷ ଯେତେବେଳେ ଆମ ଘର ଖରଚ ବଢ଼ିବାକୁ ଲାଗିଲା, ଗୃହସ୍ଥାଳି ଚଳାଇବାର ଦାୟିତ୍ୱର ଅଧିକାଂଶ ଫ୍ରାଂକ୍ଲିନ୍ ନିଜ ହାତକୁ ନେଇଥିଲେ । ସେ ସ୍କୁଲ ନ ଛାଡ଼ିବା ଯାଏ ସନ୍ତାନ ମାନଙ୍କର ସାମାନ୍ୟ ମାସିକ ଭତ୍ତାର ବନ୍ଦୋବସ୍ତ କରନ୍ତି । ସେମାନଙ୍କର ମାସିକ ଭତ୍ତା ପାଇବା ଭଳିଆ ବୟସ ହେବା ଆଗରୁ ମୁଁ ସେମାନଙ୍କର ଓ ନିଜର ଲୁଗାପଟା କିଣୁଥିଲି । ଫ୍ରାଂକ୍ଲିନ୍ ମନେ କରୁଥିଲେ, ମାସିକ ଭତ୍ତା ପାଇଲେ ସେମାନଙ୍କର ନିଜ ନିଜର ପୋଷାକ ନିଜ ନିଜର କିଣିବା ଉଚିତ । ଏଥିରେ ସେମାନେ ଟଙ୍କା କଉଡ଼ି ଦିଗରେ ସ୍ୱାବଲମ୍ବନଶୀଳତା ଶିଖି ପାରିବେ । ମଝିରେ ମଝିରେ ସେମାନଙ୍କୁ ମୁଁ ଅନ୍ତର୍ବାସ, ସାର୍ଟ, ମୋଜା ପ୍ରଭୃତି ଆବଶ୍ୟକୀୟ ସାମଗ୍ରୀ ଉପହାର ଦେଇ ସାହାଯ୍ୟ କରୁଥିଲି । ସେମାନଙ୍କର ଏହି ଅଭ୍ୟାସ ଏବେ ବି ରହି ଯାଇଛି । ସେମାନେ ଏବେ ବି ମୋତେ ଏ ନେଇ ବିରକ୍ତ କରନ୍ତି ।

ଆମ ଆକାର ବା ଘର ହୋଇଗଲେ ଫ୍ରାଂକ୍ଲିନ୍ ଓ ମୋ ଶାଶୁ ତାଙ୍କୁ ସାମାନ୍ୟ କିଛି ମାସିକ ଭତ୍ତା ଦିଅନ୍ତି । ମୁଁ ଯେତେବେଳେ ପାରୁଥିଲି ଗ୍ରେଟ ମୋଟ ଉପହାର ବି ଦେଉଥିଲି । ମୋ ସ୍ୱାମୀର ମତଥିଲା ଯେ ପରିବାରର କୌଣସି ପିଲା ପାସ୍‌କରି ବାହାରିଲେ ତାଙ୍କୁ ନିଜ ଗୋଡ଼ରେ ଠିଆ ହେବାକୁ ହେବ । ସେଇଥିପାଇଁ ବଡ଼ପୁଅ ଜେମ୍‌ସ ଓ ଏଲିଏଟ୍‌ର ପଢ଼ା ଶେଷ ହେଉ ନ ହେଉଣୁ ସେମାନଙ୍କର ଭତ୍ତା ବନ୍ଦ ହୋଇଯାଏ । ସେମାନେ ସଙ୍ଗେ ସାଙ୍ଗେ ଉପାର୍ଜନ କରିବାକୁ ଆରମ୍ଭ କରିଦେଲେ । ଏଥିରେ ସେମାନଙ୍କର ଜୀବନ ଜଟିଳ ହୋଇ ଉଠିଲା । କାରଣ ଉଚ୍ଚପାହ୍ୟାରେ କାମ ଆରମ୍ଭ କରି ଉନ୍ନତ ସୋପାନକୁ ଉଠିବାର ସୁଯୋଗ ନଦେଇ ସେମାନଙ୍କୁ ଏପରି କାମ ଦିଆହୁଏ, ଯାହାର ବେତନ ଖୁବ୍ ବେଶୀ । ସେମାନେ ଏତେଦୂର ଅଳ୍ପବୟସ୍କ ଓ ଅନଭିଜ୍ଞ ଥିଲେ ଯେ, ଏହି ପଦ ଯେ ସେମାନେ କେବଳ ପିତାଙ୍କ ସମ୍ମାନାର୍ଥେ ପାଇଛନ୍ତି, ସେକଥା ବୁଝିବାର ବୟସ ବି ସେମାନଙ୍କର ସେତେବେଳକୁ ହୋଇ ନଥାଏ ।

ଫ୍ରାଂକ୍ଲିନ୍‌ଙ୍କର ପ୍ରବଳ ଇଚ୍ଛାଥିଲା ପିଲାଏ ତାଙ୍କର ନିଜ ପଥ ବାଛି ନିଅନ୍ତୁ । ଭୁଲ୍ କଲେ ନିଜେ ଭୋଗିବେ । ବେଳେ ବେଳେ ବନ୍ଧୁଗଣଙ୍କ ମଧ୍ୟରୁ କେହି କେହି ପରାମର୍ଶ ଦେଉଥିଲେ ସେ ପିଲାମାନଙ୍କ ଆଡ଼କୁ ଯେପରି ଟିକିଏ ନଜର ଦିଅନ୍ତି । ସେ କିନ୍ତୁ ସବୁବେଳେ କହୁଥିଲେ ସେମାନେ ନିଜର ବ୍ୟବସ୍ଥା ନିଜେ କରିନେବେ । ମୋ ମନେହୁଏ ତାଙ୍କର ଏହି ମନୋଭାବ ନିଜର ଜୀବନରୁହିଁ ଆସିଥିଲା । ତାଙ୍କ ମା ତାଙ୍କପ୍ରତି ଚଳାଧାରା ଓ କାମକୁ ନିୟନ୍ତ୍ରିତ କରିବାକୁ ଚାହୁଁଥିଲେ । ସ୍ୱାଧୀନତା ପାଇଁ ତାଙ୍କୁ ଯୁଦ୍ଧ ବି କରିବାକୁ ପଡ଼ିଛି ।

ଫ୍ରାଂକ୍ଲିନ୍‌ଙ୍କର ନିଜ ମା ସମ୍ବନ୍ଧରେ ଏହି ଦୀର୍ଘ ଅଭିଜ୍ଞତା ଫଳରେ ତାଙ୍କର ସଂକଳ୍ପ ଖୁବ୍ ଦୃଢ଼ତର ହୋଇ ଉଠେ । ସେ ଠିକ୍ କରିଥିଲେ ତାଙ୍କ ପିଲାଙ୍କ ସମ୍ମୁଖ ପଥରେ ଏପରି ବାଧା କେବେହେଲେ ସୃଷ୍ଟି କରିବେ ନାହିଁ । ଏହି ଅନୁଭୂତି ତାଙ୍କରନିଜ କାମରେ ପରିକଳ୍ପନା ହୋଇ ଠିଆହେଲା ।

ସ୍ୱାଧୀନତା ଲାଭ କରିବା ବିଷୟରେ ଫ୍ରାଂକ୍‌ଲିନ୍‌ଙ୍କ ଠାରୁ ମୋର ବେଶୀ ସମୟ ଲାଗିଥିଲା । କାରଣ ପିଲାବେଳେ ମୋର ଆଶା ଭରସାର ପରିମାଣ ଥିଲା ଖୁବ୍ କମ । ପ୍ରଥମେ ମୋର ଶାଶୁ ଓ ସ୍ୱାମୀ ଯେଉଁ ନିରାପତ୍ତା ଆଣି ଦେଇଥିଲେ, ସେଥିଯୋଗୁ ମୁଁ ସେମାନଙ୍କପାଖରେ ଖୁବ୍ କୃତଜ୍ଞ । କ୍ରମେ କ୍ରମେ ମୁଁ ଶିଖିଲି ବିକାଶ ଯୋଗୁ ମନୁଷ୍ୟର ଆବଶ୍ୟକ ଚିନ୍ତା ଓ କାର୍ଯ୍ୟରେ ସ୍ୱାଧୀନତା । ଏହି ସ୍ୱାଧୀନତା ଲାଭ ହେତୁ ଯେଉଁ ଦୀର୍ଘ, ମନ୍ଥରଗତି, ବେଳେ ବେଳେ ମାନସିକ ଯନ୍ତ୍ରଣା ପୂର୍ଣ୍ଣ ପର୍ଯ୍ୟାୟ ଭିତର ଦେଇ କଟାଇ ଆସିଛି, ସେ କଥା ମନେ ପଡ଼ିଲେ ମୋର ଏହି ଧାରଣା ବଦ୍ଧମୂଳ ହୋଇ ଉଠିଥିଲା ଯେ ପିଲା ଟିକି ବଡ଼ ହେଲେ ସେମାନେ ମୋ ଭଳି ଏପରି ନିୟମାଧିନ ହୋଇ ଚାଲି ପାରିବେ ନାହିଁ । ମୋର ଭୟହୁଏ ମୋ ପୁଅ ବୋହୂଗଣ ଖୁବ୍ ସମ୍ଭବ ଭାବୁଥିଲେ ମୋର ସେମାନଙ୍କ ଉପରେ କୌଣସି ନଜର ନାହିଁ ବୋଲି । କାରଣ ସବୁବେଳେ ମୋର ଆଶଙ୍କା ସେମାନେ ଯେପରି ମନରେ ନ ଭାବନ୍ତି ମୁଁ ସେମାନଙ୍କର ଜୀବନକୁ ନିୟନ୍ତ୍ରିତ କରୁଛି ବା ବାଧା ଦେଉଛି କିମ୍ବା ମୋର ସନ୍ତାନମାନଙ୍କ ନିକଟରେ ସେମାନଙ୍କର ନିଜ ନିଜର ସ୍ତ୍ରୀ ଥିବା ସତ୍ତ୍ୱେ କର୍ତ୍ତୃତ୍ୱ କରିବାକୁ ଯାଉଛି । ମୁଁ ହୁଏତ ଏ ନୀତିର ଅନୁସରଣ ଟିକିଏ ବେଶୀ କରି କରି ପକାଉଛି, ହୁଏତଃ ମଝିରେ ମଝିରେ ଏପରି କରିଥାଏ ।

ଫ୍ରାଂକଲିନ୍ ଯେତେବେଳେ ଜନସାଧାରଣଙ୍କ କାମରେ ଖୁବ୍ ତତ୍ପର ହୋଇ ଉଠିଲେ, ସେତେବେଳେ ପିଲାପିଲିଙ୍କ ତତ୍ତ୍ୱ ନେବା ତାଙ୍କ ପକ୍ଷରେ ମୁସ୍କିଲ ହୋଇ ଉଠିଲା । ଏଥିରେ ସେମାନେ ତାଙ୍କର ପରାମର୍ଶ ନେବାର ସୁଯୋଗ ପାଉ ନଥିଲେ । ସେ ବ୍ୟସ୍ତ ନଥିଲେ ଏମାନେ ସହଜରେ ତାହା ପାଇ ପାରିଥାନ୍ତେ । ପରେ ପରେ ଜେମ୍‌ସ୍ ଓ ଏଲିଏଟଙ୍କର ଏହି ଉକ୍ତି ଅଭିଜ୍ଞତା ହୋଇଥିଲା । ଏହା ଗୋଟିଏ ଉକ୍ତି ମୋହ ବିଚ୍ୟୁତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଏଲିଏଟ୍ କଲେଜରେ ଭର୍ତ୍ତି ହୋଇନାହିଁ । କାରଣ ସେ ଗ୍ରଟନର

(ଗୋଟିଏ ସ୍କୁଲ) ବର୍ଣ୍ଣ ସମୂହ ଉପରେ ଖୁବ୍ ବିରୂପ ହୋଇ ଉଠୁଥାଏ । ତାକୁ ଗଠନ୍‌ରେ ରଖା ହେବାର କାରଣ ହେଲା ମୋ ଶାଶୁ ଓ ଫ୍ରାଂକ୍‌ଲିନ୍ ଭାବିଥିଲେ ସେ ଯେଉଁଠାକୁ ଯିବେ, ସେଠାରେ ଶୃଙ୍ଖଳାର ବିରୋଧିତା କରିବ । ଫ୍ରାଂକ୍‌ଲିନ୍ ବିଶ୍ୱାସ କରୁଥିଲେ ଯେ ଶୃଙ୍ଖଳା ବିରକ୍ତିକର ହେଲେହେଁ ମୂଲ୍ୟବାନ । ମୋ ଶାଶୁ ମଧ୍ୟ ଚାହୁଁ ନଥିଲେ ତାଙ୍କର ପାରିବାରିକ ଐତିହ୍ୟ ଭାଙ୍ଗିବାକୁ । ତାରି ଫଳରେ ସେ କେମ୍‌ସଙ୍କଠାରୁ କମ୍ ବୟସରେ ରୋଜଗାର କରିବାକୁ ବାହାରିଲେ । ସେଥିପାଇଁ ଜୀବନ ତାଙ୍କର ଜଟିଳତର ହୋଇ ଉଠିଲା ।

୧୯ ୩ମସିହାରେ ଆମେ ସବୁ ଓ୍ୟାଶିଂଟନକୁ ଆସୁ । ମୋ ସ୍ୱାମୀ ସେତେବେଳକୁ ନୌବିଭାଗର ସହକାରୀ ସମ୍ପାଦକ ନିଯୁକ୍ତ ହୋଇଥାନ୍ତି । ଭିନ୍ନ ପଥରେ ପରିପୂର୍ଣ୍ଣ ଦୁଇଖଣ୍ଡ ପୃଥକ୍ ପୃଥକ୍ ଘର ଆମେ ଭଡ଼ାକଲୁ । ସତ କହିବାକୁ ଗଲେ ଘର ବୋଲି କହିଲେ ଯାହା ବୁଝାଏ, ତାହା ତାଙ୍କର ନଥିଲା । ଥିଲା କେବଳ କେତେଜଣ ପରିବାରଙ୍କର ଏକତ୍ର ସମାବେଶ । ଆମ ପିଲାଝିଲଙ୍କର ଭାଗ୍ୟ ଅପର ପିଲାଝିଲଙ୍କର ଭାଗ୍ୟ ପରି ନୁହେଁ । ଏମାନଙ୍କର ନିଜର ବୋଲି କହି ମୁଣ୍ଡ ଗୁଞ୍ଜି ରହିବାକୁ ନିଜସ୍ୱ ଭୂମି ଟୁକୁରାଏ ବି ନଥିଲା ।

ଜ୍ୟେଷ୍ଠ ପିଲା ଦୁଇଟିଙ୍କ ପକ୍ଷରେ ସବୁଠୁ ବେଶୀ ସୁବିଧା ହେଲା ଦାକ୍ଷିଣ୍ୟ ପ୍ରଦର୍ଶନ କରାଇବା । ସ୍ୱାମୀ ନିଜେ ବଞ୍ଚିଥିବା ଯାଏ ସେମାନଙ୍କୁ ମାସିକ ଭତ୍ତା ଦେଉଥିଲେ । ଜ୍ୟେଷ୍ଠ ଫ୍ରାଂକ୍‌ଲିନ୍‌ଙ୍କୁ ଆଇନ ପଢ଼ିବାକୁ ଯାଏ । ହାର୍ଭାର୍ଡ଼ରୁ ବାହାରି ଆସି ସେ ବାର ପରିଗ୍ରହ କରେ । ସେଇଥିଯୋଗୁ ସେ ରୋଜଗାର କରି ପାରୁ ନଥିଲା । ଜନ୍‌ଟି ବ୍ୟବସାୟ ଆରମ୍ଭ କଲା ଖୁବ୍ ନିମ୍ନସ୍ତରରୁ । ବିବାହ ପରେ ଖର୍ଚ୍ଚ ଚଳାଇବାର କୌଣସି ଆବଶ୍ୟକ ତାର ନଥିଲା । ସେମାନେ ଯେତେବେଳେ ନୌବିଭାଗରେ ଭର୍ତ୍ତିହୁଅନ୍ତି, ସେମାନେ ପରିବାରର ଖର୍ଚ୍ଚବାବଦ ତାଙ୍କର ଅଂଶ ଦେବାରେ ସ୍ୱୀକୃତ ହୁଅନ୍ତି । ମାସିକ ଭତ୍ତା ଥିଲା ବୋଲି ସହସା ଉପାର୍ଜ୍ଜନ କରିବାର ଆବଶ୍ୟକତା ପଡ଼ୁ ନଥିଲା ।

ସେଇଥି ପାଇଁ ବଡ଼ ଦୁଇଟିଙ୍କୁ ଯେଉଁ କଷ୍ଟ ସହିବାକୁ ପଡ଼ିଛି, ସେମାନଙ୍କ ପକ୍ଷରେ ତାହା ହୋଇନାହିଁ ।

ଏଠାରେ ଗ୍ରେଟ ଗୋଟିଏ ଘଟଣା ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବନାହିଁ । ଏଇଟା ମୋର ଅନେକ ଥର ମନେ ହୋଇଛି ଯେ ଗ୍ରେଟ ପୁଅ ଜନ୍ ଯୁଦ୍ଧର ବିରୁଦ୍ଧବାଦୀ, ଶାନ୍ତିକାମୀ । ସେଇଥିପାଇଁ ସେ ଯୁଦ୍ଧକୁ ଯିବାକୁ ରାଜି ହୋଇନାହିଁ । ଆମେ ସବୁ ଆକ୍ରାନ୍ତ ହେବାର ଆଗ କେତେ ବର୍ଷରୁ ସୁପରିଚିତ ଅନ୍ୟାନ୍ୟ ଯୁବକଙ୍କ ଭଳି ଯୁଦ୍ଧକୁ ଯିବାକୁ ସେ ଖୁବ୍ ଉତ୍ସାହିତ ନଥିଲି । କଠୋର ପରିଶ୍ରମ କାତର ସେ ନଥିଲି । ତାର ଦିନଗୁଡ଼ିକ ଭଲ ଭାବରେହିଁ କାଟୁଥାଏ । ନିଜର ଗୁଜରାଣ ନେଇ ସେ ସଦା ବ୍ୟାପୃତଥାଏ । ଆମେ ଯୁଦ୍ଧରେ ଯୋଗ ଦେବାରୁ ଅନ୍ୟାନ୍ୟ ସନ୍ତାନମାନଙ୍କ ଭଳି ସେ ମଧ୍ୟ ଆଉ ଉଚ୍ଚବାଚ୍ୟ କରିନାହିଁ । ଯୁଦ୍ଧଲାଗି ଯାହା ସବୁ କରିବା ଦରକାର, ସେ ସବୁ କରିବାକୁହିଁ ହେବ । ସେମାନେ ଯୁଦ୍ଧ ବିରୋଧୀ ବା ଶାନ୍ତିକାମୀ ହେବାର ପ୍ରଶ୍ନ ସେତେବେଳେ ଦେଖିଲେ ନାହିଁ ।

ହ୍ୱାଇଟ୍ ହାଉସରେ ଜୀବନ ଖୁବ୍ ବେଶୀ ବ୍ୟସ୍ତତାରେ ଭରି ଉଠିବାକୁ ଲାଗିଲା । ମୋ ସ୍ୱାମୀ ପାରିବାରିକ ବ୍ୟାପାରରେ ତେତେ କମ୍ ବ୍ୟାପୃତ ରହିବାକୁ ଲାଗିଲେ । ବେଶ୍ ମନେ ପଡୁଛି, ପିଲାମାନେ ଯେତେବେଳେ ଦେଖିଲେ, ସେମାନଙ୍କ ପିତାଙ୍କ ସହିତ କରେସ୍ତୋରେ ଦେଖା କରିବାକୁ ହେଲେ ପୂର୍ବରୁ ସମୟ ଠିକ୍ କରିବାକୁ ହୁଏ । ଏଥିରେ ସେମାନେ ବିରକ୍ତ ହୋଇ ଉଠନ୍ତି । ଥରେ ଆମର ଗୋଟିଏ ପୁଅ ଭାବିଲା ବାବାଙ୍କ ସହିତ ଗୋଟିଏ ଜରୁରୀ ବ୍ୟାପାରରେ ଆଳାପ କରିବାକୁ । ସେ ସମୟ ବି ଠିକ୍ କରି ନେଇଥିଲା । ସ୍ୱାମୀ ମୋର ଖୁବ ଭଦ୍ର ଓ ଦୟାଳୁ । ପୁଅ ଯେତେବେଳେ କଥା କହୁଥିଲା, ମନେ ହେଉଥିଲା ସତେ ଯେପରି ସେ ଶୁଣୁଛନ୍ତି । ପ୍ରକୃତ ପକ୍ଷରେ ସେ କିନ୍ତୁ ହାତରେ ଥିବା ଦଲିଲ ଝଣ୍ଡିକୁ ପଢୁଥିଲେ । ପୁଅ ଯେତେବେଳେ ପଚାରିଲା, ସେ ତା କଥା ଶୁଣୁଛନ୍ତି କି ନା, ବାପା ଉତ୍ତର ଦେଲେ "ହଁ" । କଥାବାର୍ତ୍ତାର ପରିସମାପ୍ତି ହେଲା

ପରେ ସେ ମୁହଁ ଟେକ କାଗଜ ଖଣ୍ଡିକୁ ପୁଅ ହାତକୁ ଦେଇ ମନ୍ତବ୍ୟ କଲେ "ଏ ଖଣ୍ଡିକ ଭାରି ଜରୁରୀ ଦଲିଲ । ଏ ସମ୍ବନ୍ଧରେ ତୁମ୍ଭର ମତାମତ ଆବଶ୍ୟକ ।" ମୋ ମନେହେଲା ପୁଅ ଏଥିରେ ହତଭମ୍ବ ହୋଇଗଲା । ସେ ଭାବିଥିଲା, ତା' କଥା ପିତାଙ୍କ ନିକଟରେ ପୁଚ୍ଛିବାର ଆଉ ସବୁ କଥାଠୁ ବେଶୀ ଦରକାରୀ । ସେ କାଗଜ ଖଣ୍ଡି ଦେଖି ମନ୍ତବ୍ୟ କରି ଗୃହତ୍ୟାଗ କରି ଚାଲି ଆସିଲା ।

କିଛି ସମୟ ପରେ ଜଣେ ଶ୍ରୀକ୍ଷଣ କ୍ଷୁବ୍ଧ ଯୁବକ ଆସି ମୋତେ କହିଲା "ଆଉ କେବେହେଲେ ବ୍ୟକ୍ତିଗତ କଥା ନେଇ ବାପା ପାଖୁ ଆଲୋଚନା କରିବାକୁ ଯିବନାହିଁ । ମୋତେ ତାଙ୍କୁ ବୁଝାଇବାକୁ ପଡ଼ିଲା ଯେ ସେ ଉପଯୁକ୍ତ ସମୟ ନିର୍ବାଚନ କରି ପାରିନାହିଁ । ଠିକ୍ ସମୟ ଦେଖି ତାଙ୍କୁ ପିତାଙ୍କ ପାଖକୁ ଯିବାକୁ ହେବ । ପିତା ତାଙ୍କର ଦେଶର ଗୋଟିଏ ସମସ୍ୟାମୂଳକ ବିଷୟର ମତାମତ ଚାହିଁବା ଦ୍ୱାରା ତାଙ୍କୁ ଖୁବ୍ ସମ୍ମାନହିଁ ଦେଖାଇଛନ୍ତି ।" ମୋ କଥା ସେତେବେଳେ ତାର ପସନ୍ଦ ହୋଇନାହିଁ ।

ଏବେ ବହୁବର୍ଷପରେ ଦେଖୁଛି, ଆଗ ଯେଉଁକଥା ଆମ୍ଭମାନଙ୍କ ସମ୍ମୁଖରେ ଗୋଟିଏ ଜଟିଳସମସ୍ୟାର ବିଷୟ ହୋଇଥିଲା, ଆଜି ଆଉ ତାହା ଆନା ପକ୍ଷରେ କି ମୋ ପକ୍ଷରେ ସେଭଳି ସମସ୍ୟାର ଉଦ୍ଭବ କରୁନାହିଁ । ଆନାର ଏବେ ବି ଖୁବ୍ ବ୍ୟସ୍ତ । ଜରୁରୀ ବିଷୟ ସମ୍ବନ୍ଧରେ ଏବେ ସେମାନେ ସର୍ବଦା ସତର୍କ । ସେମାନଙ୍କର ଦୃଷ୍ଟିଭଙ୍ଗୀର ଓ କର୍ତ୍ତବ୍ୟ ଜ୍ଞାନର ଦାୟିତ୍ୱ ବଢିଛି । ମୋର ମନେହୁଏ ଜନଗଣଙ୍କ ନେତା ହିସାବରେ ସେମାନଙ୍କର ପିତାଙ୍କର ମୂଲ୍ୟ ସେମାନଙ୍କ ନିକଟରେ ଆଗଠାରୁ ଢ଼େର ବେଶୀ ।

ମୋହର ଆତ୍ମ ଜୀବନୀର ପ୍ରଥମ ଖଣ୍ଡର ଶେଷ ଆଡ଼କୁ ମୁଁ ୧୯୨୪ ମସିହାର ଡେମୋକ୍ରାଟିକ୍ ନ୍ୟାସନ୍ୟାଲ କନଭେନସନର କଥା କହୁଛି । ତାପରେ ଆସିଲା ପ୍ରେସିଡେଣ୍ଟ ପଦ ପ୍ରାର୍ଥୀ ଜନ ଡବ୍ଲିଉ ଡେଭିସର ପରାଜୟ ଓ ଆଲଫ୍ରେଡ୍ ଇ, ସ୍ମିଥ୍‌ଙ୍କର ନିଉଇୟର୍କ ରାଷ୍ଟ୍ରରେ ଗଭର୍ଣ୍ଣର ନିର୍ବାଚିତ ହେବା ଘଟଣା ।

ମୋର ସ୍ୱାମୀ ପୁଣି ବ୍ୟବସାୟୀ ହୋଇ ପଡ଼ିଲେ । ଗୋଟିଏ କଥାରେ ସେ ଏକାବେଳେ ଆତ୍ମନିୟୋଗ କରିବାରେ ଆଦୌ ଅଭ୍ୟସ୍ତ ନଥିଲେ । ବ୍ୟକ୍ତିଗତ ଭାବରେ କ୍ଷଣିକ ପାଇଁ ରାଜନୀତି ଦୂରକୁ ଅପସରି ଗଲା । କିନ୍ତୁ ଏପରି ମୁହୂର୍ତ୍ତ ନଥିଲା, ଯେତେବେଳେ ସେ ମାର୍କିନ ଜନସାଧାରଣଙ୍କ କଥା ଓ ରାଜନୈତିକ ପରିସ୍ଥିତିର ଖୁଣ୍ଟି ନାଟି କଥା ନ ଭାବିଛନ୍ତି ।

୧୯୧୦ ମସିହାରେ କାର୍ଟାର, ଲେଡ୍‌ୟାର୍ଡ ଏବଂ ମିଲବାର୍ଣ୍ଣର ଆଇନ ଅଫିସ ଛାଡ଼ିବା ପରଠୁ ୧୯୨୧ ମସିହାରେ ତାଙ୍କ ଅସୁଖର ଦିନ ପର୍ଯ୍ୟନ୍ତ ଫ୍ରାଂକ୍‌ଲିନ୍ ଜନଗଣଙ୍କ କାମରେ ଅଳ୍ପ ବିସ୍ତର ନିଯୁକ୍ତ ଥିଲେ । ଆମ୍ଭମାନଙ୍କ ପାର୍ବତ୍ୟାଞ୍ଚଳ ଗଣତାନ୍ତ୍ରିକ ଅଞ୍ଚଳରୁ ସେ ରାଷ୍ଟ୍ରକୁ ସଦସ୍ୟ ନିର୍ବାଚିତ ହୁଅନ୍ତି । ଯେଉଁ ଡେମୋକ୍ରାଟିକ୍ ନ୍ୟାସନାଲ କନ୍‌ଭେନସନ୍ ଉଡ୍ରୋ ଉଇଲସନଙ୍କୁ ପ୍ରଥମ ଥର ପାଇଁ ନିର୍ବାଚିତ କରନ୍ତି । ସେ ଥିଲେ ତାଙ୍କ ମଧ୍ୟରୁ ଜଣେ କର୍ମୀ । ତାଙ୍କ କାମର ଯଥେଷ୍ଟ ପରିଚୟ ପାଇ ତାଙ୍କୁ ୧୯୧୩ ମସିହାର ବସନ୍ତ କାଳରେ ନୌ ବିଭାଗର ସହକାରୀ ସମ୍ପାଦକ ନିଯୁକ୍ତ କରାହୁଏ । ନୌ ବିଭାଗ ପ୍ରତି ତାଙ୍କର ଆକର୍ଷଣ ଥିଲା ପ୍ରବଳ । ସେ ସବୁଆଡ଼ୁ ଏ କାମର ଯୋଗ୍ୟ ବ୍ୟକ୍ତି ଥିଲେ ।

ସେ ଓ ସମ୍ପାଦକ ଜୋସେଫାସ ଡେନିୟଲସଙ୍କ ମଧ୍ୟରେ ବେଶ୍ ମେଳ ହୁଏ । ମୋ ମତରେ ନୌ ଦପ୍ତରରେ ଫ୍ରାଂକ୍‌ଲିନଙ୍କ ଚାକିରି ତାଙ୍କ ଜୀବନର ଗୋଟିଏ ମାଇଲ ପଥର । ନୌ ଦପ୍ତରରେ ଦିନର କାମ ଶେଷ ହେଲାପରେ, ମେଟ୍ରୋପଲିଟ୍ୟାନ୍ କ୍ଲାବରେ ବସି ବନ୍ଧୁମାନଙ୍କ ସହିତ ଗପ ସପ କରି କେବଳ ମାତ୍ର ସାମାଜିକ ସରସ ନାଗରିକ ହେବା, ତାଙ୍କ ପକ୍ଷରେ ଖୁବ୍ ସହଜ ଥିଲା । କିନ୍ତୁ ଲୁଇକ୍ ହୋ ଓ୍ୟାଶିଂଟନରେ ଫ୍ରାଂକ୍‌ଲିନ୍‌ଙ୍କ ସେକ୍ରେଟାରି ହୋଇ ଆମ୍ଭମାନଙ୍କ ସଙ୍ଗରେ ଆସିଥିଲେ । ସେ ଠିକ୍ କଲେ ଫ୍ରାଂକ୍‌ଲିନ୍‌ଙ୍କ ଜୀବନରେ ଏହି ଅଧ୍ୟାୟରେ ନୂଆ କିଛି ଶିଖିଲେ ତାଙ୍କ ପକ୍ଷରେ ଭଲ ହେବ । ସେ ପୀଡ଼ାପିଡ଼ି କରିବାକୁ ଲାଗିଲେ

ସଦ୍ଭାବ ଫ୍ରାଂକ୍‌ଲିନ୍ ନୌ ବିଭାଗର କାରଖାନା ମାନଙ୍କରେ ଶ୍ରମିକଙ୍କର ଅବସ୍ଥା ସମ୍ବନ୍ଧରେ ପରୀକ୍ଷା କରି ଦେଖନ୍ତି । ଏ ଭାବରେ ସେ ଜନସାଧାରଣଙ୍କ ସଂସ୍ପର୍ଶରେ ଆସିବେ । ଏଇଟା ଥିଲା ତାଙ୍କର ନିଜସ୍ୱ ବିଭାଗ । ସେ ଏ ଆଡ଼କୁ ତାଙ୍କୁ ଆକୃଷ୍ଟ କରିବା ବ୍ୟାପାରରେ ସଫଳ କାମ ବି ହେଲେ । ଫ୍ରାଙ୍କ୍‌ଲିନ୍ ଏହି ପ୍ରଥମ କରି ଘନିଷ୍ଠ ଭାବରେ ଶ୍ରମିକମାନଙ୍କ ସଙ୍ଗରେ ମିଶନ୍ତି । ନୌ-ଦପ୍ତରରେ ଥିବା ବେଳେ ସେ ନିଉଇୟର୍କ ଷ୍ଟେଟରୁ ସଦସ୍ୟ ପ୍ରାର୍ଥୀ ହେଲେ, ହାରି ବି ଗଲେ । ୧୯୨୦ ମସିହାରେ ସାନ୍ ଫ୍ରେସିସ୍‌କୋ କନଭେନସନରେ ତାଙ୍କୁ ସରକାର ପଦ ପ୍ରାର୍ଥୀ ହିସାବରେ ମନୋନୀତ କରାହୁଏ । ମିଷ୍ଟାର ଜେମ୍‌ସ ଏକକ୍‌ସ ଥିଲେ ସେଥରର ପ୍ରେସିଡେଣ୍ଟ ପଦ ପ୍ରାର୍ଥୀ । ସେନେଟ୍ ଆଗବର୍ଷ ଲିଗ୍ ଅଫ୍ ନେସାନକୁ ଭୋଟରେ ବାତିଲ କରି ଦେଇଥିଲେ । ସେଇଥିଯୋଗୁ ଲିଗ୍ ଅଫ୍ ନେସାନକୁ ନେଇ ପ୍ରଧାନତଃ ଏହି ନିର୍ବାଚନୀ ଯୁଦ୍ଧ ଚାଲେ । ସତକଥା କହିବାକୁ ଗଲେ ଦେଶ ସମ୍ମୁଖରେ ଏହି ବ୍ୟାପାରଟିକୁ ତୋଳି ଧରିବାର ଚେଷ୍ଟାହିଁ ପ୍ରେସିଡେଣ୍ଟଙ୍କ ଅନ୍ତରରେ ଖୁବ୍ କଠୋର ଭାବରେ ଆଘାତ ଦିଏ ।

ଏହି ପରାଜୟ ପରେ ଫ୍ରାଂକ୍‌ଲିନ୍ ନିଉଇୟର୍କ ସହରରେ ବ୍ୟବସାୟରେ ଲାଗି ପଡ଼ନ୍ତି ।

୧୯୨୩ ମସିହାରେ ଯେତେବେଳେ ଏଡ଼ଓ୍ୟାର୍ଡବକ୍ ତାଙ୍କର ଶାନ୍ତିର ପୁରସ୍କାର ଘୋଷଣା କରନ୍ତି, ଫ୍ରାଙ୍କ୍‌ଲିନ୍ ଶାନ୍ତି ପୁନଃସ୍ଥାପନ ବିଷୟରେ ଗୋଟିଏ ପ୍ରବନ୍ଧ ଲେଖି ଦାଖଲ କରନ୍ତି । ପରବର୍ତ୍ତୀ ଜୀବନରେ ଆଳାପ ଆଲୋଚନାରେ ଫ୍ରାଙ୍କ୍‌ଲିନ୍ ପ୍ରାୟ ବକ୍ ପ୍ରତିଯୋଗୀତାରେ ତାଙ୍କର ସେହି ଶାନ୍ତିର ପରିକଳ୍ପନା କଥା ଉଠାନ୍ତି । ମୋର ମନେହୁଏ, ସେ ସେଠାରେ ତାଙ୍କର ଯେଉଁ ଭାବଧାରା ଫୁଟାଇ ଉଠାଇଥିଲେ । ତାହାରି ଉପରେ ଭିତ୍ତି କରି ସେ ପରବର୍ତ୍ତୀ ଜୀବନରେ ପୃଥିବୀରେ ଶାନ୍ତି ଓ ଅନ୍ୟାନ୍ୟ ପରିକଳ୍ପନା ଗଢ଼ି ତୋଳିଥିଲେ । ଲିଗ୍ ଅଫ୍ ନେସନ୍ କାର୍ଯ୍ୟରେ ଯେଉଁ ତ୍ରୁଟି ବାସ୍ତବରେ ଦେଖା ଦେଇଥିଲା, ତାଙ୍କ ଖସଡ଼ାର ମୂଳ ଉଦ୍ଦେଶ୍ୟ ହେଲା ସେ

ସବୁର ପ୍ରତିକାର କରିବା । ପରେ ସେ ନୂତନ ଯନ୍ତ୍ରପାତି ଦେଇ ଏହି ଯନ୍ତ୍ରକୁ ସମୟୋପଯୋଗୀ କରିନଥିଲେ ।

୧୯୨୪ରୁ ୧୯୨୮ ମସିହା ପର୍ଯ୍ୟନ୍ତ ବେଶୀର ଭାଗ ସମୟ ତାଙ୍କର କଟିଥିଲା ଶୈଶବର ପକ୍ଷାଘାତ ରୋଗରୁ ମୁକ୍ତ ହେବାର ଉପାୟ ଉଦ୍ଭାବନ କରିବାରେ । ଏ ରୋଗ ତାଙ୍କୁ ୧୯୨୧ ମସିହାରେ ଧରେ । ଆମେ ସବୁ ସେତେବେଳକୁ କାମ୍ପୋବେଲୋରେ । ତାଙ୍କର ହାତ ଦକ୍ଷିଣ ଓ ଗୋଡ଼ ଆଂଶିକ ଭାବରେ ପଙ୍ଗୁ ହୋଇଗଲା । ହାତ ଓ ବାହୁର ପୂର୍ବପୂର ବ୍ୟବହାରର କ୍ଷମତା ଫେରି ଆସିଲା । ସବୁବେଳେ ବ୍ୟବହାର କରିବାରୁ କାନ୍ଧ ଚଉଡ଼ା ହୋଇଗଲା । ବାହୁରେ ଶକ୍ତି ଆସିଲା ସତ, ପାଦ ଦୁଇଟି ଅଚଳ ହୋଇ ପଡ଼ିଲା । ଧୀରେ ଧୀରେ ବ୍ୟାୟାମ କରି, ବ୍ରେସ୍ ପିନ୍ଧି ସେ ଚାଲିବାକୁ ଆରମ୍ଭ କରନ୍ତି । ପ୍ରଥମରେ କାଚ ଉପରେ ଭାର ଦେଇ ଚାଲିବାକୁ ହେଉଥିଲା । ତାପରେ ଛଡ଼ିରେ ଓ ପରେ ଅନ୍ୟ ବାହୁ ଉପରେ ଭାରଦେଇ ଚାଲୁଥିଲେ । ପ୍ରଥମ ଆଡ଼କୁ ବ୍ରେସ ଗୁଡ଼ିକ ବେଶ୍ ଭାରିଥିଲା । ପରେ ହାଲୁକା ଗୁଡ଼ିକ ତିଆରି ହୁଏ । ଯାହାହେଉ, ଜୀବନର ଶେଷଦିନ ପର୍ଯ୍ୟନ୍ତ ସେ ବ୍ରେସ ବା ଅପର କାହାର ବାହୁଛଡ଼ା ଚାଲୁନଥିଲେ । ସେ ପହଁରି ପାରୁଥିଲେ ଓ ଜଳପୋଲୋ ଖେଳୁଥିଲେ ।

ପିଲାପିଲି ସବୁ ଜାଣୁଥିଲେ ଯେ ସେ ସବୁବେଳେ କାମର ଲୋକ । କିନ୍ତୁ ସମ୍ପୂର୍ଣ୍ଣ ସହଜ ଭାବରେ ସେମାନେ ଏହି ପଙ୍ଗୁତା ସ୍ୱୀକାର କରି ନେବାରୁ ତାଙ୍କର ଭାରି ସୁବିଧା ହୁଏ । ସେ ମଧ୍ୟ ଏକଥା ମାନି ନେବାରେ ଦ୍ୱିଧା ବୋଧ କରୁନଥିଲେ । ବାହାରର ଏସବୁ ବ୍ୟାପାରରେ ତାଙ୍କର ଆକର୍ଷଣ ଥିଲା ଯେ ସେ ସବୁବେଳେ ଏ ଯେଉଁ ବ୍ୟସ୍ତ ରହୁଥିଲେ । ଏକ ଘେରିଆ ବୋଲି କୌଣସି ଅଭିଜ୍ଞତା ତାଙ୍କ ସାରା ଜୀବନରେ ନଥିଲା ।

ଲୋକେ ପ୍ରାୟ ମୋତେ ପଚାରନ୍ତି ତାଙ୍କ ରୋଗ ସମ୍ବନ୍ଧରେ ମୋର ମନର ଧାରଣା । ସତକଥା କହିବାକୁ ଗଲେ ମୋର ମନେହୁଏ ମୁଁ ଏକଥା କେବେହେଲେ ତଳେଇ ଦେଖିନାହିଁ । ଘର ଓ ଗୃହସ୍ଥାଳିର କାମଥିଲା

ପ୍ରଚୁର । ତା ଉପରେ ପିଲପିଲଙ୍କ କାମ ତ ଥାଏ । ଭଲଭାବରେ ଘରସଂସାର ଚଳାଇବାକୁ ଯାଇଁ ଏତେ ବ୍ୟସ୍ତ ହେବାକୁ ପଡୁଥିଲା ଯେ ଏକଥା ଭାବିବାର ସମୟ ବି କେବେହେଲେ ପାଇନାହିଁ । କେବଳ ଦିନପରେ ଦିନ—ଏହାହିଁ ଥିଲା ମୋର ଜୀବନ—ଯେତେ ଭଲ ଭାବରେ ପାରୁଥିଲି, ଜୀବନ କଟାଉଥିଲି ।

୧୯୨୪ ମସିହାର ହେମନ୍ତ ଋତୁରେ ଫ୍ରାଙ୍କଲିନ୍ ଓ୍ୟାର୍ମସ୍ପ୍ରିଙ୍ଗ୍‌କୁ ପ୍ରଥମ ଥର ପାଇଁ ଯାଆନ୍ତି । ଦକ୍ଷିଣାଞ୍ଚଳର ଗୋଟିଏ ହତଶ୍ରୀ ଗ୍ରୀଷ୍ମାବାସ, ଦିନେ ଥିଲା ତାର ସୁଦିନ, ଆଜି କିନ୍ତୁ ସେ ତାଠାରୁ ବହୁଦୂରରେ । ବାହାରର ସନ୍ତରଣର ଜଳାଧାରଟି ଏଠାକାର ଗୋଟିଏ ଚମତ୍କାର ଜିନିଷ । ସ୍ପ୍ରିଂ ସ୍ଥାନଟି ଆଦିବାସୀମାନଙ୍କ ସମୟରୁ ବିଖ୍ୟାତ । ସେମାନେ ଯେତେବେଳେ ପରସ୍ପର ସାଙ୍ଗରେ ଲଢ଼ାଇ କରୁଥିଲେ, ସେତେବେଳେ ବି ଏହି ଅଞ୍ଚଳରେ ଶାନ୍ତି ରକ୍ଷିତ ହେଉଥିଲା । ସେମାନେ ବିଶ୍ୱାସ କରୁଥିଲେ ଯେ ଏଠାକାର ଜଳରେ ଔଷଧର ଗୁଣ ଅଛି । ଜଳରେ ଯେଉଁ ଆରାମଦାୟକ ଗୁଣ ଅଛି, ଏକଥା ଆଉ କାହାକୁ ବୁଝାଇବାକୁ ହୁଏ ନାହିଁ । ଜଳର ସ୍ରୋତ ଓ ତାର ଉଷ୍ଣତାରେ ବହୁ ସମୟ ଯାଏ ପହଁରିଲେ ବି କ୍ଳାନ୍ତି ଆସେ ନାହିଁ କି ଶୀତରେ ଥରିବାର ଭୟ ନଥାଏ । ମୋ ସ୍ୱାମୀଙ୍କୁ ସ୍ଥାନଟି ସଙ୍ଗେ ସଙ୍ଗେ ଭଲ ଲାଗିଲା । ମାଙ୍କ ପାଖକୁ ସେ ସେହିକଥା ସୋତ୍ସାହେ ପତ୍ରରେ ଜଣାନ୍ତି ।

ମୋ ଧାରଣା କିନ୍ତୁ ଘନୀଭୂତ ହେବାକୁ ଲାଗିଲା । ଯେତେବେଳେ ଦେଖିଲି ଦକ୍ଷିଣାଞ୍ଚଳର ଅଗଣିତ ମନୁଷ୍ୟମାନଙ୍କର ଜୀବନ କାଟୁଛି କଠୋର ପରିଶ୍ରମ ଓ ଦୁଃଖମୟ ଦାରିଦ୍ର୍ୟରେ । ଏପରି ବହୁ ଜୀବନ ଉତ୍ତରାଞ୍ଚଳର ଅନେକ ସ୍ଥାନରେ ଦେଖିବାକୁ ମିଳେ । ଯଦିଓ ଏକଥା ମାନିବାକୁ ହେଲା ଯେ ବହୁ ଲୋକ ନାନାଭାବରେ ଏଠାରୁ ଉପକାର ପାଉଛନ୍ତି, ତଥାପି ସ୍ୱାମୀଙ୍କ ଭଳି ଓ୍ୟାର୍ମସ୍ପ୍ରିଂରେ ମୁଁ ବାସକରି ଆନନ୍ଦ ଉପଭୋଗ କରିପାରିଲି ନାହିଁ । ସେ ଆନନ୍ଦ ପାଇଛନ୍ତି—ସନ୍ତୁଷ୍ଟ ହୋଇଛନ୍ତି, ଏଥିପାଇଁ ମୁଁ କୃତଜ୍ଞ । କିନ୍ତୁ ସେଠାରେ ଘରକରଣା କରି ରହିବା ପାଇଁ ମନ ମୋଟେ ବଳିଲା ନାହିଁ । ତଥାପି ଓ୍ୟାର୍ମସ୍ପ୍ରିଂ ସ୍ଥାନଟି ଖୁବ୍ ରମଣୀୟ । ରୋଗୀମାନଙ୍କ ମଧ୍ୟରୁ ଗୋଟିଏ ଆଶ୍ଚର୍ଯ୍ୟ ମନର ପରିଚୟ ପାଇବା ମୋ ପକ୍ଷରେ ସେଠି ଘଟିଥିଲା ।

ମୋ ସ୍ମୃତିରେ ଯେଉଁସବୁ ଘଟଣା ଜାଗରୂକ ହୋଇ ରହିଛି ତା ହେଲା ପଡ଼ୋଶୀମାନଙ୍କ ସହାନୁଭୂତି । ଏପରି ଦିନ ଯାଇ ନାହିଁ ଯେତେବେଳେ ସେମାନେ ଦରଜାରେ କିଛି ନା କିଛି ଦେଇ ଯାଇଛନ୍ତି । ଚୁଲିପାଇଁ କାଠ, ଗୋଟିଏ ମୁର୍ଗୀ ବା କିଛି ଫଳ ଏପରି ବହୁ ଜିନିଷ ସେମାନେ ଦେଇଥାନ୍ତି, ପ୍ରାୟ ପୁରୁଣା ରୁପା ବାସନରେ ବା ଚିନା ମାଟିର ଫୁଲଦାନିରେ ସୁସଜ୍ଜିତ ରକମ ରକମ ଫୁଲ ଆସେ । ଏ ସବୁ ହେଲା ସେ ସବୁ ଅଞ୍ଚଳର ଗୃହସ୍ଥମାନଙ୍କର ଅମୂଲ୍ୟ ସମ୍ପଦ । ଫୁଲ ଶୁଖିଗଲେ ସେ ସବୁ ଫେରସ୍ତ ନଦେବାଯାଏ ମୋର ଉଦ୍‌ବେଗର ସୀମା ନଥାଏ ।

ବହୁ ବର୍ଷ ଯାବତ୍ ସ୍ୱାମୀ ହେମନ୍ତରେ ଓ୍ୟାର୍ମିଷ୍ଟିଂକୁ ଯାଉଥିଲେ । ଏବେ ସୁଖଦୁଃଖ ମିଶ୍ରିତ ମନ ମଧ୍ୟରେ ପଡ଼େ ସେହି ସବୁ କୃତଜ୍ଞତା ଜ୍ଞାପନର ଉତ୍ସବର ସମାବେଶ । ପିଲାଝିଲଙ୍କ ମୁହଁରେ ଫୁଟି ଉଠେ ଅଫୁରନ୍ତ ଆନନ୍ଦ ରାଶି । କିନ୍ତୁ ରୋଗୀମାନଙ୍କର ଶିଷ୍ଟାଗ୍ରହ ପ୍ରଶ୍ନମାନାରେ ଦେଖି ମୋର କଣ୍ଠରୋଧ ହେଉଥିଲା । ସେମାନଙ୍କ ମଧ୍ୟରୁ କୌଣସି ଲୋକ ଷ୍ଟ୍ରେଚରରେ, ପୁଣି କୌଣସି ଲୋକ ହୁଇଲ ଚେୟାରରେ, ପୁଣି କେହି ବା ବାଡ଼ି ଉପରେ ଭର ଦେଇ ସେଠାକୁ ଆସୁଥିଲେ । କିଏ ଆସୁଥିଲା ଆରାମ ଉପଭୋଗ କରିବା ପାଇଁ, ପୁଣି କେହି ବା ପଙ୍ଗୁତା ଚିରଦିନ ପାଇଁ ହରଣ କରିବାକୁ । ହେଲେ, ସମସ୍ତେ ସେହି ସନ୍ଧ୍ୟା ସମୟରେ ଆନନ୍ଦରେ ବିଭୋର ହୋଇ ଉଠୁଥିଲେ ।

ବଣ ଓ ପାହାଡ଼ ଭିତର ଦେଇ ଉନ୍ମୁକ୍ତ ରାସ୍ତା ସମୂହ ଅଶ୍ୱାରୋହଣ ପକ୍ଷରେ ଖୁବ୍ ସୁବିଧାଜନକ ଥିଲା । ଦୁଇ ପାଖରେ ଗୋଡ଼ ଓହଳାଇ ଘୋଡ଼ା ଚଢ଼ା ବ୍ୟାପାରରେ ସାହସୀ ହେବାକୁ ମୋର ବହୁ ସମୟ ଅତିବାହିତ ହେଲା । ମୁଁ ଚିରଦିନ ଗୋଟିଏ ଆଡ଼କୁ ଗୋଡ଼ ଝୁଲାଇ ଚଢ଼ିଛି । ଏ କାମ ମୋତେ କଷ୍ଟକର ଶିଖିବାକୁ ହୋଇ ନାହିଁ । ତଥାପି ସାହସ ଉପରେ ବହୁପରିମାଣରେ ଭରସା ରଖି ମୋତେ ଜାଣିବାକୁ ହେଉଥିଲା ଯେ ମୁଁ ଘୋଡ଼ାରେ ଚଢ଼ି ବସିପାରେ ଓ ଜନ୍ତୁଟାକୁ ବି ନିଜର ଆୟତ୍ତ ମଧ୍ୟରେ ଆଣିପାରେ । ଅବଶେଷରେ ଅଶ୍ୱାରୋହଣରେ ଆନନ୍ଦ ବି ପାଇଛି ।

ହାଇଡ୍ ପାର୍କ ଓ ଓ୍ୟାଶିଂଟନରେ କେତେବର୍ଷ ଧରି ଆନନ୍ଦ ଉପଭୋଗ କରିଛୁ ।

ଓ୍ୟାର୍ମଷ୍ପ୍ରିଂକୁ ଆସିବାର ପ୍ରଥମାଂଶରେ ଫ୍ରାଙ୍କଲିନ୍‌ଙ୍କ ସେକ୍ରେଟାରୀ ଥିଲେ ନିଉଇୟର୍କ ସହରର ଅଧିବାସୀ ମିସ୍ ଲେ ହାଣ୍ଡ । ସେଠାରେ ତାଙ୍କୁ ବେଶୀ ସମୟ କଟାଇବାକୁ ହେଉଥିଲା । ମୁଁ ଯିବାକୁ ସେପରି ସମୟ ମିଳୁନଥିଲା । ମୋର ଛୁଆପିଲାକରି ଗୃହେସ୍ଥି । ଆନା, ଏଲିୟଟ, ଗ୍ରେଟ ଫ୍ରାଙ୍କଲିନ୍ ଓ ଜନ୍ ସେତେବେଳକୁ ସ୍କୁଲରେ ପଢ଼ୁଥାଏ । ସେମାନଙ୍କ ମଧ୍ୟରୁ କେହିବା ଆମ ଘରେ, କିଏ ବା ହାଇଡ ପାର୍କସ୍ଥ ମୋ ଶାଶୁଙ୍କ ପାଖରେ ଥାଏ । ଏତଦ୍-ବ୍ୟତୀତ ମୁଁ କିୟତ୍ ପରିମାଣରେ ରାଜନୀତି ବ୍ୟାପାରରେ ଲିପ୍ତଥାଏ । ଏହି ରାଜନୀତି କାମ କଲି ବେଶୀ ଭାବରେ ଲୁଇସ୍ ହୋଉଙ୍କ ପ୍ରେରଣାରେ । ସେ ସେତେବେଳକୁ ପୁନର୍ବାର ମୋର ସ୍ୱାମୀଙ୍କ ସେକ୍ରେଟାରୀ ଓ ସହଯୋଗୀ ନିଯୁକ୍ତ ହୋଇଛନ୍ତି । ଲୁଇସ ଓ୍ୟାର୍ମଷ୍ପ୍ରିଂକୁ ମଧ୍ୟ ମଝିରେ ମଝିରେ ଆସୁଥିଲେ । ସେ ନିଉଇୟର୍କରେ ଅବିରାମ କାମକରି ଯାଆନ୍ତି । ମୋର ମନେହୁଏ, ସେ ଏହା ଠିକ୍‌କରି ରଖିଥିଲେ ଯେ ମୋ ସ୍ୱାମୀ ପୁନର୍ବାର ଜନଗଣଙ୍କ କାର୍ଯ୍ୟରେ ଅବତରଣ କରିବେ । ସେ ସେହି ଅନୁସାରେ ତାଙ୍କର ପରିକଳ୍ପନା ଠିକ୍‌କରି ରଖିଥିଲେ । ଯେଉଁମାନେ ସାହାଯ୍ୟ କରି ପାରିବେ, ଏପରି ଲୋକଙ୍କୁ ଏସବୁ କାମରେ ନିଯୁକ୍ତ କରୁଥିଲେ ।

ଫ୍ରାଙ୍କଲିନ ସକ୍ରିୟ ଭାବରେ ରାଜନୀତି କ୍ଷେତ୍ରକୁ ଅବତରଣ କରିବା ଆଗରୁ ଏହି କେଇବର୍ଷ ମୁଁ ଲୁଇଜ୍‌ହୋଉଙ୍କ ପରାମର୍ଶରେ ଏପରି କେତେ ଗୁଡ଼ିଏ କାମ କରିଥିଲି ଯାହା ଫ୍ରାଙ୍କଲିନ୍‌ଙ୍କ ଦୃଷ୍ଟି ଆକର୍ଷଣ କରିପାରେ । ମୋତେ ଡେମୋକ୍ରେଟିକ୍ ଷ୍ଟେଟ୍ କମିଟିର ମହିଳା ବିଭାଗରେ ଭର୍ତ୍ତିକରି ଦିଆ ହୁଏ । ଲୁଇଜ୍ ମୋର କାମ ଦେଖି ଯେ ଏପରି କରିଥିଲେ, ତାହା ନୁହେଁ, ସେ ମନେକରିଥିଲେ ଯେ ଏତଦ୍ୱାରା ମୁଁ ଏପରି ସବୁଲୋକଙ୍କୁ ଘରକୁ ଡେକି ଆଣିବି, ଯେଉଁମାନେ ଫ୍ରାଙ୍କଲିନ୍‌ଙ୍କୁ ରାଜନୀତି ଦିଗରୁ ଉତ୍ସାହିତ କରି ପାରିବେ । ମୋହର ପ୍ରଥମ କାମ ଥିଲା ଟଙ୍କା ଉଠାଇବା । ଏ କାମକୁ ମୁଁ ଏବେବି

ଗୁରୁତ୍ୱ ଦେଇଥାଏ । କାରଣ ମହିଳା ବିଭାଗର ନିଜସ୍ୱ ଟଙ୍କା ହେଲେ ସେ ତାର ନିଜର ପରିକଳ୍ପନା ନିଜେ କରି, ସେହିପରି କାର୍ଯ୍ୟ ବି କରିପାରେ । ମୁଁ ଦେଖିଛି ମହିଳାମାନଙ୍କ ସହିତ ମିଳିମିଶି ଯେଉଁ ସବୁ କାମ କରିବା ଉଚିତ, ଷ୍ଟେଟ କମିଟିର କର୍ତ୍ତୃପକ୍ଷଗଣ ସେ ସବୁ କାର୍ଯ୍ୟରେ ଗୁରୁତ୍ୱ ଆରୋପ କରନ୍ତି ନାହିଁ । ସମିତିର ସହକାରୀ ସଭାନେତ୍ରୀର କାମ ଓ ମହିଳା ବିଭାଗ ପାଇଁ ଟଙ୍କା ଉଠାଇବା ବ୍ୟତୀତ ସ୍ତ୍ରୀଲୋକମାନେ ଉତ୍ସାହ ପାଇବା ଭଳି କେତେଗୁଡ଼ିଏ କାର୍ଯ୍ୟ ସୂଚୀର ଖସଡ଼ା ପ୍ରସ୍ତୁତ କରିଥିଲି । ପରେ ଲୁଇସ୍ ହୋଉଙ୍କ ସାହାଯ୍ୟରେ ଗୋଟିଏ ଷ୍ଟେଟ ମାସିକ ପତ୍ରିକା ସମ୍ପାଦନାକରେ । ସବୁ ସମେତ ୭ବର୍ଷ ଡେମୋକ୍ରାଟିକ୍ ଷ୍ଟେଟ୍ କମିଟିର ମହିଳା ବିଭାଗରେ ମୁଁ କାମ କରିଥିଲି । ଷ୍ଟେଟର ଅଭିଯାନ ସମୂହରେ ଆମେ ସବୁ ଅତିରିକ୍ତ ପରିଶ୍ରମ କରିଥିଲୁ । ମୋର ପ୍ରଧାନ କାମ ଥିଲା ନିୟନ୍ତ୍ରଣ କରିବା । ପୁଣି ଲୁଇସ୍‌ଙ୍କ ସାହାଯ୍ୟରେ କେତେଗୁଡ଼ିଏ ବସ୍ତୁବସ୍ତୁ ଉପାୟର ଉଦ୍ଭାବନବି କରେ । ୧୯୨୪ମସିହାର ଅଭିଯାନରେ ଆଲଫ୍ରେଡ୍ ଇ,ସ୍ମିଥ୍ ଠିଆ ହୋଇଥିଲେ ମୋର ସମ୍ପର୍କୀୟ ଭ୍ରାତା ଭାଇ ଥିଓଡୋର ରୁଜଭେଲ୍ଟଙ୍କ ବିରୁଦ୍ଧରେ । ସେ ତାଙ୍କ ଆଗରୁ ହାର୍ଡିଙ୍ଗ ଅମଳରେ ନୌ-ଦପ୍ତରର ସହ ସମ୍ପାଦକ ଥିଲେ । ସେତେବେଳକାର ଆସନ୍ନ ଘଟିତ ଟିପ୍‌ଟ୍ ଡ୍ୟାମ୍ ଦୁର୍ଘଟଣାରେ ଖୁବ୍ ଉତ୍ତେଜନା ସୃଷ୍ଟି ହୋଇଥିଲା । ଏହା ସହିତ ଷ୍ଟେଟ ଥିଓଡୋର ରୁଜଭେଲ୍ଟଙ୍କର କୌଣସି ସମ୍ବନ୍ଧ ନଥିଲା । ସେଇଥିପାଇଁ ଏହି ଉତ୍ତେଜନାକୁ ମୂଳଧନ କରି ଆମେସବୁ ଦେଖିବାକୁ ଟିକେଟଲି ଭଳି ଗୋଟିଏ ଗ୍ରୁଷ୍ଟ ଠିଆକଲୁ । ଏହି ଗ୍ରୁଷ୍ଟଟି ଗୋଟିଏ ମଟର ଗାଡ଼ି ଉପରେ ବିଆରି ହେଲା । ଧୂଆଁ ସେ ଉଦ୍‌ଗାର କରିବାକୁ ଲାଗିଲା । ଏହାକୁ ସାମନାରେ ରଖି ସାରି ବସ୍ତ୍ର ମଧ୍ୟରେ ଗାଡ଼ିର ଗୋଟିଏ ଶୋଭାଯାତ୍ରା ବାହାରେ । ଗଭର୍ଣ୍ଣରର ପଦ ପ୍ରାର୍ଥୀ ଭାବରେ ରିପବ୍ଲିକାନ୍ ଦଳ ପକ୍ଷରୁ ସେ ଠିଆହୋଇଥିଲେ, ସେ ଯେଉଁଠାକୁ ଗଲେ, ଏ ଗାଡ଼ି ମଧ୍ୟ ତାଙ୍କ ପଶ୍ଚାଦନୁସରଣ କରିବାକୁ ଲାଗିଲା ।

ଲୁଇସ୍ ଜୋରକରି ଧରିଲେ ମୋତେ ବକ୍ତୃତା ଦେବା ଶିଖିବା ପାଇଁ । ମୁଁ ଯେତେବେଳେ ବକ୍ତୃତା ଦେଉଥାଏ, ସେ ପଛ ବେଞ୍ଚରେ ବସନ୍ତି । ମୋର ବକ୍ତୃତାରେ କେଉଁଠି ଭୁଲ ହୋଇଛି, ସେକଥା ପରେ ମୋତେ କହନ୍ତି । ଥରେ ସେ ମୋତେ ପଚାରିଲେ "ତମେ ବକ୍ତୃତା ଦେଉ ଦେଉଁ ଗୋଟିଏ ଜାଗାରେ ହସିଲ କାହିଁକି ?" ମୁଁ କହିଲି "ମୁଁ ହସିଥିଲି ବୋଲି ଜାଣେନାହିଁତ, ହସିବାର ସେପରି କିଛି କାରଣ ନଥିଲା ।" ଲୁଇସ କହିଲେ ତା ମୁଁ ଜାଣେ । ବୋକା ଭଳିଆ ହେଁ ହେଁ କରି ହସିପକାଇଲ କାହିଁକି ?

ମୋ ପାଖରେ ବକ୍ତୃତା ଦେବାର କାରଣ ସେତେବେଳେ ବି ସୁସ୍ପଷ୍ଟ ନଥିଲା । ସେଇଥି ପାଇଁ ପ୍ରଥମରେ ବହୁତ କଷ୍ଟ ହୋଇଥିଲା । ଏବେ ମୁଁ ବୁଝୁଛି ଲୁଇସ୍ ହୋ ଜାଣୁଥିଲେ, ମୁଁ ଯେବେ ବକ୍ତୃତା ମଧ୍ୟଦେଇ ପାର୍ଟି ନିକଟରେ କାର୍ଯ୍ୟକାରୀ ନହୋଇ ଉଠେ, ତାହେଲେ କୌଣସି ନେତା ମୋ ସମ୍ବନ୍ଧରେ ବିବେଚନା କରିବେ ନାହିଁ ।

ଆମ୍ଭମାନଙ୍କ ମତରେ ଗ୍ରାମ୍ୟ ଇଲାକାରେ କୌଣସି ଶିଳ୍ପର ପ୍ରସାର ହୋଇପାରେ କି ନା, ସେ ସମ୍ବନ୍ଧରେ ମୋ ସ୍ୱାମୀ ଖୁବ୍ ଉତ୍ସାହୀ ଥିଲେ । ଏତଦ୍ଦ୍ୱାରା କେତେଗୁଡ଼ିଏ ଯୁବକଙ୍କୁ କାମ ଦିଆହେବ । ନଚେତ୍ ସେମାନେ ଘୃଣଖେଳା ଗୁଣ୍ଡା ହୋଇ ବୁଲିଯିବେ । ଖଣିକାମ କମିଗଲେ, ସେମାନଙ୍କୁ ଶିଳ୍ପ ପ୍ରତିଷ୍ଠାନରେ କାମଦେଲେ, ମୋଟାମୋଟି ଅନ୍ୟ ଭଲହିଁ ହେବ । ସେ ମନେ କରୁଥିଲେ ପ୍ରଗତିବାଦୀ, କର୍ମଠ ତରୁଣ ମାନଙ୍କୁ ନେଇ, ସେମାନଙ୍କ ଦ୍ୱାରା ନିୟମିତ କାମକରାଇ ଆମ ଅଞ୍ଚଳର ଖଣି ସମୂହର ଉନ୍ନତି କରାଯାଇ ପାରେ ।

ଫ୍ରାଙ୍କଲିନ୍ ଭ୍ରମଣର ଗୋଟିଏ ଗ୍ରେଟ ଅଞ୍ଚଳକଥା ଶୁଣିଥିଲେ । ସେଠାକାର ମନୁଷ୍ୟ ସେମାନଙ୍କର ଘର ଓ ଗ୍ରାମ୍ୟ ପରିବେଶକୁ ଖୁବ୍ ଭଲ ପାଉଥିଲେ । କିନ୍ତୁ ସେମାନେ ଖଣିରୁ ଭଲଭାବରେ ଜୀବିକା ନିର୍ବାହ କରିପାରୁ ନଥିଲେ । ଏମାନଙ୍କ ମଧ୍ୟରେ ଜଣେ ଉତ୍ସାହୀ ମନୁଷ୍ୟ କିଛିଦିନ ପାଇଁ ବାହାରକୁ ବାହାରି ଯାଆନ୍ତି । ସେ ଫେରିଆସି ପରାମର୍ଶ ଦେଲେ ଯେ ସେମାନଙ୍କ ଅଞ୍ଚଳର ଆଖପାଖରେ ଏପରି ଗୋଟିଏ ଧରଣର କାଠମିଳେ

ଯାହା କୌଣସି ଆଞ୍ଚଳିକ ଶିଳ୍ପକାମରେ ଲାଗିପାରେ । ସେମାନେ ଗୋଟିଏ ଛୋଟ ଧରଣର କାରଖାନା ବସାନ୍ତି । ସେଠାରେ ଶୀତ କେଇମାସ ଧରି କାଠର ଚଟୁ ଓ କାଠର ତଙ୍କା ତିଆରି କରିବାକୁ ଲାଗିଲେ । ଜଣେ ବଡ଼ ବ୍ୟବସାୟୀଙ୍କ ନିକଟରୁ ମୂଳଧନ ଯୋଗାଡ଼ ହୋଇଗଲା । ଏପରି ଭାବରେ ବହୁ ପରିମାଣରେ କାଠଚଟୁ ଓ ତଙ୍କା ତିଆରିକରି ସେମାନେ ସେମାନଙ୍କର ଜୀବନଧାରଣର ମାନ ବଢ଼ାଇବାକୁ ଲାଗିଲେ । ଆଉ ନିଜ ପ୍ରିୟ ଖଳା ଓ ଘର ମଧ୍ୟରେ ରହିଗଲେ ।

ଏହି ପରୀକ୍ଷା ଫଳ ଦେଖି ମୋ ସ୍ୱାମୀ ମଧ୍ୟ ଆମ ଅଞ୍ଚଳର ଆଖପାଖରେ ଏପରି ଭାବରେ କୌଣସି ଶିଳ୍ପ ବ୍ୟବସ୍ଥା କରିଯାଏ କି ନା, ସେ ସନ୍ଧାନରେ ବ୍ୟଗ୍ରହୋଇ ଉଠିଲେ । ସେ ମାଟିକୁ ପ୍ରାଣଦେଇ ଭଲପାଉଥିଲେ । ତାର ଉନ୍ନତି କରିବାରେ ସେ ଆତ୍ମ ଉତ୍ସର୍ଗ କରିବାକୁ ଲାଗିଲେ । ସେ ଏବେ ବୁଝି ପାରିଲେ ଯେ ଆମ ଅଞ୍ଚଳର କୃଷୀମାନଙ୍କର ଦୁଃଖ ଖୁବ୍ ଚରମମାତ୍ରାକୁ ଉଠୁଛି । ସେମାନଙ୍କର କର୍ମଠ ଯୁବକମାନଙ୍କୁ କୃଷକାମରେ ଲଗାଇ ଓ କଠୋର ପରିଶ୍ରମ କରାଇ ଲାଭ ଖୁବ୍ କମ ହେଉଛି । ସେଇଥିପାଇଁ ଆଖ-ପାଖ ଅଞ୍ଚଳର ଯୁବକମାନଙ୍କୁ ଶିକ୍ଷା ଓ କାମଦେବା ବ୍ୟାପାରରେ ଆମ୍ଭମାନଙ୍କ ପ୍ରଚେଷ୍ଟାରେ ତାଙ୍କର ଉତ୍ସାହ ବୃଦ୍ଧି ପାଇବାକୁ ଲାଗିଲା । ଅବଶ୍ୟ ଆମ୍ଭ-ମାନଙ୍କର ସେ ସମୟରେ ଦକ୍ଷ କାରିଗରଙ୍କ ଅଭାବ ଉପଲବ୍ଧି କରାଯାଉଥିଲା । ସୌଭାଗ୍ୟକ୍ରମେ କେଇଜଣ ଭଲ କାଠମିସ୍ତ୍ରିଙ୍କର ସନ୍ଧାନ ପାଇଲା । ଇଟାଲି ଓ ନରଓ୍ୱେରୁ ଏମାନଙ୍କ ପିତା ଓ ପିତାମହଗଣ ଏ ଦେଶକୁ ଆସନ୍ତି ।

ଆମେ ସବୁ ଦେଖିଲୁ, ଆମ କାରଖାନାରେ ଯେକୌଣସି ଯୁବକ କାମ ଶିଖିନିଏ, ତାକୁ କୃଷୀବନ୍ଧ ଜୀବନ ଭଲ ଲାଗେନାହିଁ । ଏହାର କାରଣ ହେଲା କୃଷିଠାରୁ କାରଖାନାରେ ବେଶୀ ରୋଜଗାର ହୁଏ । ସେଇଥିପାଇଁ ଗ୍ରୀଷ୍ମରେ ସେ ଭଲ ବେତନ ଓ ନିୟମିତ ପରିଶ୍ରମ ଛାଡ଼ିଯିବାକୁ ଏକାବେଳେ ନାରାଜ । ଏ କଥା ସତ୍ୟ ଯେ ମନ୍ଦା ବର୍ଷ ସମୂହରେ ଯେତେବେଳେ କାମ ମିଳିବା ଖୁବ୍ ମୁସ୍କିଲ ହୋଇଉଠେ, ସହର ଓ ନଗରରୁ ବହୁ ଶ୍ରମିକ ଖଳାକୁ ଫେରି

ଆସନ୍ତି । କିନ୍ତୁ କୌଣସି କାରଖାନା ଓ ବାଣିଜ୍ୟ ପ୍ରତିଷ୍ଠାନରେ କାମ ମିଳିବା ସଙ୍ଗେ ସଙ୍ଗେ ବୃହତ୍ତର ଅର୍ଥନୈତିକ ଲାଭ ଆଶାରେ ଯୁବକଗଣ ସହର ଜୀବନ କାମନା କଲେ । ଏହି ବ୍ୟାପାରରେ ସାଧାରଣତଃ ସେମାନଙ୍କର ସ୍ତ୍ରୀଲୋକଗଣ ସେମାନଙ୍କୁ ଭାଗଦା କରୁଥିଲେ । ସେମାନେ ଭାବୁଥିଲେ, କୃଷୀବନ୍ଧର ଜୀବନ ଯେପରି ସେମାନଙ୍କ ପକ୍ଷରେ କଷ୍ଟକର, ସେହିପରି ସେମାନଙ୍କ ସ୍ୱାମୀମାନଙ୍କ ପକ୍ଷରେ ମଧ୍ୟ କଷ୍ଟଦାୟକ ।

ଆମ୍ଭେମାନେ ମାତ୍ର ପ୍ରଥମ ବର୍ଷ କେତୋଟି ଆମ୍ଭମାନଙ୍କ କାରଖାନା ଖୋଲୁରଖୁ । ସେତେବେଳେ ମନୁଷ୍ୟଙ୍କୁ କାମଦେବା ସବୁଠୁ ହେଲା ବଡ଼କାମ । ୧୯୨୮ ମସିହାର ବସନ୍ତ ଋତୁରେ ଯେତେବେଳେ ଗଭର୍ଣ୍ଣର ସ୍ମିଥ୍ ଡେମୋକ୍ରେଟିକ୍ ମନୋନୀତ ପ୍ରାର୍ଥୀ ହିସାବରେ ରାଷ୍ଟ୍ରପତି ପଦରେ ଦଣ୍ଡାୟମାନ ହେବେ ବୋଲି ମନେହେଉଥିଲା, ମିସେସ୍ ବେଲ୍ ମସ୍କୋଭିଇଜ୍ ମୋତେ ସେତେବେଳେ ଜାତୀୟ ଏହି ନିର୍ବାଚନ ଅଭିଯାନରେ ମହିଳା ବିଭାଗ ନିୟନ୍ତ୍ରଣ କରିବାକୁ କହିଲେ ।

ସେହିବର୍ଷ ଜୁନ୍‌ରେ ମୋର ସ୍ୱାମୀ, ମୋ ପୁଅ ଏଲିୟଟ୍‌କୁ ନେଇ ଟେକ୍‌ସାସର ହାଉଷ୍ଟନକୁ ଡେମୋକ୍ରାଟିକ ନ୍ୟାସନ୍ୟାଲ କନ୍‌ଭେନସନ୍‌କୁ ଯାଆନ୍ତି । ମୋ ସ୍ୱାମୀଙ୍କର ଟେକ୍‌ସାସରେ ଗରମରେ କିଛି ହୋଇନାହିଁ ଦେଖିବାକୁ ମୋର ସ୍ୱସ୍ତିର ନିଶ୍ୱାସ ପଡ଼ିଲା । ସେ ଖୁବ୍ ଖୁସି ହୋଇ ହାଇଡ୍ ପାର୍କକୁ ଫେରି ଆସିଲେ । ସେ ଆଲଫ୍ରେଡ୍ ଇ, ସ୍ମିଥ୍‌ଙ୍କ ମନୋନୟନ ବ୍ୟାପାରରେ ଯଥେଷ୍ଟ ସାହାଯ୍ୟ କରିଛନ୍ତି ଭାବି ଖୁସିହୋଇ ଉଠିଲେ ।

ଫ୍ରାଙ୍କ୍‌ଲିନ୍ ଓ ମୁଁ ବହୁଦିନ ଧରି ଗଭର୍ଣ୍ଣର ସ୍ମିଥଙ୍କୁ ରାଜନୈତିକ ଦିଗରୁ ସମର୍ଥନ କରିଛୁ । ତାର କାରଣ ହେଲା ସାମାଜିକ କାର୍ଯ୍ୟସୂଚୀ । ଆମର ସବୁ ବିଶ୍ୱାସ, ସେ ନରନାରୀ ନିର୍ବିଶେଷଙ୍କର ମଙ୍ଗଳ କାମନା କରୁଥିଲେ । ଫ୍ରାଙ୍କ୍‌ଲିନ୍‌ଙ୍କ ମନେଥିବ ୧୯୧୧ ମସିହାରେ ନିଉଇୟର୍କ ସହରରେ ଟ୍ରାଙ୍ଗଲ ଅଗ୍ନିକାଣ୍ଡ ପରେ ଗଭର୍ଣ୍ଣର ସ୍ମିଥ୍ ଆମ୍ଭମାନଙ୍କର ରାଷ୍ଟ୍ରର ଫ୍ୟାକ୍‌ଟରୀ ଆଇନ ଉନ୍ନୟନ କରିବା ପାଇଁ ପ୍ରବଳ ଚେଷ୍ଟା କରିଥିଲେ । ଏହି ଅଗ୍ନିକାଣ୍ଡ

ବାସ୍ତବିକ୍ ଗୋଟିଏ ଭୟାବହ ଘଟଣା । କାରଖାନାରୁ ବାହାରି ଆସିବାର ଉପଯୁକ୍ତ ପଥ ଓ ଅଗ୍ନିରୁ ରକ୍ଷା ପାଇଲାଭଳି କୌଣସି ସୁବନ୍ଦୋବସ୍ତ ନଥିଲା ବୋଲି ବହୁ ବାଳକା ଓ ସ୍ତ୍ରୀଲୋକ ପୋଡ଼ି ଭସ୍ମ ହୋଇ ଯାଇଥିଲେ । ଗଭର୍ଣ୍ଣର ସ୍ମିଥ୍ ତାଙ୍କ ଜୀବନର ଅଧିକାଂଶ ସମୟ ଗୋଟିଏ ରାଷ୍ଟ୍ରରେ ତଥା ଗୋଟିଏ ନଗର ମଧ୍ୟରେ ଅତିବାହିତ କରିଥିଲେ । ସୁତରାଂ ତାଙ୍କ ଚରିତ୍ରରେ କିଛି ତ୍ରୁଟି ରହିବା ସ୍ୱାଭାବିକ । ତଥାପି ଆମେ ମନେ କରିଥିଲୁ ସେ ଜନ-ସାଧାରଣଙ୍କର ଅଭାବ, ଅସୁବିଧା ଭଲକରି ଜାଣୁଥିଲେ ଓ ସରକାର ଚଲାଇବାଭଳି ପ୍ରତିଭା ତାଙ୍କର ଥିଲା । ଆମେ ସବୁ ବି ତାଙ୍କ ଚରିତ୍ରର ନିଷ୍ଠା ସମ୍ବନ୍ଧରେ କେବେହେଲେ ସନ୍ଦେହ କରିନାହୁଁ, ତାଙ୍କର ସ୍ମୃତି ଶକ୍ତି ମଧ୍ୟ ଅସାଧାରଣ ଥିଲା । ଏବଂ ନିର୍ବାଚନର ଅଭିଯାନ ସମୟରେ ସେ ବିଶେଷକରି ତାଙ୍କ ରାଜ୍ୟର ଜନସାଧାରଣଙ୍କ କାମରେ ଯେପରି ଭାବରେ ଆଳାପ ଆଲୋଚନା କରୁଥିଲେ, ସେଥିରେ ପ୍ରଭୂତ ଉପକାର ହେଉଥିଲା ।

ଫ୍ରାଙ୍କ୍‌ଲିନ୍ ଭାବିନଥିଲେ ଯେ ସେ ବି ନିର୍ବାଚନୀ ଅଭିଯାନର ଖୁବ୍ ବେଶୀ କାମକରି ପାରିବେ ବୋଲି । ହେଲେ, ସେ ବି ମଝିରେ ମଝିରେ ଅଫିସକୁ ଆସିବାକୁ ଲାଗିଲେ । ସେ ଥିଲେ ବ୍ୟବସାୟୀ ବିଭାଗର କର୍ତ୍ତା ଓ ପରିକଳ୍ପନା ମୂଳକ ସଭାସମୂହରେ ସେ କେତେଗୁଡ଼ିଏ ବକ୍ତୃତା ବି ଦିଅନ୍ତି । ଲୁଇସ ହୋଉଙ୍କୁ ସେ ପ୍ରଧାନ ଘାଟିରେ ତାଙ୍କ ତରଫରୁ ସବୁ ସମୟରେ ପ୍ରତିନିଧିତ୍ୱ କରିବାର ଭାରଦିଅନ୍ତି । ମୋ ପକ୍ଷରେ ସେତେବେଳେ ବକ୍ତୃତା ଦେବା ଖୁବ୍ ଶକ୍ତ ବୋଧହେଉଥିଲା । ସେଇଥି ଯୋଗୁ ମୋ କାମ ହେଲା ଅଫିସ ତତ୍ତ୍ୱାବଧାନ କରିବା, ଚିଠିପତ୍ରର ବ୍ୟବସ୍ଥା, ମହିଳାଗଣ ଦେଖା କରିବାକୁ ଆସିଲେ ସେମାନଙ୍କର ଅଭ୍ୟର୍ଥନା, କେତେବେଳେ ବା ବକ୍ତା-ମାନଙ୍କ ଅନୁରୋଧରେ ଆଲୋଚନା । ମୋଟାମୋଟି କହିବାକୁ ଗଲେ ମୋର କାମଥିଲା ଦରକାରୀ କାମ ସବୁର ସମାଧାନ କରିବା । ଥରେ କି ଦିଥର ବକ୍ତାଗଣ ଯେତେବେଳେ ଶେଷମୁହୂର୍ତ୍ତରେ ଆସି ନ ପହଞ୍ଚନ୍ତି, ସେତେ-ବେଳେ ମୋତେ ଅଫିସରୁ ଯାଇ ସେମାନଙ୍କ କାମ ଦଖଲ କରିବାକୁ ପଡ଼ିଥିଲା ।

ମୁଁ ଯଦିଓ ସେତେବେଳକୁ ସ୍କୁଲରେ ପଢ଼ାଉଥିଲି, ଆଉ ନିଉଇୟର୍କ ସହରର ଜାତୀୟ ନିର୍ବାଚନୀ ଅଭିଯାନର ସଦର ଘାଟିରେ କାମକରୁଥିଲି, ତଥାପି ନିଉଇୟର୍କ ଡେମୋକ୍ରେଟିକ୍ କନଭେନସେନ୍‌ରେ ସେଥରକାର ପ୍ରଚେଷ୍ଟାରେ ହେଉଥିବା ଅଧିବେଶନରେ ଯୋଗ ଦେଇଥିଲି । ମୋ ସ୍ୱାମୀଙ୍କୁ କିପରି ଭାବରେ ଗଭର୍ଣ୍ଣର ପଦପ୍ରାର୍ଥୀ ହେବା ନିମିତ୍ତ ପ୍ରତିଯୋଗୀତାରେ ଅବତୀର୍ଣ୍ଣ କରାଇବାରେ ବ୍ୟବସ୍ଥା କରିଥିଲୁ, ସେ କଥା କହିବା ପାଇଁ ଅଧିବେଶନର ଉଲ୍ଲେଖ କଲି ।

ଶେଷ ମନୋନୟନ ଆଗରୁ ଅପରାହ୍ନ ନ୍ୟାସନ୍ୟାଲ ଡେମୋକ୍ରାଟିକ୍ କମିଟିର ତତ୍କାଳୀନ ସଭାପତି ଜନ୍, ଜେ, ରସକଫ୍ ଓ ଗଭର୍ଣ୍ଣର ସ୍ମିଥ୍ ମୋତେ ଆଲୋଚନା ପାଇଁ ଡାକି ପଠାନ୍ତି । ମୁଁ ଏଥିରେ ଆଦୌ ବିସ୍ମିତ ହୋଇନଥିଲି, କାରଣ ମୁଁ ଶୁଣିଥିଲି ମୋ ସ୍ୱାମୀଙ୍କୁ ସେମାନେ ନିର୍ବାଚନ ପ୍ରତିଯୋଗୀତାରେ ପ୍ରାର୍ଥୀ ଦଣ୍ଡାୟମାନ କରାଇବାକୁ ଚାହାନ୍ତି । କିନ୍ତୁ ଏକଥା ମୁଁ ଜାଣିଥିଲି ଓ୍ୱାର୍ମସ୍ପ୍ରିଂରେ ରହି ଫ୍ରାଙ୍କ୍ଲିନ୍ ତାଙ୍କ ରୋଗର ଚିକିତ୍ସା କରାଇବାକୁ ଚାହାନ୍ତି । ସେତେବେଳକୁ ସେ ସେଠାରେ ଥିଲେ । ସେମାନେ ମୋତେ କହିଲେ, ସେମାନଙ୍କର ଇଚ୍ଛା ସେ ଠିଆ ହୁଅନ୍ତୁ । ସେମାନେ ମୋତେ ଏପରି ପଚାରିଥିଲେ, ଯେ ମୁଁ କ'ଣ ମନେକରେ, ଏଥିରେ ତାଙ୍କ ଶରୀର ପକ୍ଷରେ ଖୁବ୍ ଅସୁବିଧା ହେବ । ମୁଁ ଜାଣେନାହିଁ ବୋଲି ଉତ୍ତର ଦେଇଥିଲି । ଡାକ୍ତରଗଣ ମୋତେ କହିଛନ୍ତି ସେ ଓ୍ୱାର୍ମସ୍ପ୍ରିଂରେ ପହଁରିଲେ ଓ ବ୍ୟାୟାମ କଲେ, ତାହେଲେ ତାଙ୍କ ଶରୀରରେ ଉନ୍ନତି ହୋଇପାରେ । ମୋ ସ୍ୱାମୀ ବି ଢେର ହସି ହସି କହୁଥିଲେ ବେଶୀଦିନ ବଞ୍ଚିଲେ ସେ ଚଲା-ବୁଲା କରିପାରିବେ । ଉନ୍ନତି କ୍ରମେ କ୍ରମେ ହେଉଥିଲା । ସେଇଥି ଯୋଗୁ ମଝିରେ ମଝିରେ ମନେ ହେଉଥିଲା, କେତେଦୂର ଉନ୍ନତି ହେବ, ସେକଥା କିଏ ଜାଣେ ?

ଗଭର୍ଣ୍ଣର ସ୍ମିଥ୍ ଓ ରସ୍କବ୍ ବାରମ୍ବାର କହୁଥିଲେ ଯଦ୍ଦ୍ୱାରା ଫ୍ରାଙ୍କ୍ଲିନ୍‌ଙ୍କ ସ୍ୱାସ୍ଥ୍ୟ ହାନି ନହୁଏ, ସେପରି କାର୍ଯ୍ୟ ଜୋରକରି ସେମାନେ କରାଇବାକୁ

ଯୁକ୍ତାନ୍ତି ନାହିଁ । କିନ୍ତୁ ସ୍ୱାସ୍ଥ୍ୟ ଛଡ଼ା ଅନ୍ୟ କୌଣସି କାରଣରେ ସେ ମତ ଦେବାକୁ ଅସ୍ୱୀକାର କରନ୍ତି, ତାହେଲେ ସେମାନେ ତାହା ଜାଣିବାକୁ ଯୁକ୍ତାନ୍ତି । ମୁଁ ଜଣାଇଲି ମୋ ମନେହୁଏ, ଏହାଠାରୁ ବଳି ଆଉ କୌଣସି ବଡ଼କାମ ଥାଇନପାରେ; ଆଉ ଫ୍ରାଙ୍କ୍‌ଲିନ୍ ମନେ କରନ୍ତି, ସ୍ୱାସ୍ଥ୍ୟର ଉନ୍ନତିର ଆଶା ଯେତେବେଳେ ଅଛି, ସେତେବେଳେ ଚେଷ୍ଟାକରି ଦେଖିବା ଉଚିତ ।

ଗଭର୍ଣ୍ଣର ସ୍ମିଥ୍, ମିଷ୍ଟାର ରସ୍‌କବ୍ ଓ ମୁଁ ବ୍ୟାପାରଟି ନେଇ ଆଲୋଚନା କରିବା ପରେ ସେମାନେ ଏଥର କହିଲେ ମୁଁ କ'ଣ ସ୍ୱାମୀଙ୍କୁ ଫୋନ୍‌ରେ ଡାକି ଗଭର୍ଣ୍ଣର ପଦପାଇଁ ତାଙ୍କୁ ଠିଆହେବା ପାଇଁ କହିବି । ଫାଉଣ୍ଡେସନକୁ ଫେରିବା ପରେ ମୁଁ ଫ୍ରାଙ୍କ୍‌ଲିନ୍‌ଙ୍କୁ ଫୋନରେ ପାଇଲି । ସେ ମୋତେ ବେଶ୍ ମଜାକରି କହିଲେ ଯେ ସେ ସାବଧାନୁଷ୍ଠାଯାକ ଫୋନ୍‌ଠାରୁ ଦୂରରେ ରହିନ୍ତି । ଆଉ ମୁଁ ନ ଡାକିଲେ ସେ ଜବାବ ବି ଦେଇନଥାନ୍ତେ । ତାଙ୍କୁ କେବଳ ଏତିକି କଥା କହିବା ପାଇଁ ସୁଯୋଗ ପାଇଲି । ମୁଁ ତାଙ୍କୁ ମିଷ୍ଟାର ରସ୍‌କବ୍ ଓ ଗଭର୍ଣ୍ଣର ସ୍ମିଥଙ୍କର ଅନୁରୋଧରେହିଁ ଡାକିଛି । ମୁଁ ତାଙ୍କୁ ଏଥର ଗଭର୍ଣ୍ଣର ସ୍ମିଥଙ୍କ ହାତରେ ଛାଡ଼ିଦେଇ ଯାଉଛି । ମୋତେ ଗାଡ଼ି ଧରିବାକୁ ହେବ । ଏଥର ମୁଁ ଦୌଡ଼ିଲି । ମୋର ଜିନିଷପତ୍ର ଗୁଡ଼ାଇ ନେଇ ଗାଡ଼ି ଧରିବାକୁ ହେବ ବୋଲି ଟାଉ ଠାଉ ଗାଡ଼ି ଧରିବାକୁ ଆସିଲାବେଳେ ଶୁଣିଲି ସ୍ମିଥ କହୁଛନ୍ତି "ହ୍ୟାଲୋ ଫ୍ରାଙ୍କ୍" ସେ ସ୍ୱର ଏବେବି ମୋ କାନରେ ବାଜୁଛି । ମୁଁ ତା ପରଦିନ ସକାଳ ଆଗରୁ କ'ଣ ହେଉଛି, ତାହା ଜାଣି ପାରିଲି ନାହିଁ । ଷ୍ଟେସନରୁ ଖବର କାଗଜ କିଣି ସେଥିରେ ଦେଖିଲି, ମୋ ସ୍ୱାମୀଙ୍କୁ ଶେଷରେ ମନୋନୟନରେ ରାଜିକରା ହୋଇଅଛି । ତାଙ୍କର ଏହି ସିଦ୍ଧାନ୍ତ ହେତୁ ଅନୁଶୋଚନା କେବେ କରିବାର ଶୁଣିନାହିଁ । ସିଦ୍ଧାନ୍ତକରି ସେ ଅନ୍ୟାନ୍ୟ ସମ୍ଭାବନାକୁ ମନରୁ ଦୂରକରି ଦେଉଥିଲେ ।

ତୁଳନା ମୂଳକ ଭାବରେ ଦେଖିବାକୁ ଗଲେ ମୁଁ ୧୯୨୮ ମସିହାର ଗଭର୍ଣ୍ଣର ନିର୍ବାଚନୀ ଅଭିଯାନ ସମ୍ବନ୍ଧରେ ଖୁବ୍ କମ୍‌ହିଁ ଜାଣେ । ମୁଁ ଆଗରୁ ନ୍ୟାସନ୍ୟାଲ ଅଫିସରେ କାମ ଆରମ୍ଭ କରିଥିଲି । ସେଇଥିଯୋଗୁ

ଫ୍ରାଂକ୍ଲିନ୍‌ଙ୍କ ମନେହେଲା ସେଠାରେ କାମ କରିବାକୁ ମୁଁ ବାଧ୍ୟ । ଆଉ ସେଥିରେ ମୋର ବେଶୀ ସମୟ ବ୍ୟୟ ହେବାକୁ ଲାଗିଲା । ମୁଁ ମଝିରେ୨ ତାଙ୍କ ବକ୍ତୃତା ଶୁଣିବାକୁ ଯାଉଥିଲି । ସେ ସାରା ରାଜ୍ୟରେ ପୂର୍ଣ୍ଣ ନିର୍ବାଚନୀ ଅଭିଯାନ ଚଳାନ୍ତି । ମୋର ମନେହୁଏ ଗଭର୍ଣ୍ଣର ସ୍ମିଥ୍ ପ୍ରେସିଡେଣ୍ଟ ପଦ ନ ପାଇଲେ ସେ ଯେ ଗଭର୍ଣ୍ଣର ହେବେ, ଏ ଆଶା ସେ କରୁନଥିଲେ । ଆମେ ସବୁ ରାଷ୍ଟ୍ରର ପ୍ରଧାନ ଘାଟିରୁ ନିର୍ବାଚନୀ ଦିନ ଯେତେବେଳେ ବେଶୀ ରାତିରେ ବାହାରୁ, ସେତେବେଳେ ବି ସେ ଫଳାଫଳ ସମ୍ବନ୍ଧରେ ଅନିଶ୍ଚିତ ଥାନ୍ତି । ପରଦିନ ପ୍ରତ୍ୟୁଷରେ ଯେତେବେଳେ ଶେଷସଂଖ୍ୟାସବୁ ଗଣନା ହୁଏ, ମୋ ସ୍ୱାମୀ ଖୁବ୍ କମ୍ ଭୋଟାଧିକ୍ୟରେ ଗଭର୍ଣ୍ଣର ନିର୍ବାଚିତ ହୁଅନ୍ତି । ମୋ ମନେହୁଏ, ସେ ଭାବୁଥିଲେ, ତାଙ୍କ ପକ୍ଷରେ ଏହା ଗୋଟିଏ ଖୁବ୍ ବଡ଼ ସମ୍ମାନ ଯେ ତାଙ୍କୁ ନିର୍ବାଚିତ କରା ହୋଇଛି । କାରଣ ଗଭର୍ଣ୍ଣର ସ୍ମିଥ୍‌ଙ୍କ ରାଷ୍ଟ୍ରରେ ଏତେ ବଡ଼ ଦଳ ଥିବା ସତ୍ତ୍ୱେ ସେ ପରାଜିତ ହୋଇଛନ୍ତି ।

ରାଷ୍ଟ୍ରର ସରକାରଙ୍କ ସମ୍ବନ୍ଧରେ ଫ୍ରାଂକ୍ଲିନ୍‌ଙ୍କର ସ୍ପଷ୍ଟ ଧାରଣା ଥିଲା । ସେ ଗଭର୍ଣ୍ଣର ସ୍ମିଥ୍‌ଙ୍କ ଅମଳରେ ଯେଉଁ ନୂତନ ନିୟନ୍ତ୍ରଣ ପରିକଳ୍ପନା ଗ୍ରହଣ ହୋଇଥିଲା ତାହା ଭଲକରି ଜାଣି ନେଇଥିଲେ । ମୋ ମନେହୁଏ, ସ୍ମିଥ୍ ଯାହା କରିଥିଲେ, ତାର ସମସ୍ତଟା ସେ ଅନୁମୋଦନ କରିନେଲେ । ଉଦ୍ଦେଶ୍ୟ ସଂକ୍ରାନ୍ତରେ, ରାଷ୍ଟ୍ର ବ୍ୟାପାରରେ ତାଙ୍କର ଏହି ଧାରଣା ପରବର୍ତ୍ତୀ-କାଳରେ ଜାତୀୟ ଉନ୍ନତି ସାଧନରେ ବିକଶିତ ହୋଇ ଉଠିଥିଲା । ଯେପରି ସେ ବୃଦ୍ଧାବସ୍ଥାରେ ବୃତ୍ତି ବ୍ୟବସ୍ଥାରେ ଜୋର ଦେଇଥିଲେ । ଗଭର୍ଣ୍ଣର ହିସାବରେ ଫ୍ରାଂକ୍ଲିନ୍ ଶ୍ରମିକମାନଙ୍କ ଆଡକୁ ଖୁବ୍ ନଜର ଦେଇଥିଲେ । ଶ୍ରମିକମାନଙ୍କ ଅଧିକାର ବ୍ୟାପାରରେ ତାଙ୍କର ବିଶ୍ୱାସ ଥିଲା । ସେ ମନେ କରୁଥିଲେ ମାଲିକମାନଙ୍କ ଅଧିକାର ପ୍ରତି ଯେଉଁ ସୁବିବେଚନା ଦେଖାହୁଏ, ସେମାନଙ୍କର ବି ତାର ଅଧିକାରୀ । ସମୟ ଯେତେବେଳେ ଜଟିଳ ହୋଇ ଉଠିଲା ସରକାରଙ୍କର ଜନସାଧାରଣଙ୍କ ଉପରେ ଦାୟିତ୍ୱ ଅଛି, ଏହି ନୀତି ରାଷ୍ଟ୍ରର ରାଜନୀତିରେ ଅନୁସୃତ ହୋଇ ଉଠେ । ଫ୍ରାଂକ୍ଲିନ୍‌ଙ୍କ ବିରୁଦ୍ଧରେ

ଅଭିଯୋଗ କରା ହେଉଥିଲା, ସେ ଶ୍ରମିକମାନଙ୍କୁ ଅଧିକା ଅଧିକାର ଦେଉଛନ୍ତି ବୋଲି । କିନ୍ତୁ ତାଙ୍କର ପ୍ରକୃତ ପ୍ରଚେଷ୍ଟା ଥିଲା ଧନୀକ ଓ ଶ୍ରମିକଙ୍କ କ୍ଷମତା ସମୀକରଣ ସମ୍ବନ୍ଧରେ । ଇତିହାସର କୃତୀ ଗ୍ରନ୍ଥ ହିସାବରେ ସେ ଜାଣୁଥିଲେ ଯେ ପୂର୍ବବର୍ତ୍ତୀ ଶାସନ ବ୍ୟବସ୍ଥା ସମୂହରେ ଧନୀକର କ୍ଷମତା ଯେ କେତେ ବିରାଟ ଓ ଅପ୍ରତିହତ ହୋଇ ଉଠିଥିଲା ତାହାର ଇୟତ୍ତା ନାହିଁ । ତାଙ୍କର ବ୍ୟକ୍ତିଗତ ଆକର୍ଷଣ ଥିଲା ଭୂମିରକ୍ଷା ଓ ବନ ବିଭାଗ ଆଡ଼କୁ । ପାଣିରୁ ଶକ୍ତିର ଉନ୍ନୟନ, ଆଦିବାସୀ, ପରିବହନ ସମସ୍ୟା, ଶିକ୍ଷା ସାହାଯ୍ୟ ଓ ସାଧାରଣଙ୍କର ସର୍ବାଙ୍ଗୀନ ଉନ୍ନତି ପ୍ରତି ତାଙ୍କର ସ୍ୱଦୃଷ୍ଟି ଥିଲା । ଶାସକ ଭାବରେ ସେ ଯେଉଁ ଅଭିଜ୍ଞତା ଲାଭ କରିଥିଲେ, ତାହାର ଦ୍ୱାରା ସେ ଅନୁପ୍ରାଣିତ ହୋଇ ଉଠିଥିଲେ । ଏହି ସବୁ ଉଦ୍ଦେଶ୍ୟ ଓ ସେ ସବୁର ଉପଲବ୍ଧି ପ୍ରେସିଡେଣ୍ଟ ପଦରେ ଅଧିଷ୍ଠାନ କାଳୀନ ଅହରହ ବଢ଼ି ଯାଇଥିଲା । ସେ ରାଷ୍ଟ୍ରପତି ହେବା ଆଗରୁ ବହୁ ଦେଶ ଭ୍ରମଣ କରିଥିଲେ । ସେଇଥିପାଇଁ ଦେଶର ବିଭିନ୍ନ ଇଲାକାରେ ଥିବା ଭିନ୍ନ ଭିନ୍ନ ସମସ୍ୟା ସମ୍ବନ୍ଧରେ ସେ ଜାଣୁଥିଲେ । ଆଗାମୀ ବର୍ଷ ସମୂହ ପାଇଁ ଏ ସବୁ ଥିଲା ଚମତ୍କାର ପ୍ରସ୍ତୁତି ।

ସରକାରୀ ପଦ ପାଇ ଫ୍ରାଂକ୍‌ଲିନ୍‌ଙ୍କର ରାଜନୀତି ପ୍ରତି ଆକର୍ଷଣ ଓ ଉଚ୍ଚାକାଙ୍କ୍ଷା ପୁଣି ନୂଆକରି ଜାଗି ଉଠିଲା । ମୁଁ ଏ ବିଷୟରେ ନିଃସନ୍ଦେହ ଯେ ସେ ଯେତେବେଳେ ଦେଖିଲେ, ରାଜନୈତିକ କର୍ମୀ ହିସାବରେ ସେ ପୁଣି ସକ୍ରିୟ ଭୂମିକା ଗ୍ରହଣ କରିବାକୁ ସକ୍ଷମ, ସେତେବେଳେ ନୂତନ ପଦ ଲାଭ କରିବା ପାଇଁ ସଂଗ୍ରାମର ବିଶୁଦ୍ଧ ରାଜନୀତି ଦିଗରୁ ସେ ଆନନ୍ଦ ପାଇବାକୁ ଲାଗିଲେ । ତାଙ୍କର ଉଚ୍ଚାକାଙ୍କ୍ଷା ଓ ରାଷ୍ଟ୍ର ବିଜ୍ଞାନର ଚର୍ଚ୍ଚା ସହିତ ରାଜନୀତିର ଭିତର ଦେଇ ଜନଗଣର ଉନ୍ନତି କାମନା ଏପରି ଭାବରେ ଛନ୍ଦି ହୋଇଥିଲା ଯେ ଗୋଟିକୁ ଅପରଠୁ ବିଚ୍ୟୁତ କରି ଯାଉନଥିଲା । ସେ ପ୍ରଥମରେ ରାଜ୍ୟର, ପରେ ଜାତିର, ସର୍ବଶେଷରେ ଜନସାଧାରଣଙ୍କ ଉନ୍ନତି କାମନା କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଘଟଣାର ପରିଣତି ସାଙ୍ଗେ ସାଙ୍ଗେ ବୃଦ୍ଧି

ପାଉଥିଲି । ଜାତି ହିସାବରେ ଆମେ ସବୁ ଏପରି ଗୋଟିଏ ଜାଗାରେ ଠିଆ ହେଉଥିଲୁ ଯେଉଁଠାରେ ସମଗ୍ର ପୃଥିବୀ ଆମ ଉପରେ ନିର୍ଭର କରି ରହୁଥିଲା ।

ଆଲବାନିରେ ( ନିଉଇୟର୍କର ରାଜଧାନୀ ) ସେ ଯେଉଁ କାମ କରିଥିଲେ, ତାହା ତାହାର ଆଗକାର ରାଜଧାନୀର ପରି ଭୂମିକା ହିସାବରେ ଅମୂଲ୍ୟ । ଏଠାରେ ସେ ଏପରି କେତେଗୁଡ଼ିଏ ରାଜନୀତିକ ଗୋଷ୍ଠୀ ସାଙ୍ଗରେ କାମ କରନ୍ତି, ଯେଉଁଠାରେ ତାଙ୍କର ଦଳ ଥିଲା ସଂଖ୍ୟା ଲଘିଷ୍ଠ । ପରେ ଓ୍ୱାଶିଂଟନରେ ମଝିରେ ମଝିରେ ମୋର ବେଶ୍ ମନେ ଅଛି, ଏବେ ଦଳ ସଂଖ୍ୟା ଗରିଷ୍ଠରେ ପରିଣତ ହେଲେହେଁ, ଆଲବାନି ଭଳି ସେଠାକାର ଡେମୋକ୍ରାଟିକ୍ ଦଳର ପ୍ରତିନିଧିଙ୍କ ସଙ୍ଗରେ ଶିକ୍ଷା ବିସ୍ତାର କାର୍ଯ୍ୟପାଇଁ ସେ କାମକରି ପାରିଥିଲେ ଖୁବ୍ ଭଲହିଁ ହୋଇଥାନ୍ତା ।

ଆଲବାନିର ବର୍ଷ ସମୂହ ଭବିଷ୍ୟତ ନିର୍ଦ୍ଧାରଣ କଲା । ରାଜ୍ୟରେ ଏପରି ଅନେକ ପରୀକ୍ଷା-ନିରୀକ୍ଷା ଚାଲିଲା, ଯେଉଁ ଗୁଡ଼ିକ ପରେ ଜାତୀୟ କାର୍ଯ୍ୟ ସୂଚୀ ମଧ୍ୟରେ ଗ୍ରହଣ କରାହୁଏ । ଏହାହିଁଥିଲା ଫ୍ରାଂକ୍ଲିନଙ୍କ ରାଜନୀତିର ଆଦର୍ଶର ଅଂଶ ବିଶେଷ । ମୁଁ ତାହାଙ୍କୁ ଏକଥା ବାରମ୍ବାର କହିବାର ଶୁଣିଛି ଯେ ୪୮ଟି ରାଷ୍ଟ୍ର ଥିବାରୁ ସବୁଠୁ ବଳି ବେଶୀ ବଡ଼ ସୁବିଧା ହେଲା ଯେ କୌଣସି କାର୍ଯ୍ୟ ସୂଚୀର ଜାତୀୟ ରୂପ ଦେବା ଆଗରୁ ଏହି ସବୁ ରାଷ୍ଟ୍ର ସମୂହରେ ସଂକ୍ଷିପ୍ତ ଉପାୟରେ ତାର ପରୀକ୍ଷାର ସମ୍ଭାବନା ଥାଏ ।

ସେ ଯେତେବେଳେ ଗଭର୍ଣ୍ଣର ଥିଲେ ମୋର ଜୀବନ ମଧ୍ୟ ପୂର୍ଣ୍ଣ ହୋଇ ଉଠିଥିଲା । ସେ ସମୟରେ ସର୍ବପ୍ରଥମ ମୁଁ ଏପରି ଗୋଟିଏ ଶିକ୍ଷକତା କାମ ପାଏ, ଯାହା ଛାଡ଼ିବାକୁ ଇଚ୍ଛା ହେଲା ନାହିଁ । ସେଇଥିଯୋଗୁ ପ୍ରତି ସପ୍ତାହରେ ଦିନ କେତୋଟି ନିଉଇୟର୍କ ସହରରେ ରହିବାର ବ୍ୟବସ୍ଥା କରିନିଏ । ସ୍କୁଲ ଛୁଟି ସମୟ୍ତକ ବାଦ୍ ଦେବାକୁ ବାଧ୍ୟ ହୁଏ । ବର୍ତ୍ତମାନ ଲାଗୁଛି ଯାହା କରିଛି, ତାହା ଠିକ୍ ଭାବ ତନ୍ତ୍ର କାମ କରିନାହିଁ । ଗଭର୍ଣ୍ଣରଙ୍କ ସ୍ତ୍ରୀ ହିସାବରେ ଓ ସରକାରୀ ବାସ ଭବନର ଗୃହ କର୍ତ୍ତୀର ପଦମର୍ଯ୍ୟାଦାରେ ଅଧିଷ୍ଠିତ ହୋଇ ମୋର ଯାହା କରିବାର କଥା ସେ ସମସ୍ତହିଁ

ସମର୍ଥନ କରିଥିଲି । କିନ୍ତୁ ସରକାରୀ କାର୍ଯ୍ୟକ୍ରମ ବାହାରେ ମୁଁ ସତ୍ୟକାର ବନ୍ଧୁତ୍ୱ କରିବାର ଅବକାଶ ପାଇନାହିଁ ବା ଆଲବାନିର ଜନସାଧାରଣଙ୍କ ସହିତ ସୁପରିଚିତ ହୋଇ ପାରି ନାହିଁ ।

ମୋ ସ୍ୱାମୀ ପାଣି ଉପରେ ରହିବାକୁ ଭଲ ପାଉଥିଲେ । ସେ ଦେଖିଲେ, ନିଉଇୟର୍କ ସରକାରଙ୍କର ଖଣ୍ଡିଏ ଗ୍ରେଟ ପାଣି ବୋଟ ଥାଏ । ସେ ଖଣ୍ଡିକ ସରକାରୀ କର୍ମଚାରୀଗଣ ଜୋଡ଼ ଓ କେନାଲ ପରିଭ୍ରମଣ କରିବା ସମୟରେ ବ୍ୟବହାର କରୁଥିଲେ ମାତ୍ର ।

ସେ ନିଜେ ଏହି ବୋଟ ଖଣ୍ଡିକୁ ଏହି ବ୍ୟାପାରରେ ବ୍ୟବହାର କରିବେ ବୋଲି ଠିକ୍ କରନ୍ତି । ଏହି ନୌକା ଭ୍ରମଣ ବ୍ୟାପାରରେ ତାଙ୍କ ପକ୍ଷରେ ବିଶ୍ରାମ ଗ୍ରହଣ କରିବା କାମ ହେଉଥିଲା । ମଝିରେ ମଝିରେ ପିଲା ପିଲିଙ୍କ ଭିତରୁ କାହାରିକୁ ହେଲେ ନେଇ ଯାଉ । ସରକାରୀ ମଟର ବରାବର ଆମ ସାଙ୍ଗରେ ଥାଏ, ଆମ୍ଭରି ପେଲିସ ମଧ୍ୟ ସାଙ୍ଗରେ ରହନ୍ତି । ଦିନବେଳେ ବୋଟରୁ ଓହ୍ଲାଇ ରାଷ୍ଟ୍ରର ପ୍ରତିଷ୍ଠାନ ସମୂହ ପରିଦର୍ଶନ କରୁ । ମୋ ପକ୍ଷରେ ଏହାଥିଲା ଗୋଟିଏ ମୂଲ୍ୟବାନ ଶିକ୍ଷାର ବସ୍ତୁ । ମଝିରେ ମଝିରେ ରାଷ୍ଟ୍ରୀୟ ଜେଲସମୂହକୁ ଦେଖିବାକୁ ଯାଉ । ଅନ୍ୟ ମଧ୍ୟ ଯାଉଥିଲୁ ପାଗଳା ଗାରଦ ଓ ବିକଳାଙ୍ଗ ଶିଶୁମାନଙ୍କ ହସପାତାଳକୁ । କିନ୍ତୁ ଏହି ସବୁ ପ୍ରତିଷ୍ଠାନ ସମୂହ କିପରି ଭାବରେ ପରିଚାଳିତ ହୁଏ, ତାର ସୁବିଧା ଅସୁବିଧା କ'ଣ ସେ ସମ୍ବନ୍ଧରେ ଭଲ ଭାବରେ ଚିନ୍ତା କରି ଦେଖିନାହିଁ ।

ଆମେ ଯେଉଁସବୁ ପ୍ରତିଷ୍ଠାନକୁ ଯାଉ, ସେ ସବୁର କର୍ତ୍ତୃପକ୍ଷଗଣ ଗାଡ଼ିରେ ବୁଲି ବୁଲି କେଉଁ ଘର କେଉଁଠି ତିଆରି ହେବ, ସେ ସବୁ ଦେଖାନ୍ତି । ଏହି ଭାବରେ ଫ୍ରାଂକ୍ଲିନ୍ ପ୍ରତିଷ୍ଠାନର ବାହାରର ଦିଗ୍ ସମ୍ବନ୍ଧରେ ବ୍ୟକ୍ତିଗତ ଜ୍ଞାନ ଅର୍ଜନ କରିଥିଲେ । ପରେ, ଆଇନସଭାରେ ଏହି ବିଷୟର କାର୍ଯ୍ୟକାରୀ ସମିତି କାର୍ଯ୍ୟରେ ତାଙ୍କର ଏହି ଅଭିଜ୍ଞତା ସାହାଯ୍ୟ କରିଥିଲା ।

ଚାଲିବା ତାଙ୍କ ପକ୍ଷରେ ଦୁଷ୍କର ଥିଲା ବୋଲି ସେ କୌଣସି ପ୍ରତିଷ୍ଠାନ ଭିତରକୁ ଯାଇ ପାରୁ ନଥିଲେ । ସେଇଥିପାଇଁ କିପରି ଭାବରେ ପ୍ରତିଷ୍ଠାନ

ଚଳେ, ରୋଗୀର ସଂଖ୍ୟା କେତେ, କର୍ମଚାରୀ କେଇଜଣ, ଶିକ୍ଷା ବ୍ୟବସ୍ଥା କି ଭଳି, ଏ ସବୁ ସମ୍ବନ୍ଧରେ ସଠିକ୍ ଧାରଣା ସେ କରି ପାରନ୍ତି ନାହିଁ । ଏ ସବୁ ତତ୍ତ୍ୱାବଧାନର ଭାର ମୋ ଉପରେ ଥିଲା । କିନ୍ତୁ ପ୍ରଥମେ ମୋର ବିବରଣ ତାଙ୍କ ପାଖରେ ଅତ୍ୟନ୍ତ ଅସନ୍ତୋଷ ଜନକ ହୋଇ ଉଠିଲା । ମୁଁ ଖୁବ୍ ସମ୍ଭବ ତାଙ୍କୁ କହୁଥିଲି "ସେ ଦିନକାର ଖାଦ୍ୟ ତାଲିକାରେ କଅଣ ଥିଲା ତାହାରି କଥା ।" ସେ ପଚାରୁଥିଲେ "ତୁମେ ଦେଖିଛ, ରୋଗୀଗଣ ପ୍ରକୃତ ପକ୍ଷରେ ଏ ସବୁ ଖାଦ୍ୟ ପାଉଛନ୍ତି କି ନାହିଁ ?" ମୁଁ ଅନୁସନ୍ଧାନ କରି ଶିଖିଲି । ଖାଦ୍ୟ ତାଲିକା ସାଙ୍ଗରେ ପାତ୍ର ଭିତରେ ଥିବା ଖାଦ୍ୟ ସବୁ ମିଳୁଛି କି ନା ? ସେ ସବୁ ଚିହ୍ନ ଚିହ୍ନ କରି ଦେଖା ହେଉଥିଲା । ଆହୁରି ମଧ୍ୟ ଅନୁସନ୍ଧାନ କରି ଶିଖିଲି ବିଛଣା ସବୁ ଲଗି ଲଗି ହୋଇ ରହୁଛି କି ନା ? ସେ ସବୁ ଭଙ୍ଗାହୋଇ କୋଠରୀରେ କମ୍ବା ଦରଜା ପାଖରେ ଦିନ ଓଲି ରଖା ହେଉଛି କି ନା ? ସେଥିରୁ ବେଶ୍ ଜଣାଯିବ ଯେ ସତରେ ବାରନ୍ଦାରେ ସେ ସବୁ ବିଗ୍ରି ହେବ । ରୋଗୀମାନଙ୍କର ପ୍ରତିଷ୍ଠାନର କର୍ମଚାରୀ ମାନଙ୍କ ପ୍ରତି କିପରି ମନୋଭାବ ସେ ବି ଜାଣିନେଲି । ଆଲବାନିରେ ରହିବା ସମୟର ଶେଷ ହେବା ଆଗରୁ ମୁଁ ରାଷ୍ଟ୍ର ପ୍ରତିଷ୍ଠାନ ସମୂହର ଜଣେ ଦକ୍ଷ ସମ୍ବାଦଦାତା ହୋଇ ଉଠେ ।

ମା, ଗଭର୍ଣ୍ଣରଙ୍କ ସ୍ତ୍ରୀ ଓ ଶିକ୍ଷୟିତ୍ରୀ ହିସାବରେ ଗୋଟିଏ କର୍ମବ୍ୟସ୍ତ ଜୀବନ ମଧ୍ୟରେ ବୁଡ଼ି ରହିଲି । ୧୯୩୦ ମସିହାର ନିର୍ବାଚନୀ ଅଭିଯାନ ଆଗରୁ ତାଙ୍କ ମଧ୍ୟରେ ଖୁବ୍ କମ୍ ବିରତି ହିଁ ଆସେ । ସେ ଗୋଟିଏ ସହଜ ଅଭିଯାନ । ମୋ ମନେହୁଏ ଫ୍ରାଙ୍କଲିନ୍ ତାଙ୍କର ସମସ୍ତ ସମର୍ଥକମାନଙ୍କୁ ଖୁସି କରି ଗଭର୍ଣ୍ଣର ନିର୍ବାଚନୀ ପ୍ରତିଯୋଗୀତାରେ ଡେମୋକ୍ରାଟିକମାନଙ୍କ ମଧ୍ୟରେ ସବୁଠୁ ବେଶୀ ଭୋଟ ପାଆନ୍ତି । ଏହି ଘଟଣାରେ ଦୁଇଟି ସୁବିଧା ହୁଏ । ଫ୍ରାଙ୍କଲିନ ଏଥିରେ ରାଜ୍ୟ ମଧ୍ୟରେ ଶକ୍ତିଶାଳୀ ହୋଇ ଉଠନ୍ତି ଏବଂ ପ୍ରେସିଡେଣ୍ଟ ପଦର ଭାବୀ ପଦ ପ୍ରାର୍ଥୀ ହିସାବରେ ତାଙ୍କ ଶକ୍ତିର ପରିଚୟ ମିଳେ । ଏହି ସମ୍ଭାବନା ପ୍ରତି ମୋର ସେପରି ଆକର୍ଷଣ ନଥିଲା ,

କିନ୍ତୁ ତାଙ୍କର ସମର୍ଥକମାନଙ୍କ ନିକଟରେ ଏହି ଜନ୍ୟ ବିଶେଷ ଉତ୍ସାହ ସୃଷ୍ଟି କରେ ।

ଫ୍ରାଂକ୍‌ଲିନ୍ ମୋତେ କେବେହେଲେ କହି ନାହାନ୍ତି ଯେ ସେ ପ୍ରେସିଡେଣ୍ଟ ପଦ ପ୍ରାର୍ଥୀ ହେବେ ବୋଲି ସିଦ୍ଧାନ୍ତ କରିଛନ୍ତି, କିନ୍ତୁ ଲୁଇସ୍ ହୋଉଙ୍କ ନିକଟରେ ଶୁଣିଛି, ଲୁଇସ୍ ଅନେକ ଆଗରୁ ଏହା ଠିକ୍ କରି ରଖିଥିଲେ ଏବଂ ତାହାର କ୍ଷେତ୍ର ମଧ୍ୟ ପ୍ରସ୍ତୁତ କରିଥିଲେ । ଲୁଇସ୍ ହୋ ହିଁ କନ୍‌ଭେନ୍‌ସନ୍ ଆଗରୁ ଅଭିଯାନର ସବୁ କିଛି ପ୍ରସ୍ତୁତ କରି ରଖିଥିଲେ । କୌଶଳଟିଓ ଲୋକ ନିର୍ବାଚନର ଭାର ବେଶୀ ଭାଗରେ ତାଙ୍କ ହାତରେ ଗ୍ରୁଡ଼ି ଦିଆହୁଏ । ସେ ଯଦିଓ ଅଭିଯାନ ସମ୍ପର୍କରେ ଫ୍ରାଂକ୍‌ଲିନ୍‌ଙ୍କ ସହିତ ଆଳାପ ଆଲୋଚନା କରନ୍ତି, ତଥାପି ସମସ୍ତ ଅଭିଯାନର ସେ ଥିଲେ ପ୍ରକୃତ ପୃଷ୍ଠପୋଷକ । ସେ ନିଜେ ଜାଣୁଥିଲେ, ତାଙ୍କର ଦୈହିକ କ୍ଷମତା ଓ ବାମନ ଚେହେରା ତାଙ୍କୁ ବହୁ ପରିମାଣରେ ଖର୍ବ କରି ଦେଇଛି । ସେଇଥିପାଇଁ ସେ ପଛରୁ ଆଗାମ ଧରିବାକୁ ଭଲ ପାଉଥିଲେ । ସେ କ୍ଷମତା ଭଲ ପାଉଥିଲେ, କିନ୍ତୁ ତାଙ୍କର ଯେ କ୍ଷମତା ଅଛି, ଏକଥା ଖୁବ୍ କମ୍ ଲୋକଙ୍କୁ ସେ ଜଣାଇବାକୁ ପ୍ରସ୍ତୁତ ଥିଲେ । ଗୋଟିଏ କଥାରେ କହିବାକୁ ଗଲେ ସେ ଅଜ୍ଞାତ ହୋଇ ରହିବାକୁ ଖୁବ୍ ପସନ୍ଦ କରୁଥିଲେ ।

ଫ୍ରାଂକ୍‌ଲିନ୍‌ଙ୍କ କର୍ମଜୀବନରେ ସେ କୌଣସି ଦିନହେଲେ ମୂଳ ଉଦ୍ଦେଶ୍ୟରୁ ବିଚ୍ୟୁତ ହୋଇ ନଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ସାଧାରଣ ପୁରୁଷ, ସ୍ତ୍ରୀଲୋକ ଓ ଶିଶୁଙ୍କ ଜୀବନରେ ଉନ୍ନତି । ସହସ୍ରାଧିକ ଉପାୟ ବ୍ୟବହୃତ ହୋଇଛି, ଫେରି ଆସିଛି ବାଧା ଓ ପରିବର୍ତ୍ତନ । କିନ୍ତୁ ସେ ଯାହା କିଛି କରିଛନ୍ତି, ଏହି ଉଦ୍ଦେଶ୍ୟହିଁ ଥିଲା ତାଙ୍କର କର୍ମପ୍ରେରଣା । ଏହି ଉଦ୍ଦେଶ୍ୟ ପାଇଁ ଶେଷରେ ନିଷେଧର ଶତ ପ୍ରଚେଷ୍ଟାସତ୍ତ୍ୱେ ଗୋଟିଏ ମହାଯୁଦ୍ଧରେ ଲିପ୍ତ ହେବାକୁ ପଡ଼ିଲା । କାରଣ, ଘଟଣାର ନିଷ୍ଠୁର ଗତି ଏହି ନିର୍ଦ୍ଦେଶହିଁ ଦେଲା ଯେ ଫାସିଷ୍ଟବାଦକୁ ପୃଥିବୀର ପୃଷ୍ଠରୁ ପୋଛି ଦେବାକୁ ହେଲେ ଯୁଦ୍ଧହିଁ ତାର ଏକମାତ୍ର ଉପାୟ । ଇହୁଦିମାନଙ୍କ ପ୍ରତି ନିର୍ଯାତନା

କେବଳ ମାତ୍ର ସୃଷ୍ଟି ହୋଇଛି । ଫାସିଷ୍ଟବାଦୀ ନେତାମାନଙ୍କ ବିରୁଦ୍ଧରେ ଯେଉଁମାନେ ଯିବେ, ସେମାନଙ୍କ ଉପରେହିଁ ଏହିପରି ନିର୍ଯ୍ୟାତନା ଚାଲିବ । ସାଧାରଣ ମନୁଷ୍ୟର ସମସ୍ତ ସ୍ୱାଧୀନତା ବିଲୀନ ହୋଇଯିବ ଓ ତା ସାଙ୍ଗେ ସାଙ୍ଗେ ହଜିଯିବେ ଫ୍ରାଂକ୍‌ଲିନ୍ ଓ ଅନ୍ୟାନ୍ୟ ଗଣତାନ୍ତ୍ରିକ ମନୁଷ୍ୟଗଣ ଯେଉଁ ନୀତିରେ ବିଶ୍ୱାସ କରନ୍ତି ସେହି ନୀତି ।

ଫ୍ରାଂକ୍‌ଲିନ୍ ସବୁବେଳେ ମନେ କରୁଥିଲେ ଯେ ରାଷ୍ଟ୍ରପତି ହେଉଛନ୍ତି ଏପରି ଗୋଟିଏ ଯନ୍ତ୍ର ଯାହାକୁ ଜନସାଧାରଣ ନିର୍ବାଚନ କରିଛନ୍ତି ସେମାନଙ୍କର ଆଦେଶ ପାଳନ କରିବା ପାଇଁ । ଆହୁରି ମଧ୍ୟ ଏକଥା ମନେ ରଖିବାକୁ ପଡ଼ିବ ଯେ ସେମାନଙ୍କୁ ଜ୍ଞାନ ଓ ନେତୃତ୍ୱ ଦେବା ତାଙ୍କର କର୍ତ୍ତବ୍ୟ । ମୋର ମନେହୁଏ, ବିରାଟ ସଙ୍କଟ ସମୟରେ ସେ ନିଜର ଶକ୍ତି ଓ ବୁଦ୍ଧି ଅପେକ୍ଷା ବଡ଼ ଗୋଟିଏ ଶକ୍ତି ଦ୍ୱାରା ପରିଚାଳିତ ହୁଥନ୍ତି । ତାଙ୍କର ଧର୍ମ୍ମ ବିଶ୍ୱାସ ଥିଲି ସହଜ ଓ ସରଳ ! ଫ୍ରାଂକ୍‌ଲିନ୍ ଜାଣୁଥିଲେ ନିଜକୁ ଖୁବ୍ ବଡ଼ ହିସାବରେ ଭାବିବାଟା ହେଲି ନିର୍ବୁଦ୍ଧିତାର ପରିଚାୟକ । ବ୍ୟକ୍ତି ହିସାବରେ ସେ ହେବେ ସବୁରି ଆଶା ଓ ଭରଷାର ସ୍ଥଳ ବୋଲି ଭାବିବାଟା ମଧ୍ୟ ତାଙ୍କ ପକ୍ଷରେ ଭୁଲ୍ ହେବ । ତଥାପି ତାଙ୍କରି ଉପରେ ଚୂଡ଼ାନ୍ତ ସିଦ୍ଧାନ୍ତର ଭାର ପଡ଼ିଲା । କୌଣସି ବ୍ୟାପାରରେ ସେଇଥିପାଇଁ ଆଧ୍ୟାତ୍ମିକ ନିର୍ଦ୍ଦେଶର ବିଶ୍ୱାସ ବ୍ୟତୀତ ତାଙ୍କ ପକ୍ଷରେ ସିଦ୍ଧାନ୍ତ କରିବା ଖୁବ୍ ଅସମ୍ଭବ ହୋଇ ଉଠିଲା ।

ମନୁଷ୍ୟକୁ ନିରାପତ୍ତାରେ ବିଶ୍ୱାସ ରଖି ଗଢ଼ି ପାରେ ଏଭଳି ମନୁଷ୍ୟ ମୁଁ ଆଉ ଗୋଟିଏ ହେଲେ ଦେଖିବାକୁ ପାଇନାହିଁ । ତାହାର କାରଣ ହେଲି, ମୁଁ ତାଙ୍କୁ କେତେବେଳେ କହିବାର ଶୁଣିନାହିଁ ଯେ ସମସ୍ୟା ସମାଧାନ ମନୁଷ୍ୟର ସାଧ୍ୟାତୀତ ବୋଲି । ସେ ବାଧା ବିପତ୍ତି କଥା ସମସ୍ତ ସମୟରେ ଉଠାନ୍ତି ଓ ତାହାହିଁ କହନ୍ତି । ସେ ନିଜେ ଉତ୍ତର ଦେଇ ନ ପାରିଲେହେଁ, ଉତ୍ତର ଅଛି ବୋଲି ତାଙ୍କର ଦୃଢ଼ ବିଶ୍ୱାସ । କୌଣସିଠାରେ ଏପରି କେହି ଲୋକ ଅଛନ୍ତି ଯେ ଏହାର ଉତ୍ତର ଦେଇ ପାରିବେ ।

ଅଧିକନ୍ତୁ ଯେ ପର୍ଯ୍ୟନ୍ତ ଉତ୍ତର ନମିଳେ, ନିଜକୁ ଚେଷ୍ଟା କରିବାକୁ ହେବ ଓ ଅଥବା ଅନ୍ୟଠାରୁ ପାଇବାକୁ ହେବ । ସେ ଅନିଶ୍ଚୟର କଥା କେବେ କହୁ ନଥିଲେ । ଯେତେବେଳେ କୌଣସି ପରିକଳ୍ପନା କରୁଥିଲେ, ସେ ବହୁ ଲୋକଙ୍କ ସଙ୍ଗରେ ପରାମର୍ଶ କରୁଥିଲେ । ଯେତେଦୂର ସମ୍ଭବ ସୁପରାମର୍ଶ ହିଁ ନେଉଥିଲେ, କିନ୍ତୁ ଥରେ ସିଦ୍ଧାନ୍ତ କରି ସାରିଲା ପରେ ସେ ଉତ୍କଣ୍ଠିତ ହୋଇ କାଳାତିପାତ କରୁ ନ ଥିଲେ । ଏହା ହିଁ ଥିଲା ଫ୍ରାଙ୍କ୍ଲିନ୍‌ଙ୍କ ଚରିତ୍ରର ବୈଶିଷ୍ଟ୍ୟ ।

ମୁଁ ତାଙ୍କୁ କେବେହେଲେ ଭୀତ ଓ ତ୍ରସ୍ତ ହୋଇ କୌଣସି ସମସ୍ୟାର ସମ୍ମୁଖୀନ ହେବାର ଦେଖି ନାହିଁ । ମୋର ମନେ ହୁଏ, ସେହି ସାହସ କ'ଣ ତାଙ୍କ ଦେଶବାସୀଙ୍କ ମନ ମଧ୍ୟରେ ସଞ୍ଚାରିତ ହୋଇନାହିଁ । ହୁଏତଃ ଏହି ସାହସ ହିଁ ତାଙ୍କର ପ୍ରଥମ ପ୍ରେସିଡେଣ୍ଟ ପଦରେ ଅଧିଷ୍ଠିତ ଥିବା ବର୍ଷ ସମୂହରେ, ତାଙ୍କୁ ବହୁ କ୍ଷେତ୍ରରେ ବିପଦମୁକ୍ତ ହେବାରେ ସହାୟତା କରିଥିଲା । ସେ ବେଶ୍ ଜାଣୁଥିଲେ ପୃଥିବୀର ସର୍ବଶ୍ରେଷ୍ଠ ନୀତି ଦ୍ୱାରା ତାଙ୍କ ସଙ୍କଟ ମୁକ୍ତ କରାଯାଇ ପାରିବ ନାହିଁ, ଯଦି ସେ ଏହି ନୀତିକୁ କାର୍ଯ୍ୟକାରୀ ନ କରନ୍ତି । ସେ ସେମାନଙ୍କର ସାହସ ଓ କର୍ମଦକ୍ଷତାରେ ବିଶ୍ୱାସ କରୁଥିଲେ । ସେଇଥିପାଇଁ ସେମାନଙ୍କ ଠାରୁ ସମର୍ଥନ ମଧ୍ୟ ସେ ପାଇଥିଲେ ।

ଆନନ୍ଦ ଉପଭୋଗ କରିବାର କ୍ଷମତା ଓ ଦୂରୁହ ବିଷୟ ଭାବି ସ୍ଥିର କରିବା ପରେ ସେ ଗୁଡ଼ିକୁ ଯେବେ ଲଘୁ ଭାବରେ ଗ୍ରହଣ କରାନହୁଏ, ତା ହେଲେ ମୋ ମନେହୁଏ କୌଣସି ଲୋକ ବେଶୀ ଦିନ ରାଷ୍ଟ୍ରପତିର କାମ ତୁଲାଇ ପାରିବେ ନାହିଁ । ଗୁରୁ ଦାୟିତ୍ୱ ପାଳନ କରିବା ପାଇଁ ଆବଶ୍ୟକ ହୁଏ ବହୁ ଲୋକଙ୍କର ଏକତ୍ର ସମାବେଶ । ଦାୟିତ୍ୱ ସମ୍ବନ୍ଧରେ ଯେପରି ସଚେତନ ହେବାକୁ ହେବ, ଜୀବନକୁ ସେହିପରି ଉପଭୋଗ ମଧ୍ୟ କରିବାକୁ ହେବ । ସଙ୍କଟ ସମୟରେ ଜାତୀୟ ନେତା ମାନଙ୍କ ମଧ୍ୟରେ ଏଭଳି ବିଭିନ୍ନ ଗୁଣର ସମନ୍ୱୟ ଏକାନ୍ତ ଆବଶ୍ୟକ । ବ୍ୟକ୍ତିଗତ ଭାବରେ ମୋ ସ୍ୱାମୀ ପ୍ରେସିଡେଣ୍ଟ ହୁଅନ୍ତୁ, ସେ କଥା ମୁଁ କାମନା କରିନାହିଁ । ତଥାପି

ଏହା ମଧ୍ୟ ମୁଁ ବୁଝିଥିଲି ଯେଉଁ ଲୋକ ଜନସାଧାରଣଙ୍କର କାମ କରିବାକୁ ଚାହାନ୍ତି, ସେ ଲୋକ ଯଦି ପ୍ରକୃତ କାର୍ଯ୍ୟୋପଯୋଗୀ ହୋଇଥାନ୍ତି, ତାଙ୍କୁ ସେଥିରୁ ବିରତ କରିବା ଏକାବେଳକେ ଅସମ୍ଭବ । ଏ ମୋର ସ୍ୱାର୍ଥପରତା ଛଡ଼ା ଆଉ କିଛି ନୁହେଁ । ଏ ସମ୍ବନ୍ଧରେ ମୋର ପ୍ରାଣର କଥା ତାଙ୍କୁ ଜଣାଇ ନାହିଁ । ମୁଁ ଅଭିଯାନରେ ନିଜେ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହୋଇନାହିଁ । ମୁଁ ଜାଣିଥିଲି ମୋଠାରୁ ଭଲ କାମ ଆଉ ସମସ୍ତେ କରିବେ । ହେଲେ ମୁଁ ଅଭିଯାନରେ ତାଙ୍କ ସାଙ୍ଗରେ ବାହାରେ ଓ ଫ୍ରାଙ୍କଲିନ୍‌ଙ୍କର ଯେଉଁଥିରେ ସାହାଯ୍ୟ ହୁଏ, ଏଭଳି କାମ କରୁଥିଲି । ମୋର ସବୁବେଳେ ମନେ ହେଉଥିଲି ଫ୍ରାଙ୍କ୍‌ଲିନ୍‌ଙ୍କ ଆତ୍ମ ବିଶ୍ୱାସ ମୂଳରେ ରହିଛି ତାଙ୍କର ଧର୍ମ ବିଶ୍ୱାସ । ଆଗରୁ କହି ରଖିଛି, ତାଙ୍କର ଧର୍ମ୍ମ ବିଶ୍ୱାସ ଥିଲି ସହଜ । ସେ ଭଗବାନ ଓ ତାଙ୍କର ପଥନିର୍ଦ୍ଦେଶ ବିଶ୍ୱାସ କରୁଥିଲେ । ତାଙ୍କର ବିଶ୍ୱାସ ଥିଲି ମନୁଷ୍ୟକୁ କାମ କରିବା ପାଇଁ ଶକ୍ତି ଓ କ୍ଷମତା ଦିଆହୋଇଛି । ସେ ଶକ୍ତି ଓ ନିର୍ଦ୍ଦେଶ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବ । ତାହାର ଫଳରେ ତାଙ୍କର ନିଜର ବିଚାର ବୁଦ୍ଧି ପ୍ରତି ବିଶ୍ୱାସୀ ହେବ । ଅଭିଷେକ ଦିବସରେ ହେଉ, ସମାବର୍ତ୍ତନ ଉତ୍ସବରେ ହେଉ, ଆସନ୍ନ ସଙ୍କଟରେ ହେଉ, ସେ ଗୀର୍ଜ୍ଜାରେ ଉପାସନା ପାଇଁ ଧରାଧରି କରୁଥିଲେ । ଏହିଠାରେହିଁ ଥିଲା ତାଙ୍କର ଧର୍ମ୍ମ ବିଶ୍ୱାସର ମୁକ୍ତ ପ୍ରକାଶ । ମୁଁ ମନେକରେ, ଦାୟିତ୍ୱ ସ୍ୱୀକାର ଓ ବିପଦ ସମୟରେ ନିଜ କ୍ଷମତା ପ୍ରତି ତାଙ୍କର ବିଶ୍ୱାସ ସମ୍ବନ୍ଧରେ ବିଶ୍ଳେଷଣ କରି ଦେଖିଲେ, ଏ କଥାଟି ଭୁଲିଗଲେ ଚଳିବ ନାହିଁ ।

ମୋହର ସ୍ୱାମୀଙ୍କ ମନୋନୀତ ହେବା ଆଗଦିନ ରାତିରେ ଆମେ ସବୁ ସରକାରୀ ଦପ୍ତରଖାନାରେ ଭୋର ପର୍ଯ୍ୟନ୍ତ ବସିଥିଲୁ । ଖବର କାଗଜ ଜନଗଣ ସାରାରାତି ବାରଣ୍ଡାରେ କଟାଇ ଦେଲେ । ଭୋର ସମୟରେ ବାହାରକୁ ଆସି ସେତେବେଳେ ବି ସେମାନଙ୍କୁ ସେଠାରେ ଦେଖି ମୁଁ ବାରଣ୍ଡାରେ ପ୍ରାତଃଭୋଜନ କରିବା ପାଇଁ ନିମନ୍ତ୍ରଣ କରେ । ମୁଁ ଜାଣିଥିଲି ସେମାନେ ଗତ ରାତିରେ ଅନାହାରରେ ଅଛନ୍ତି । ରାତି ଅଧରେ ଯେଉଁ ଡ଼ିମ୍ବ

ଗ୍ରହିଥିଲି, ତାହାଛଡ଼ା ସେମାନେ ଆହୁକଛି ଖାଇ ନାହାନ୍ତି । ଦୁଇଦିନ ପରେ ମୋ ସ୍ୱାମୀ, ଜନ୍ ଏଲ୍ଏଟ୍ ଓ ମୁଁ ବିମାନରେ ଚିକାଗୋକୁ ଯାଉଁ । ସେଠାରେ ଫ୍ରାଙ୍କଲିନଙ୍କୁ ଶପଥ ଗ୍ରହଣ କରିବାକୁ ହେବ ।

ସେପ୍ଟେମ୍ବର ମାସରେ ଫ୍ରାଙ୍କଲିନ୍ ଗୋଟିଏ ଦୀର୍ଘ ଅଭିଯାନରେ ବାହାରନ୍ତି । ପିଲାପିଲିଙ୍କ ମଧ୍ୟରୁ କେହି କେହି ତାଙ୍କ ସାଙ୍ଗରେ ଯାଆନ୍ତି । ଫେରିବା ବାଟରେ ଆରିଜୋନାର ଉଇଲିଆମସ୍‌ରେ ପହଞ୍ଚିବା ଆଗରୁ ମୁଁ ତାଙ୍କସଙ୍ଗରେ ଯୋଗଦେଇ ପାରିନାହିଁ । ଏହାମଧ୍ୟ ଭଲଯେ ପିଲାପିଲିଙ୍କ ଭିତରୁ ଜଣେ ତାଙ୍କ ସାଙ୍ଗରେ ସବୁବେଳେ ଥାଆନ୍ତି । କାରଣ, ସେ ବାଟରେ ରହୁଥିଲେ ତାଙ୍କ ପରିବାରଙ୍କ ଭିତରୁ ଯେ କୌଣସି ଲୋକ ତାଙ୍କ ସଙ୍ଗରେ ରହୁ । ସେମାନେ କେବଳ ଗାଡ଼ିରେ ଲୋକମାନଙ୍କୁ ଅଭ୍ୟର୍ଥନା କରିବାରେ ସାହାଯ୍ୟ କରୁଥିଲେ ଏମନ୍ତ ନୁହେଁ, ପ୍ରଚୁର ଆମୋଦ ଉପଭୋଗ କରିବାର ସୁବିଧା ମଧ୍ୟ ଦେଉଥିଲେ । ହାସ୍ୟରସର କଥା ବାହାର ନକରି ନିଜର ହାସ୍ୟ ଖୋରାକ ସଂଗ୍ରହ କରିବା ତାଙ୍କର ମତ ଥିଲା ।

ଜନସାଧାରଣଙ୍କ ସହିତ ସବୁବେଳେ ମିଶି ସେ ଆନନ୍ଦିତ ହେଉଥିଲେ । ଏପରି ଆନନ୍ଦ ଯେନ୍ତ ସେ ୧୯୩୨ ମସିହା ଅଭିଯାନରୁ ଘରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଏହି ଆତ୍ମ ବିଶ୍ୱାସ ନେଇ ଫେରନ୍ତି ଯେ ସଙ୍କଟକୁ ପରାଜୟ କରିବାକୁହିଁ ହେବ । ତାଙ୍କରଥିଲା ଅସାଧାରଣ ସୂକ୍ଷ୍ମ ପର୍ଯ୍ୟବେକ୍ଷଣର କ୍ଷମତା ଆଉ ଦେଶର ଯେଉଁ ସମସ୍ତ ଅଞ୍ଚଳରେ ସେ ଭ୍ରମଣ କରନ୍ତି, ସେ ସବୁଦେଖି ସେଠାକାର ଅବସ୍ଥା ସବୁ ବୁଝି ପାରୁଥିଲେ । ତାଙ୍କ ପାଖରୁ ମୁଁ ଶିଖିଲି କିପରି ଭାବରେ ଗାଡ଼ିର ଗବାକ୍ଷ ଦେଇ ଦେଖିବାକୁ ହୁଏ । ସେ ଶସ୍ୟ କିପରି ହୋଇଛି, ମନୁଷ୍ୟର ପୋଷାକ ପରିଚ୍ଛଦ, ରୀତି, ନୀତି କିପରି, ଅଞ୍ଚଳରେ କେତେଖଣ୍ଡି ଗାଡ଼ି ଅଛି, ସେ ସବୁର ଅବସ୍ଥା କିପରି—ଏପରିକି ଦୌଡ଼ିରେ ଟଙ୍ଗା ହୋଇଥିବା ପୋଷାକ ଗୁଡ଼ିକ ମଧ୍ୟ ବାଦ୍ ପଡ଼ୁ ନଥିଲା । ସି, ସି, ସି, ଯେତେବେଳେ ପ୍ରତିଷ୍ଠିତ ହେଲା, ସେ ଜାଣିଥିଲେ ଯଦି କୌଣସି ସ୍ଥାନରେ କାର୍ଯ୍ୟ କରିବାର

ଆବଶ୍ୟକତା ହୋଇ ପଡୁଥିଲା, ତାହାର ନୋଟ ସେ ରଖୁ ନଥିଲେ । ଫ୍ରାଙ୍କଲିନ୍ ଭୌଗଳିକ ସଂସ୍ଥା ସମୂହକୁ ଭଲ ଭାବରେ ଜାଣିଥିଲେ । ଗୋଟିଏ ଉଦାହରଣ ଦିଏ, ବହୁ ବର୍ଷ ପରେ ପ୍ରଧାନମନ୍ତ୍ରୀ ପିଟର ଫ୍ରେଜର ମୋତେ କହିଥିଲେ, ନିଉଜିଲାଣ୍ଡ ନିକଟରେ ଗୋଟିଏ ଶ୍ରେଷ୍ଠ ଦ୍ୱୀପ ସମ୍ବନ୍ଧରେ କଥା କହିବାକୁ ସେ ଫ୍ରାଙ୍କଲିନ୍‌ଙ୍କ ପାଖକୁ ଯାଆନ୍ତି । ତାଙ୍କର ସେତେବେଳେ ମନେ ହୁଏ ଯେ ଦ୍ୱୀପଟି ସାମରିକ ଉଦ୍ଦେଶ୍ୟରେ ବ୍ୟବହାର କରିଯାଇ ପାରେ । ମୁହୂର୍ତ୍ତିକ ପାଇଁ ଫ୍ରାଙ୍କଲିନ୍ ବିଭ୍ରାନ୍ତ ହୋଇ ପଡ଼ିଲେ ।

ପରେ ତାଙ୍କ ମୁଖମଣ୍ଡଳରୁ ବିଷାଦ ରେଖା ଘୁଞ୍ଚିଗଲା । ସେ କହିଲେ "ହଁ, ହଁ ।" କିନ୍ତୁ ମୋର ମନେ ହୁଏ ସେହି ସବୁ ନିର୍ଦ୍ଦିଷ୍ଟ ଦ୍ୱୀପରେ ହେଲେ ତାଠାରୁ ଖୁବ୍ ଭଲ ହୁଏ । ମିଷ୍ଟର ଫ୍ରେଜର ଅବନମିତ ହୋଇପଡ଼ନ୍ତି ଓ ସେହି ଦ୍ୱୀପ ଦୁଇଟିର ସନ୍ଧାନ କରିବାକୁ ଲାଗନ୍ତି ।

୧୯୩୬ ମସିହାର ଅଭିଯାନ ଭ୍ରମଣ ସମୟରେ ସେ ଆମ୍ଭମାନଙ୍କର ପତିତ ଜମି, ରକ୍ଷାର ଅଭାବ ଓ ଉତ୍ପାଦିକା ଶକ୍ତିର ହ୍ରାସ ଦେଖି ଅଭିଭୂତ ହୋଇ ପଡ଼ନ୍ତି । ସେ ଯାହା ଦେଖିଥିଲେ ତାହାର ଉପରେ ଭିତ୍ତି କରି ନିଜ କାର୍ଯ୍ୟର ଖସଡ଼ା ପ୍ରସ୍ତୁତ କରନ୍ତି । ଯେଉଁ ଜିନିଷଟି ତାଙ୍କର ସବୁଠାରୁ ବଳି ବଡ଼ ମନେ ହେଉଥିଲା, ତାହା ହେଉଛି ଜନସାଧାରଣଙ୍କର ଶକ୍ତିକୁ ପୁନର୍ଜାଗରିତ କରିବା । ମୋର ମନେ ହୁଏ, ଜନସାଧାରଣଙ୍କ ଉପରେ ତାଙ୍କର ବିଶ୍ୱାସ ଥିଲା ବୋଲି ପ୍ରଥମ ଉଦ୍‌ବୋଧନୀ ବକ୍ତୃତାର ପ୍ରଥମ କଥାଟି ବାହାରି ପଡ଼ିଲା "ଆମ୍ଭମାନଙ୍କର କେବଳ ଭୟକୁ ଭୟ କରିବାକୁ ହେବ ।" ତାଙ୍କର ସ୍ୱର ବେତାରରେ ସୁସ୍ପଷ୍ଟ ଭାବରେ ଶୁଣା ଯାଉଥିଲା । ଏ ତାଙ୍କର ସ୍ୱାଭାବିକ କ୍ଷମତା, କାରଣ ଜୀବନରେ ସେ କେବେ ହେଲେ ବକ୍ତୃତା ଭୂମିକାରେ ଅବତରଣ କରି ନଥିଲେ । ସେ ସ୍କୁଲ ବିତର୍କ ସଭାରେ ଯୋଗ ଦେଉଥିଲେ । ବାଲ୍ୟାବସ୍ଥାରେ ସାମାନ୍ୟ ସଙ୍ଗୀତ ଚର୍ଚ୍ଚା କରୁଥିଲେ । କଲେଜରେ ପଢ଼ିବା ବେଳେ ସେ ଗୀତ ଗାଇବାକୁ ଖୁବ୍ ଭଲ ପାଉଥିଲେ । ଏହାହିଁ ଥିଲା ତାଙ୍କ କଣ୍ଠସ୍ୱରର ଶିକ୍ଷା ସମ୍ବନ୍ଧୀୟ ପରିଧି । ଏହି କଣ୍ଠ ସ୍ୱରର

ସାହାଯ୍ୟରେ ତାଙ୍କର ଶାସନ କାଳରେ ସେ ଦେଶ ଲୋକଙ୍କୁ ବୁଝାଇ ଦେଇଥିଲେ ଯେ ସେମାନେ ସରକାରଙ୍କ ପ୍ରତି କାର୍ଯ୍ୟରେ ବୁଦ୍ଧିମାନ ଓ ସଚେତନ ଅଂଶୀଦାର ।

ନିର୍ବାଚନ ଦିନ ଆମେ ସବୁ ନିଉୟର୍କ ସହରରେ ଥିଲୁ । ମୋ ସ୍ୱାମୀ ପାଇଁ ଆନନ୍ଦହିଁ ହେଲା । ସେ ଶୈଶବରେ ପକ୍ଷାଘାତାକ୍ରାନ୍ତ ହୋଇଥିଲେହେଁ ଭାଗ୍ୟଦେବୀ ସୁପ୍ରସନ୍ନ ହୋଇ ନାନା ଉପାୟରେ ତାଙ୍କର ଭବିଷ୍ୟତ ଜୀବନରେ ତାହାର କ୍ଷତିପୂରଣ କରିଥିଲେ । ତାଙ୍କର କ୍ଷମତାରେ ମୋର ଦୃଢ଼ ବିଶ୍ୱାସ ଥିଲା ଯେ ସେ ଦେଶକୁ ସଙ୍କଟରେ ସାହାଯ୍ୟ କରି ପାରିବେ । ସେଇଥି ପାଇଁ ସ୍ୱଭାବତଃ ନିଜର ମଙ୍ଗଳ କାମନା କରୁଥିଲେ କାରଣ, ତଦ୍ୱାରା ସେ ଦେଶବାସୀଙ୍କୁ ସେବା କରିବାର ପୂର୍ଣ୍ଣ ସୁଯୋଗ ପାଇବେ ।

କିନ୍ତୁ ମୋ ନିଜ କଥା କହିପାରେ, ମୁଁ ଖୁବ୍ ବିଚଳିତ ହୋଇ ପଡ଼ିଲି । ମୁଁ ବୁଝିପାରିଲି ମୋର ବ୍ୟକ୍ତିଗତ ଜୀବନର ପରିସମାପ୍ତି ଏହିଠାରେ । ମୁଁ ଜାଣିଥିଲି ମୋ ସମ୍ମୁଖରେ ଚିରାଚରିତ ନିୟମ ଅନୁଯାୟୀ କ'ଣ ରହିଛି । ମୁଁ ମିସେସ୍ ଥିଓଡୋର ରୁଜ୍‌ଭେଲ୍‌ଟଙ୍କୁ ଦେଖିଛି । ପ୍ରେସିଡେଣ୍ଟଙ୍କ ସ୍ତ୍ରୀ ହେବାର କ୍ଷମତା ଯେ କ'ଣ ତାହା ମୁଁ ଜାଣେ । ସେଇଥି ଯୋଗୁ ମୁଁ ଏକଥା କହିପାରିବି ନାହିଁ ଯେ ସମ୍ଭାବନାରେ ଖୁବ୍ ଆନନ୍ଦ ପାଇନାହିଁ ବୋଲି । ନିଜେ ରୋଜଗାର କରି ମୁଁ କିଛିଦିନ ଆର୍ଥିକ ସ୍ୱାଧୀନତା ଉପଭୋଗ କରିଥିଲି । ମୋର ବ୍ୟକ୍ତିଗତ କାମ ମୁଁ କରୁଥିଲି । ସେଦିନ ମୋ ମନରେ ପ୍ରଚଣ୍ଡ ଆନନ୍ଦ ବିକ୍ଷୋଭ ଦେଖାଦେଇଥିଲା । ପରେ କେଇମାସ ଧରି ମୁଁ ସ୍ପଷ୍ଟ ଭାବରେ ବୁଝି ପାରିଲି ନାହିଁ ଯେ ମୋର ଭବିଷ୍ୟତ ପନ୍ଥା କ'ଣ ହେବ ।

ଜୀବନରେ ଦେଖି ଦେଖି ପରିବର୍ତ୍ତନ ଆସିଗଲା । ସ୍ୱାମୀର ନିର୍ବାଚନ ହେବା ସାଙ୍ଗେ ସାଙ୍ଗେ ଗୋଇନ୍ଦା ବିଭାଗ ତାଙ୍କ ରକ୍ଷଣାବେକ୍ଷଣର ଦାୟିତ୍ୱ ନିଅନ୍ତି । ୬୫ ଷ୍ଟ୍ରୀଟ୍‌ରେ ଆମ ଘର ଗୋଏନ୍ଦା ବିଭାଗ କର୍ମଚାରୀଙ୍କ ଦ୍ୱାରା ଭରପୂର ହୋଇ ଉଠିଲା । ଫ୍ରାଙ୍କ୍‌ଲିନ୍ ଘରେ ଥିଲାବେଳେ, ବିଶେଷ କରି

ଅତିଥିମାନଙ୍କୁ ବିଶେଷ ଭାବରେ ପରୀକ୍ଷା ଓ ସନାକ୍ତ କରା ହେଉଥିଲା । ଶୀତ ଶେଷକୁ ମୁଁ ମିସେସ୍ ହୁଭରଙ୍କ ସହିତ ଦେଖାକରି ଠିକ୍ କଲି କପରି ଭାବରେ ସେଠାକୁ ଉଠି ମୁଁ ଘର ସମୂହ ବ୍ୟବହାର କରିବି । ସେ ମୋତେ ନିଜେ ଘର ସମୂହ ଦେଖାଇଲେ । ଯେତେବେଳେ ଶୋଷେଇଘର ଦେଖିବାକୁ ଗଲୁଁ, ସେ ସେତେବେଳେ ସ୍ୱସ୍ତିର ନିଶ୍ୱାସ ପକାଇ ମୋତେ ଗୃହର ପରିଚାରିକା ଓ ଆଇକ୍ ହୁଭରଙ୍କ ହାତରେ ସମର୍ପଣ କରିଦିଅନ୍ତି । ଆଇକ୍ ହୁଭର ଥିଲେ ହ୍ୱାଇଟ୍ ହାଉସର ସେବା ଦରୋସ୍ଥାନ୍ । ତାକୁ ମୁଁ ପ୍ରେସିଡେଣ୍ଟ ଥିଓଡୋର ରୁଜ୍‌ଭେଲ୍‌ଟଙ୍କ ସମୟ ଠାରୁ ଚିହ୍ନିଥିଲି । ଅଭିଷେକ ଉତ୍ସବ ସମ୍ପର୍କରେ ସେ ମୋ ସାଙ୍ଗରେ କଥା କହିବାକୁ ଲାଗିଲା । ମୋର ସେ ଦିନର କଥା ସ୍ପଷ୍ଟ ମନେ ଅଛି । ଲଫାଏତ ସ୍କୋୟାରର ଭିତର ଦେଇ ମୁଁ ଆସି ଟାଉ ଟାଉ ପହଞ୍ଚେ । ବିଳମ୍ବ ହୋଇଯିବ ବୋଲି ମନେ ମନେ ଆଶଙ୍କା କରିଥିଲି । ତାପରେ ହ୍ୱାଇଟ୍ ହାଉସର ଗାଡ଼ିବାରଣ୍ଡାରେ ଯେତେବେଳେ ଆସି ଠିଆହୁଏ, ସେତେବେଳେବି ଗ୍ରୀଡ ମୋର ଧୂଳିକୁ ଥାଏ । ମୋର ମନେପଡ଼ିଲା ସେଦିନର କଥା, ଯେତେବେଳେ ମୋ ସ୍ୱାମୀ ନୌ ବହରର ସରକାରୀ ଦପ୍ତରରେ ଥିଲେ । ମୁଁ କେତେଥର ସେତେ-ବେଳେ ହ୍ୱାଇଟ ହାଉସ ପାଖଦେଇ ଗାଡ଼ି ଚଳାଇ ଯାଇଛି ଓ ମନରେ ହେଉଥିଲା ଏଠାରେ ବାସକରି ପାରିଲେ କେତେ ଭଲ ହୁଅନ୍ତା । ଏବେ ମୁଁ ତ ଏଠିକି ବାସ କରିବାକୁ ଆସିଛି । ହେଲେ କ'ଣ ହେବ, ଆଉ ତ ସେଭଳି ଏ ସ୍ଥାନ ମନୋରମ ବୋଲି ମନେ ହେଉନାହିଁ ।

ମୋର ସେତେବେଳେ ଜଣା ନଥିଲା ଯେ ଏତେ ଚିଠିପତ୍ର ପାଇବି, ଯେଉଁସବୁକୁ ଯଦି ଅନାଇ ହୋଇ ପଢ଼ିଲେ ଶେଷ ହେବ ନାହିଁ । ମନୁଷ୍ୟକୁ ସାହାଯ୍ୟ କରିବାର କ୍ଷମତା ମାନେ କ'ଣ ତା ବି ମୁଁ ଜାଣୁନଥିଲି । ଏହା ମଧ୍ୟ ବୁଝି ନାହିଁ ଯେ ବାଡ଼ି ଓ ବଗିଚାର ସୌନ୍ଦର୍ଯ୍ୟ, ସ୍ଥାନର ସମ୍ଭ୍ରାନ୍ତ ଓ ଶାନ୍ତ ପରିବେଶ ତାର ଅଧିବାସୀମାନଙ୍କ ଉପରେ କେତେ ସୁନ୍ଦର ପ୍ରଭାବ ଆଣି ପକାଏ । ଏତଦ୍‌ବ୍ୟତୀତ ପୃଥିବୀର ବିଶିଷ୍ଟ ନାରୀ ଓ ପୁରୁଷଙ୍କ ସାଙ୍ଗରେ

ଦେଖା ଓ ପରିଚିତ ହେବାର ସୁଯୋଗର କଥା ମଧ୍ୟ ସେ ଦିନ ମନେ ହୋଇ ନାହିଁ ।

୧୯୩୩ ମସିହାର ଅଭିଷେକ ଉତ୍ସବରେ ଯେଉଁ ମହାଶୟ ଚାଲିଯାଉଛନ୍ତି ବା ଯେଉଁଲୋକ ସେ ପଦରେ ଅଧିଷ୍ଠିତ ହେଉଛନ୍ତି ତାହା ଦେଶର ସମସ୍ତ ମନୁଷ୍ୟ ପକ୍ଷରେ ଲଘୁ ନୁହେଁ । ପ୍ରେସିଡେଣ୍ଟ ଉଭୟ ସଙ୍କଟ ମଧ୍ୟରେ ପଡ଼ିଥିଲେ । ମୋ ସ୍ୱାମୀ ପ୍ରାୟ ମିଷ୍ଟର ହୁଭରଙ୍କ ଗାଡ଼ିରେ ହ୍ୱାଇଟ ହାଉସରୁ କଂଗ୍ରେସକୁ ଯିବା ବେଳେ କଥାବାର୍ତ୍ତା କରନ୍ତି । ଫ୍ରାଙ୍କଲିନ ନୀରବ ସଙ୍ଗୀ ଜଣକ ସଙ୍ଗରେ ପ୍ରଫୁଲ୍ଲ ଚିତ୍ତରେ କଥା କହିବା ପାଇଁ ଚେଷ୍ଟା କରିଥିଲେ । ଜନତା ହର୍ଷଧ୍ୱନି କରୁଥାଏ, ମୋର ସ୍ୱାମୀ ଇଙ୍ଗିତରେ ସାଡ଼ା ଦେଉଥାନ୍ତି । ହଠାତ୍ ମନେ ପଡ଼ିଲା ନିକଟରେ ମିଷ୍ଟର ହୁଭର ଚୁପ କରି ବସିଥାନ୍ତି । ମୋ ସ୍ୱାମୀ ମନରେ ସେତେବେଳେ କେତେ ଆଶା । ଆହୁରି ମଧ୍ୟ ସେ ମନରେ ଭାବିବାକୁ ଲାଗିଲେ ତାଙ୍କ ପାଖରେ ଯେ ବସିଛନ୍ତି, ତାଙ୍କ ମନର ଅବସ୍ଥା ତ ସେପରି ହୋଇ ନପାରେ ।

୧୯୩୩ ମସିହା ମାର୍ଚ୍ଚ ତା ୪ ରିଖ ଦିନ ଅଭିଷେକ ହୁଏ । ସେ ସମୟରେ ଦେଶର ପରିସ୍ଥିତି ଥିଲା ଅନ୍ୟ ଧରଣର । ସେତେବେଳେ ସାମାଜିକ ଅନୁଷ୍ଠାନରେ ଖୁବ୍ ଅଳ୍ପ ସମୟ ଦିଆ ହେଉଥିଲା । ସାଙ୍ଗେ ସାଙ୍ଗେ ସ୍ୱାମୀ ମୋର ସଭା ଅହ୍ୱାନ କରନ୍ତି । ପ୍ରଥମରେ ବ୍ୟାଙ୍କର ଛୁଟି ହେଲା । ମୁଁ ଟିକିଏ ଉଦ୍‌ବିଗ୍ନ ହୋଇ ଉଠିଲି । ଆମେ ସେ ସମୟରେ ୨।୩ ଦିନ ପାଇଁ ମେ ଫ୍ଲାୱାର ହୋଟେଲରେ ଥିଲୁ । ମୋ ପାଖରେ ବେଶୀ ଟଙ୍କା କଉଡ଼ି ନଥିଲା । ମୁଁ ସ୍ୱାମୀଙ୍କୁ ଯାଇଁ କହିଲି, ଟଙ୍କା ଦରକାର ହେଲେ କ'ଣ କରିଯିବ । ପିଲାମାନଙ୍କ ଭିତରୁ ଅନେକ ହୁଏତ ଚାଲି ଯାଇଥିବେ । ସେ ହସି ହସି କହିଲେ "ଯାହା ଦରକାର, ତାହା ଚଲାଇ ନେବାକୁ ହେବ ।" ମୁଁ ଏଥର ବୁଝି ପାରିଲି । ଏପରି କେତେ ନୁଡ଼ିଏ ଜିନିଷ ଅଛି, ଯାହା ନେଇ ହ୍ୱାଇଟ ହାଉସରେ କୌଣସି ଲୋକ କେବେ ହେଲେ ଭାବି ନାହିଁ ।

ପ୍ରଥମ ପ୍ରଥମ ସ୍ୱାମୀ ଦେଶର ଆର୍ଥିକ ସଙ୍କଟ ଦୂର କରିବାର ନାନା ଉପାୟ ଉଦ୍ଭାବନରେ ବ୍ୟସ୍ତ ରହନ୍ତି । ଅନ୍ୟ କିଛି ଭାବିବାର ସମୟ ପାଉ ନଥିଲେ । ସେଇଥିପାଇଁ ଗୃହସ୍ଥଳିର ବ୍ୟବସ୍ଥା ଓ ପ୍ରେସିଡେଣ୍ଟଙ୍କ ପତ୍ନୀଙ୍କୁ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଯେଉଁ ଅଫିସ ଅଛି, ତାର ନିୟନ୍ତ୍ରଣର ଭାର ମୋତେ ନେବାକୁ ପଡ଼ିଥିଲା । ଅଜ୍ଞାତସାରେ ଏପରି ସବୁ କାମକରି ପକାଇଲି ଯଦ୍ୱାରା ଦରେୟାନଗଣ ଶିହରି ପଡ଼ିଲେ । ମୋର ପ୍ରଥମ କାମ ହେଲା ଦରଓ୍ୟାନ ମାନଙ୍କ ଭରସାରେ ନ ରହି ନିଜର ଲିଫ୍ଟ ନିଜେ ଚଲାଇବା । ପ୍ରେସିଡେଣ୍ଟଙ୍କ ସ୍ତ୍ରୀ ଏପରି କାମ କ'ଣ କେବେ କରିଛନ୍ତି ।

ଯେତେବେଳେ ଯେଉଁଠିକି ଯାଇଛି, ମୁଁ ସେଠି ବସିବା ପାଇଁ ଉଦ୍‌ବିଗ୍ନ ହୋଇ ଉଠିଛି । ସୁତରାଂ ଅଭିଷେକ ଉତ୍ସବର ପରବର୍ତ୍ତୀ ଦିନ ସୋମବାର ଜିନିଷ ପତ୍ର ସଜସର କରିବାରେ ଲାଗି ପଡ଼ିଲି । ଆଗ ଦିନ କେଉଁ ଜିନିଷ କେଉଁଠି ରଖିବ ତାହା ଠିକ୍ କରି ନେଇଥାଏ । ମୋ ବିଛଣା ବଡ଼ ପ୍ରକୋଷ୍ଠ ଖଣ୍ଡିକରେ ବ୍ୟବହାର ପାଇଁ ଥାଏ । ବିଛଣାରୁ ଉଠି ଡ୍ରେସିଂ ଟେବୁଲ, ସେଠୁ ପୋଷାକ ଆଲମାରି ପାଖୁ ଯିବାକୁ ବେଶୀ ସମୟ ଲାଗୁଥିଲା । ମୋର ମନେ ହେଲା ମୁଁ ସମୟ ନଷ୍ଟ କରୁଛି । ତେଣୁ ନିକଟସ୍ଥ ପୋଷାକ ବଦଳାଇବା ଘରକୁ ମୋର ବିଛଣା ନେଇଗଲି । ବସିବା ଘର ଡେକ୍‌ସରେ ରଖିବା ପାଇଁ ଗୋଟିଏ ଫୋନ୍ ଲୋଡ଼ା ହେଲା । ଦୁଇ ଦିନ ଅତିବାହିତ ହେଲା, କିନ୍ତୁ ଫୋନ ଆସିଲା ନାହିଁ, ଅନୁସନ୍ଧାନ କରି ଜାଣିଲି ଟେଲିଫୋନ୍ କର୍ମ୍ମୀଗଣ ମୋ ଘର ଭିତରକୁ ଆସି ପାରି ନାହାନ୍ତି । ତାହାର କାରଣ ହେଲା ମୁଁ ଖୁବ୍ କମ୍ ସମୟ ଘର ବାହାରକୁ ଯାଏ । ପ୍ରେସିଡେଣ୍ଟଙ୍କ ସ୍ତ୍ରୀ ଯେତେବେଳେ ଘର ମଧ୍ୟରେ, ସେତେବେଳେ ସେଠାରେ କାମ କରିବା ଅନୁଚିତ୍ । ମୁଁ ସାଙ୍ଗେ ସାଙ୍ଗେ ତାହାର ପ୍ରତିବାଦ କରି ସେମାନଙ୍କୁ ଜଣାଇ ଦେଲି ଘରେ ମିସ୍ତ୍ରୀ କାମ କଲେ ମୋର କୌଣସି ଅସୁବିଧା ହେବ ନାହିଁ । ମୋର ସେ ଅଭ୍ୟାସ ଅଛି ।

ସମୟ ଖରାପ ହେଲେ ମଧ୍ୟ ପିଲାପିଲିଙ୍କ ଲାଗି ଉତ୍ସବର ବ୍ୟବସ୍ଥା

ହୋଇଗଲା । ମୋର ମନେ ଅଛି ଆମ ପିଲାଙ୍କ ଭିତରୁ ଗୋଟିଏ ଯେ କେତେ ରାଗିଥିଲା ତାହାର ଇୟତ୍ତା ନାହିଁ । ସେ ଦିନ ଅଧିକ ରାତିରେ ସେ ନାଚରୁ ଫେରେ । ଦଦରା ଖଣ୍ଡେ ଗାଡ଼ିରୁ ଓହ୍ଲାଇ ତାକୁ ଫାଟକରେ ପୁଣି ଅଟକି ଯିବାକୁ ହୁଏ । ତା ସାଙ୍ଗରେ କୌଣସି ପରିଚୟ ପତ୍ର ନଥିଲା । ସନାକ୍ତ କରିବାକୁ ବହୁତ ସମୟ ଲାଗିଲା । ପରେ ଯାଇ ସେ ଭିତରକୁ ଆସେ ଓ ଶୋଇ ବାକୁ ଯାଏ । ପରଦିନ ସକାଳେ ସେ କହିଲା, "ଏଇଟା କମିତିକା ଜାଗା ! ଏଥିରୁ ଆମ୍ଭେମାନେ ଏହାହିଁ ଆବିଷ୍କାର କଲୁ ଯେ ଯେତେବେଳେ କୁଟୁମ୍ବ ମଧ୍ୟରୁ କୌଣସି ଲୋକ ଆସେ ବା ଯାଏ, ସେତେ-ବେଳେ ସେମାନଙ୍କର ଯିବା ଆସିବା ସମୟ ଦାରଓ୍ୱାନ ବହିରେ ଟିପାଥାଏ । ଅଳ୍ପ ବା ବେଶୀ ସମୟ ପାଇଁ ଯଦି କୌଣସି ଅତିଥି ଆସନ୍ତି, ତାଙ୍କ ନାମ ବି ଏହି ବହିରେ ଲେଖା ଯାଏ । ଅଧିକାଂଶ ମାର୍କିନ ପିଲାପିଲିଙ୍କ ଭଳି ଆମ ପିଲାଏ ଭୋକ ହେଲାକ୍ଷଣି ରେଫ୍ରିଜାରଟର ଉପରକୁ ଡେଇଁ ପଡ଼ି ବସନ୍ତି ।

ପ୍ରଥମ ଥର ପାଇଁ ସେମାନେ ଏହାହିଁ ଜାଣି ରଖିଲେ ଯେ ଏଠାରେ ରେଫ୍ରିଜାରଟାରରେ ରାତିରେ ତାଲାଚାବି ପଡ଼ିଥାଏ । ମୋତେ ଦୋଷ ଦେବାର ଆଉ ଗୋଟିଏ କାରଣ ସେମାନେ ଖୋଜି ପାଆନ୍ତି ।

ମୋ ସେକ୍ରେଟାରୀ ମିସ୍ ଟମସନ୍‌ଙ୍କ ଡେସ୍କ ଉପରେ ଡାକ ସ୍ତୂପାକୃତି ହେବାକୁ ଲାଗିଲା । ଚିଠି ପତ୍ର, ବହି—ଆଉ ନାନା ଉପହାରର ପ୍ୟାକେଟର ବ୍ୟବସ୍ଥା ସେ ଏକା କରିବାକୁ ଲାଗିଲେ । କିନ୍ତୁ କୌଣସି ଲୋକ ମୋତେ କହିଲେ ନାହିଁ ଯେ, ଏହି ବ୍ୟାପାରରେ ସାହାଯ୍ୟ କରିବାକୁ ଆମର ଦଳେ ସ୍ୱେଚ୍ଛା ସେବକ ଅଛନ୍ତି । ଏଡ଼ିଥହେଲମ୍ ଓ୍ୱାଶିଂଟନଙ୍କର ସାଥି ମିଡ଼ି ଜାଣି-ଥିଲେ । ସେ ଆଉ ସହ୍ୟ ନ କରି ପାରି ମୃଦୁ ସ୍ୱରରେ ଜଣାଇଲେ, "ଚିଠି ପତ୍ର ସବୁ ସ୍ତ୍ରୀଲୋକଙ୍କ ହାତକୁ ଦେଉ ନାହାନ୍ତି କାହିଁକି । ସେତ ତଳ ମହଲାରେ କାଠ କଣ୍ଟେଇ ଭଳି ବସି ରହିଛନ୍ତି । ସେ ଓ ତାଙ୍କ କର୍ମଚାରୀଗଣ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ରହିଛନ୍ତି ।" ଏଥର ଆମେ ସୁନ୍ଦର

ବ୍ୟବସ୍ଥା କଲୁ । ସବୁ ବେଳେ ଏହି ସୁନାମ ପାଉଥିଲୁ ଯେ ଚିଠି ପାଇବାର କିଛି ସମୟ ପରେହିଁ ଆମ୍ଭମାନଙ୍କ ଠାରୁ ଉତ୍ତର ଯାଏ ।

ପରେ ଏଡିଥ୍‌ହେଲମ୍‌ ଏହି ସ୍ୱେଚ୍ଛା ସେବକରୁ ସାମାଜିକ ସେକ୍ରେଟାରୀ ପଦରେ ସ୍ଥାୟୀ ଭାବରେ ପ୍ରତିଷ୍ଠିତ ହୁଅନ୍ତି । ମିସ୍‌ ଟମ୍‌ସନ୍‌ ଦେଖିଲେ ତାଙ୍କର ବ୍ୟବସ୍ଥା ଓ ମୋର ବ୍ୟକ୍ତିଗତ କାର୍ଯ୍ୟ ସେ ଏକୁଟିଆ କରି ପାରି-ଥାନ୍ତେ । କିନ୍ତୁ ଓ୍ୱାସିଂଟନର ସାମାଜିକ ଜୀବନର ଜଟିଳତା ସମ୍ବନ୍ଧରେ ସୁପରିଚିତ ହେବା ଇଚ୍ଛା ତାଙ୍କର ମୋଟେ ନଥିଲା ।

ମୂଳରୁ ଆଠଟା ସାଢ଼େ ଆଠଟା ବେଳେ ପଶ୍ଚିମ ହଲ ଘରେ ମୁଁ ପ୍ରାତଃ ଭୋଜନ କରୁଥିଲି । ମୋ ସ୍ୱାମୀ ବିଛଣାରେ ବସି ପ୍ରାତଃ ଭୋଜନ ସମାପନ କରୁଥିଲେ । ତାଙ୍କ ପ୍ରାତଃ ଭୋଜନର ଥାଳୀ ଆସିଲାକ୍ଷଣି ମୁଁ ଯାଇଁ ତାଙ୍କ ଘରେ ଉପସ୍ଥିତ ହୁଏ । ମୁଁ ତାଙ୍କୁ କେବଳ ସୁପ୍ରଭାତ ଜଣାଇ ଆସେ । ସେ ଏହି ସମୟରେ କଥାବାର୍ତ୍ତା ଆଦୌ ପସନ୍ଦ କରୁ ନଥିଲେ । ସେତେବେଳେ ସେ ସବୁ ଖବର କାଗଜ ଯାକ ପଢନ୍ତି । ତହିଁରୁ ବେଶୀର ଭାଗ ଉପରେ କେବଳ ଆଖି ପକାଇ ଯାଆନ୍ତି । ପୁଣି କେତେ ଗୁଡ଼ିଏ ପ୍ରବନ୍ଧକୁ ସମ୍ପୂର୍ଣ୍ଣ ଭାବରେ ପଢ଼ନ୍ତି । ସେ ବିପକ୍ଷ ଦଳର ଲେଖା ସମୂହକୁ ସ୍ୱଦଳୀୟ ଲେଖା ମାନଙ୍କ ଠାରୁ ଗଭୀର ମନୋନିବେଶ ସହକାରେ ପଢନ୍ତି । କୌଣସି କୌଣସି ସାମ୍ବାଦିକଙ୍କର ଲେଖା ତାଙ୍କୁ କୌଣସି ମତେ ପଢାଇ ପାରି ନାହିଁ । ଥରେ ଯଦି ଅସାଧୁ ବା ଚରିତ୍ରହୀନ ବୋଲି କୌଣସି ଲୋକ ଉପରେ ତାଙ୍କର ଧାରଣା ଜନ୍ମୁଥିଲା, ତାଙ୍କର ସବୁ ଲେଖାକୁ ସେ ଉପେକ୍ଷା କରୁଥିଲେ । ମୋର ଜଣକ କଥା ମନେ ପଡ଼େ, ଯେତେବେଳେ ସେ ସସ୍ତ୍ରୀକ ଗ୍ରୀଷ୍ମକାଳରେ ଇଉରୋପକୁ ଯାନ୍ତି, ସେତେବେଳେ ମୁଁ ତାଙ୍କୁ ବହୁ ପରିଚୟ ପତ୍ର ଦେଇଥିଲି । ସେ ଜାର୍ମାନିରୁ ଏହି ବିଶ୍ୱାସ ନେଇ ଫେରି ଆସନ୍ତି ଯେ ନାତ୍‌ସୀବାଦ୍‌ ଭଲ ବୋଲି । ସେ ଯେଉଁ ସବୁ କାଗଜରେ ଲେଖୁଥିଲେ ସେ ସବୁ ପତ୍ରିକାର ମାଲିକ ମାନଙ୍କର ମଧ୍ୟ ଅନୁରୂପ ବିଶ୍ୱାସ ଥିଲା । ମୋ ସ୍ୱାମୀଙ୍କର ଓ ମୋର ମନେ ହୋଇଥିଲା ସେ ଏକାବେଳେ

ଅସାଧୁ, ତାଙ୍କର ମନ ସଙ୍କୀର୍ଣ୍ଣ ଓ ବିକୃତ । ସେଥି ପାଇଁ ଫ୍ରାଙ୍କଲିନ୍ ଆଉ ତାଙ୍କ ଲେଖା ପ୍ରତି କୌଣସି ଗୁରୁତ୍ୱ ଦେଉ ନଥିଲେ ।

ପ୍ରାତଃଭୋଜନ ସମୟରେ କେବଳ ନାତି ନାତୁଣୀ ବ୍ୟତୀତ ଆଉ କୌଣସି ଲୋକ ଫ୍ରାଙ୍କଲିନ୍ଙ୍କ ଘରକୁ ପ୍ରବେଶ କରି ପାରୁ ନଥିଲେ । ମୁଁ ମଝିରେ ମଝିରେ ତାଙ୍କୁ ଏହି ଗ୍ରେଟ ଗ୍ରେଟ ସାଥୀମାନଙ୍କ ହାତରୁ ରକ୍ଷା କରୁଥିଲି । ଥରେ ମୁଁ ଖୁବ୍ ଗୋଳମାଳ ଓ ତାଙ୍କର ଯାହି ଯାହି ଚିତ୍କାର ଶୁଣି ଯାଇ ଦେଖେ, ଗ୍ରେଟ ଝିଅ ସାରା ଓ ଗ୍ରଣ୍ଡଲ୍ ତାଙ୍କ ବିଛଣା ଉପରେ ନାଚ କୁଦ କରୁଛନ୍ତି ଓ ଜୋରରେ ଚିତ୍କାର କରି କହୁଛନ୍ତି "ଏ ମୋର ଗୋସାଁପା" "ନା, ତୁମର ନୁହେଁ, ମୋର ।" ଫ୍ରାଙ୍କଲିନ୍ ଗୋଟିଏ ହାତରେ ପ୍ରାତଃଭୋଜନ ଥାଳୀଟି ଯେପରି ଶେଯ ଉପରେ ଓଲଟି ନ ଯାଏ, ତାହାର ଚେଷ୍ଟା କରୁଛନ୍ତି ଓ ଅପର ହାତରେ ଧରିଛନ୍ତି ଫୋନ୍ । ଅପାରେ-ଟରଙ୍କୁ ସେ ହତାଶ ହୋଇ କହୁଛନ୍ତି "ହ୍ୟାଙ୍କ୍, ଟିକିଏ ଅପେକ୍ଷା କର ମୁଁ ବର୍ତ୍ତମାନ ପାରିବ ସଙ୍ଗେ କଥା କହି ପାରୁ ନାହିଁ ।"

ଭୋଜନରେ ଫ୍ରାଙ୍କଲିନ୍ଙ୍କୁ ଖୁସୀ କରିବା ଖୁବ୍ ଦୁଃସାଧ୍ୟ ନଥିଲା । କିନ୍ତୁ ଓ୍ୱାଶିଂଟନରେ ଯେତେବେଳେ ଥାଆନ୍ତି, ସେତେବେଳେ ପ୍ରାୟ ସେ ଖାଇ-ବାକୁ ବାହାରକୁ ଯାଉ ନଥିଲେ । ଶ୍ରେଷ୍ଠ ରାନ୍ଧୁଣୀ ହାତର ରନ୍ଧନର ଅଦଳ ବଦଳ ନ ହେଲେ ତାଙ୍କୁ ଭଲ ଲାଗୁ ନଥିଲା । ବର୍ଷ ଅତିବାହିତ ହେବା ସଙ୍ଗେ ସଙ୍ଗେ ସେ ଦୁର୍ବଳ ହୋଇ ଯିବାକୁ ଲାଗିଲେ । ମିସେସ୍ ନେସ୍‌ବିଟ୍ (ହ୍ୱାଇଟ୍ ହାଉସର ଗୃହସ୍ଥାଳିର ଭାର ପ୍ରାପ୍ତ) ହ୍ୱାଇଟ୍ ହାଉସର ପାଚକଗଣ ଓ ମୁଁ ମଧ୍ୟ ତାଙ୍କର ଭୋଜନ ବ୍ୟାପାରରେ ମୁସ୍କିଲରେ ପଡ଼ିଗଲି । ୧୯୪୧ ମସିହାରେ ତାଙ୍କ ମାତୃ ଦେବୀଙ୍କର ପରଲୋକ ହୁଏ । ତାଙ୍କର ରାନ୍ଧୁଣୀକୁ ଆଣି ହ୍ୱାଇଟ୍ ହାଉସର ୪ ତାଲାରେ ଥିବା ଘର ଖଣ୍ଡିକୁ ରନ୍ଧନ ଶାଳାରେ ପରିଣତ କରି ତାଙ୍କୁ ସେଠାରେ ଅଧିଷ୍ଠିତ କଲି । ଫ୍ରାଙ୍କଲିନ୍ଙ୍କ ପାଇଁ ପ୍ରତ୍ୟହ ଦୁଇଥର କରି ରାନ୍ଧିବାକୁ ହେଉଥିଲା । ଏଥର ଫ୍ରାଙ୍କଲିନ୍ ମଧ୍ୟ ରକମ ବେରକମ ଖାଦ୍ୟ ଦ୍ରବ୍ୟ ଖାଇବାକୁ ପାଇଲେ ।

ହ୍ୱାଇଟ ହାଉସର ଗୃହସ୍ଥାଳିର କୌଣସି କୌଣସି ଦିଗରୁ ସାଧାରଣଙ୍କର କୌତୂହଳୀ ଥାଇପାରେ । ଅନେକ ହୁଏତଃ ଜାଣନ୍ତି ନାହିଁ ଯେ ଯିଏ ପ୍ରେସିଡେଣ୍ଟ ଓ ଯେଉଁ ମହାଶୟ ଗଭର୍ଣ୍ଣର ପଦରେ ଅଧିଷ୍ଠିତ, ତାଙ୍କର ବ୍ୟୟର ପରିମାଣ କେତେ । ନିଉଇୟର୍କ ସରକାର ଓ ଫେଡ଼ାରେଲ ସରକାର ଯେଉଁମାନେ ଗୃହସ୍ଥାଳିର କାମ ଦାମ କରନ୍ତି, ସେମାନଙ୍କର ବେତନ ଦିଅନ୍ତି । ତଥାପି ସେମାନଙ୍କର ଖୋରାକ ପୋଷାକ ଖର୍ଚ୍ଚ ମୋ ସ୍ୱାମୀଙ୍କ ପକେଟରୁ ଯାଉଥିଲା । ଆଲବାନିରେ ଆମ୍ଭମାନଙ୍କର ସବୁବେଳ ପାଇଁ ୮ ରୁ ୧୦ ଜଣ ପରିଚାରକ ଓ ପରିଚାରିକା ଥିଲେ ଓ ହ୍ୱାଇଟ ହାଉସରେ ୩୦ ଜଣ ଯାଏ ଥିଲେ । ମୋର ସବୁବେଳେ ଧାରଣା ଥିଲା ଯେ, ରାଜ୍ୟର ଓ ଜାତୀୟ ସରକାର ସେମାନଙ୍କର ଖୋରାକ ପୋଷାକ ଯୋଗାଉଛନ୍ତି ବୋଲି । ହ୍ୱାଇଟ ହାଉସରେ ପ୍ରତିବର୍ଷ ସହସ୍ର ସହସ୍ର ଅତିଥି ଅଭ୍ୟାଗତ ଆସି ଜୋଟନ୍ତି । ଏଇଥି ପାଇଁ ଘରଦ୍ୱାର ପରିଷ୍କାର ପରିଚ୍ଛନ୍ନ ପାଇଁ ଆମ୍ଭମାନଙ୍କର ଯେଉଁସବୁ ଲୋକଙ୍କର ଆବଶ୍ୟକ, ତାଠାରୁ ଢେର ବେଶୀ ଲୋକ ନିଯୋଗ କରିବାକୁ ପଡ଼ୁଥିଲା । ଏତଦ୍‌ବ୍ୟତୀତ ଅବଶିଷ୍ଟ ହ୍ୱାଇଟ ହାଉସରେ କାମ କରୁଥିଲେ, ସେମାନଙ୍କ ପାଇଁ ମୁକ୍ତ ପ୍ରାଙ୍ଗଣର ଓ ଗାଡ଼ି ବାରଣ୍ଡାରେ ଯେଉଁ ଯେଉଁ ଭୋଜି ବଡ଼ ଦିନ ଉପଲକ୍ଷେ ଦେଉଁ, ସେ ଖର୍ଚ୍ଚ ବି ସ୍ୱାମୀଙ୍କୁ ଯୋଗାଇବାକୁ ପଡ଼େ । ସାମାଜିକ ଓ ସରକାରୀ ଭୋଜି ସମୂହର ଖର୍ଚ୍ଚ ଆକସ୍ମିକ ବ୍ୟୟ ଭଣ୍ଡାରରୁ ସରକାର ମଞ୍ଜୁର କରନ୍ତି । କିନ୍ତୁ ଫ୍ରାଙ୍କଲିନ କିମ୍ବା ମୁଁ ଯେତେବେଳେ ପିଲାପିଲି ଓ ବନ୍ଧୁ ବାନ୍ଧବଙ୍କୁ ନେଇ ବିଶେଷ ଭୋଜିର ଆୟୋଜନ କରୁ, ସେତେବେଳେ ଆମ୍ଭମାନଙ୍କୁ ଖର୍ଚ୍ଚର ଅଂଶ ବହନ କରିବାକୁ ପଡୁଥିଲା । ଏତଦ୍‌ବ୍ୟତୀତ ଦାନର ଗୁରୁତା ମଧ୍ୟ ଥିଲା ଅସୀମ । ପ୍ରେସିଡେଣ୍ଟଙ୍କର ତ ଅନ୍ୟମାନଙ୍କ ଠାରୁ ମୁକ୍ତ ହସ୍ତରେ ଦାନ କରିବାର କଥା । ମୁଁ ନିଶ୍ଚିନ୍ତ ଭାବରେ କହି ପାରେ ଯେ, ପ୍ରତ୍ୟେକ ପ୍ରେସିଡେଣ୍ଟଙ୍କୁ ହ୍ୱାଇଟ ହାଉସରୁ ବାହାର ଆସିଲା ବେଳକୁ ଯିବା ବେଳଠାରୁ ବେଶୀ ନିଃସ୍ୱ ହୋଇ ବାହାରକୁ ଆସିବାକୁ ପଡୁଥିଲା ।

ଏହି ସବୁ କାରଣରୁ ଆୟ ବ୍ୟୟର ହିସାବ ରକ୍ଷାକରିବା ଓ ଗୃହସ୍ଥାଳୀର କାର୍ଯ୍ୟ ଜଟିଳରୁ ଜଟିଳତର ହୋଇ ଉଠେ । ହ୍ୱାଇଟ ହାଉସରେ ସଉଦା କରିବାଟା ମଧ୍ୟ ଗୋଟିଏ ସମସ୍ୟାମୂଳକ ବ୍ୟାପାର । ଯେଉଁ ସବୁ ପଦାର୍ଥ ଜୀର୍ଣ୍ଣ ଶୀର୍ଣ୍ଣ ହୋଇଛି ସେ ଗୁଡ଼ିକ ପରିତ୍ୟକ୍ତ କରିବା ମଧ୍ୟ ସହଜ ସାଧ୍ୟ ନୁହେଁ । ଯେତେବେଳେ ତା ପରିବର୍ତ୍ତିରେ ନୂଆ କଣାଯିବ, ସେତେବେଳେ ସେ ଗୁଡ଼ିକ ଦେଖାଇବାକୁ ହେବ । ତାହାର ଫଳରେ ଗୋଦାମ ଘର ସମୂହ ପୁରୁଣା ଜିନିଷ ପତ୍ରରେ ପୂରି ଉଠିଥିଲା । ମଝିରେ ମଝିରେ ଯେତେବେଳେ ଘରେ ଟିକିଏ ହେଲେ ସ୍ଥାନ ମିଳୁ ନଥିଲା, ସେତେବେଳେ ଯାଇଁ ସେ ସବୁ ଜିନିଷର ବନ୍ଦୋବସ୍ତର ବ୍ୟବସ୍ଥା ହେଉଥିଲା । ଗୃହ ସ୍ଥାଳୀର ଭାର ଯାହାଙ୍କ ଉପରେ ନ୍ୟସ୍ତ ଥିଲା, ତାଙ୍କୁ ଯେବେ ହଠାତ୍ ଗୁ'ଛାଏ କିଣିବାକୁ ପଡୁଥିଲା, ସେ ପୁରୁଣା ଖଣ୍ଡିକୁ ସାଇତି ରଖିବାକୁ ବାଧ୍ୟ ହେଉଥିଲେ । କାଳେ ନୂଆ କିଣିବା ହେତୁ ତାଙ୍କୁ କୈଫିୟତ ଦେବାକୁ ପଡ଼େ ସେଇଥି ପାଇଁ । ହ୍ୱାଇଟ ହାଉସରେ କୌଣସି ଜିନିଷ ଯେତେବେଳେ ଯାଏ ବ୍ୟବହାରର ଅନୁପଯୁକ୍ତ ନ ହୋଇପଡେ, ସେତେଦିନ ଯାଏ ତାକୁ ବ୍ୟବହାର କରିବାର କଥା । ଯେତେବେଳେ କୌଣସି ଜିନିଷ ଏକାବେଳେ ବ୍ୟବହାରର ଗଣ୍ଡିର ବାହାର ହୋଇ ପଡ଼େ, ସେତେବେଳେ ସାକ୍ଷୀଙ୍କ ସମ୍ମୁଖରେ ସେ ଗୁଡ଼ିକ ନଷ୍ଟ କରି ଦିଆଯାଏ । ପୁରୁଣା ପିଆନୋ ଓ ପୁରୁଣା ଲିଫ୍ଟ କୋଠରୀ, ଐତିହାସିକ ଦ୍ରଷ୍ଟବ୍ୟ ଦ୍ରବ୍ୟ ହିସାବରେ ସ୍ମିଥସୋନିୟାନ ଇନ୍ଷ୍ଟିଚ୍ୟୁଟରେ ଜମା ରଖା ହୁଏ । ଏଥିରୁ ଏହାହିଁ ପ୍ରତିପନ୍ନମାନ ହୁଏ ଯେ ହ୍ୱାଇଟ୍ ହାଉସର ଖର୍ଚ୍ଚ ଟଙ୍କାରୁ ଅନାବଶ୍ୟକୀୟ ଜିନିଷ କିଣିବାର ଆଶଙ୍କା ମଧ୍ୟ ଖୁବ୍ କମ ।

ମୁଁ ପ୍ରଥମରେ କେତେ ଗୁଡ଼ିଏ କର୍ତ୍ତବ୍ୟକୁ ଅବାନ୍ତର ବୋଲି ମନେ କରୁଥିଲି । ମୁଁ ପରେ ତାହାର ଅର୍ଥ ଓ ଉପକାରିତା ବେଶ ହୃଦୟଙ୍ଗମ କଲି । ଉଦାହରଣ ସ୍ୱରୂପ ଗୁ ଘଟଣାଟି । ଦିନେ ଦିନେ ଅପରାହ୍ନରେ ୫୦୦ ରୁ ୧୦୦୦ ଲୋକଙ୍କୁ ଅଭ୍ୟର୍ଥନା କରିବା ମୋ ପାଖରେ ଅନାବଶ୍ୟକ ଓ ନିରର୍ଥକ ବୋଲି ପ୍ରତିପନ୍ନମାନ ହେଉଥିଲା । ଏମାନଙ୍କ ସହିତ ମୋର

ସାଗ୍ଜୀବନରେ ସାକ୍ଷାତଲାଭ ଘଟିବାର ସୁଯୋଗ ହୋଇ ନପାରେ—ତଥାପି ସେମାନଙ୍କୁ ଅଭିବାଦନ ଜଣାଇବାକୁ ପଡ଼ିବ । ପରେ ଭୋଜନ କକ୍ଷକୁ ନେଇ ଯାଇ କାପେ ଚା ବା କାଫି ମିସେସ୍ ହେଲମ୍ ବା ମିସେସ ଟମସନଙ୍କୁ ଦେଇ ପରିବେଷଣ କରିବାକୁ ହେବ ।

ଚା ଅତିଥିମାନଙ୍କୁ ଆପ୍ୟାୟନ କରି ମୁଁ ରାଜକୀୟ ଭୋଜନ କକ୍ଷକୁ ଯାଏ । ତାପରେ ଅପରାହ୍ନ ଟିକିଏ ଅଧେ ଆଳାପ ଆଲୋଚନା ଚଳେ । ପରେ ମୁଁ ଉପର ମହଲକୁ ଚାଲି ଯାଉଥିଲି । ମୋ ଯିବା ସଙ୍ଗେ ସଙ୍ଗେ ଉତ୍ସବର ପରିସମାପ୍ତି ଘଟୁଥିଲା । ପ୍ରଥମ ପ୍ରଥମ ବୁଝି ପାରୁ ନଥିଲି ଯେ ମୋ ନଯିବା ଯାଏ କେହି କକ୍ଷଛାଡ଼ି ଯିବେ ନାହିଁ ବୋଲି । ଦରଓ୍ୟାନ ସବୁବେଳେ ଲୋକମାନଙ୍କୁ ବିଦାୟ ଦେବାକୁ ଚାହୁଁଥିଲା, ପରେ ତାକୁ ଅନ୍ୟ ପରିସ୍ଥିତି ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ସେ ସେଇଥି ପାଇଁ ବାରମ୍ବାର ମୋ'ର କର୍ତ୍ତବ୍ୟ ସମ୍ବନ୍ଧରେ ସ୍ମରଣ କରାଇ ଦେଉଥାଏ । ମୋ ପକ୍ଷରେ ମନେ ରଖିବା ଖୁବ ଶକ୍ତ ହେଉଥିଲା ଯେ ମୁଁ ଯେ କେବଳ ଏଲିନୋର ରୁଜଭେଲ୍ଟ, ତାହା ନୁହେଁ, ମୁଁ ପ୍ରେସିଡେଣ୍ଟଙ୍କ ପତ୍ନୀ ମଧ୍ୟ ।

ମୁଁ ଶୀଘ୍ର ହିଁ ଆବିଷ୍କାର କଲି ଯେ ସହରର ବାହାରର ମନୁଷ୍ୟମାନଙ୍କ ପାଖରେ ହ୍ୱାଇଟ ହାଉସର ଗୋଟିଏ ଗଭୀର ତାତ୍ପର୍ଯ୍ୟ ଅଛି । ମୁଁ କେବଳ ମାତ୍ର ପ୍ରତୀକ ଛଡ଼ା ଆଉ କିଛି ନୁହେଁ । ପ୍ରେସିଡେଣ୍ଟଙ୍କ ପତ୍ନୀଗଣ ମଧ୍ୟ ସେହିପରି ଥିଲେ ଓ ଭବିଷ୍ୟତରେ ମଧ୍ୟ ସେହିପରି ରହିବେ । ହ୍ୱାଇଟ ହାଉସ ଏପରି ଗୋଟିଏ ସ୍ଥାନ ଯେଉଁଠାରେ ଅନ୍ୟାନ୍ୟ ଦେଶର ପ୍ରତିନିଧିଗଣ ଅତିଥି ହୁଅନ୍ତି ଓ ଯୁକ୍ତରାଷ୍ଟ୍ରର ଅଧିବାସୀଗଣ ସେମାନଙ୍କର ନିଜସ୍ୱ ସମ୍ପତ୍ତି ଭାବି ଏହି ଐତିହାସିକ ବାସଗୃହ ଘର ସମ୍ବନ୍ଧରେ ଘୋର ବୁଲନ୍ତି । ମୋର ମନେ ହୁଏ ବହୁ ଲୋକଙ୍କ ନିକଟରେ ହ୍ୱାଇଟ ହାଉସ ସରକାରଙ୍କର ପ୍ରତୀକ । ସେଇଥିପାଇଁ ସପ୍ତାହରେ ଦୁଇ ତିନିଥର ଘଣ୍ଟାଏ କିମ୍ବା ତା ଠାରୁ ବେଶୀ ସମୟ ଠିଆ ହୋଇ, ଅଭିବାଦନ ଜଣାଇବା ଖୁବ୍ ସୁଖକର ନ ହେଲେ ହେଁ, କରିବାକୁ ବାଧ୍ୟ ହେଉଥିଲି । ମୁଁ ଶୀତ କାଳରେ

ନିୟମିତ ଭାବରେ ସପ୍ତାହରେ ତିନିଥର ଏହିପରି କର୍ତ୍ତବ୍ୟ ପାଳନ କରୁଥିଲି । ଦରଓ୍ୟାନ ଓ ନିମ୍ନତମ କର୍ମଚାରୀଗଣ ଯେଉଁ ସାମାନ୍ୟ ସୌଜନ୍ୟ ଓ ଶୋଭା ଯୋଗାଇ ଦେଉଥିଲେ, ତାହା ମୋ ପକ୍ଷରେ ଅସାମାନ୍ୟ ବୋଲି ମନେ ହେଉଥିଲା ।

ପ୍ରତି ପର୍ଯ୍ୟାୟର ପ୍ରଥମ ଅଭ୍ୟର୍ଥନାରେ ମୋହର ବାହୁ ଓ କାନ୍ଧ ବିନ୍ଧି ଉଠେ । ପିଠିରେ ଯନ୍ତ୍ରଣା ଅନୁଭବ କରେ । ମୋ ଆଣ୍ଠୁ ସତେ ଯେପରି ମୋର ନୁହେଁ, ଏପରି ମନେ ହେଉଥିଲା । କିନ୍ତୁ କ୍ରମେ ଏହା ଅଭ୍ୟାସରେ ପରିଣତ ହୋଇଗଲା । ତେବେ ହାତ ଦେଖିଲି ଶକ୍ତ ଥିଲା ବୋଲି ବ୍ୟଥା ଅନୁଭବ କଲିନାହିଁ ।

ଏହି ସାମାଜିକତାରେ ମୋର ସ୍ୱାମୀ ଖୁବ୍ କ୍ଳାନ୍ତ ବୋଧ କରୁଥିଲେ । ବ୍ରେସ୍ ପିନ୍ଧି ଅନେକ ବେଳଯାଏ ଠିଆ ହୋଇ ରହିବା ତାଙ୍କ ପକ୍ଷରେ ଗୋଟିଏ ମସ୍ତବଡ଼ ପରୀକ୍ଷା ଥିଲା । ସହସ୍ରାଧିକ ଲୋକଙ୍କୁ ଯଦ୍ୱାରା ଅଭ୍ୟର୍ଥନା କରି ନ ହୁଏ, ସେହି ଚେଷ୍ଟା ସେ କରୁଥିଲେ । ପରେ ଅଭ୍ୟର୍ଥନା ଶେଷ ହୋଇଗଲେ ସେ ଉପର ମହଲାକୁ ଚାଲି ଯାଉଥିଲେ । ଯେଉଁମାନଙ୍କ ସହିତ ସେ ଆଲୋଚନା କରିବାକୁ ଚାହୁଁଥିଲେ, ମୁଁ ସେମାନଙ୍କୁ ତାଙ୍କ ପଢିବା ଘରକୁ ପଠାଇ ଦେଉଥିଲି । ଏହା କିନ୍ତୁ ସବୁଦିନ ପାଇଁ ନୁହେଁ, ବିଶେଷ ଦିନ ମାନଙ୍କରେ । କାରଣ ଶୋଇବା ଆଗରୁ ତାଙ୍କର ବହୁ କାମ ଜମି ରହିଥାଏ ।

ମୋର ବ୍ୟକ୍ତିଗତ ବଡ଼ ବଡ଼ ସାମାଜିକ ନିମନ୍ତ୍ରଣରେ ମୁଁ ପାଖାପାଖି ମନୁଷ୍ୟମାନଙ୍କ ଆଡ଼କୁ ଚାହିଁ ଦେଖୁଥାଏ । ମୋର ଇଚ୍ଛା ଥିଲା ଏ ଆଡ଼କୁ । ଏଦ୍ୱାରା ଉତ୍ସବ ସମୂହ ଯେ ବିରକ୍ତିକର ହୋଇ ଉଠୁଥିଲା, ସେ ସବୁ ମୋ ପକ୍ଷରେ ଥିଲା ସୁବର୍ଣ୍ଣ ସୁଯୋଗ । ମୋ ଦେଶକୁ ଯେଉଁମାନେ ଗଢ଼ିଛନ୍ତି, ସେମାନଙ୍କର ଛବି ମୁଁ ପାଉଥିଲି । ହ୍ୱାଇଟ ହାଉସରେ ରହିବାରୁ ଗୋଟିଏ ମସ୍ତବଡ଼ ଲାଭ ମୋର ହୋଇଛି ।

ଚୁକ୍ତି ପତ୍ରର ପ୍ରୟୋଜନୀୟତା କ'ଣ ତାହା ମୋତେ ଏନ୍ତାଥ୍ ହେଲମ୍

ଲୁଚାଇ ଦେଇଥିଲେ । ମୋର ସେ ଅଶେଷ ଉପକାରହିଁ କରିଥିଲେ । ଚୁକ୍ତି ପତ୍ର ସମ୍ବନ୍ଧରେ ମୁଁ ଥିଲି ଅଜ୍ଞ । ପରେ ମୁଁ ଜାଣି ପାରିଲି ଯେ ରକ୍ଷା ଓ ଶୃଙ୍ଖଳା ବାସ୍ତବିକ ପକ୍ଷରେ ତାଙ୍କର ଏକାନ୍ତ ଆବଶ୍ୟକ । ଆଗରୁ ମୁଁ ଅଧିକାଂଶ ଆମେରିକା ବାସୀଙ୍କ ଭଳି ଏ ସମ୍ବନ୍ଧରେ ଖୁବ ଅସନ୍ତୁଷ୍ଟହିଁ ଥିଲି । ଏ ଦେଶରେ କେଉଁଠାରେ ହେଲେ ଚୁକ୍ତି ପତ୍ର ପ୍ରତି ସେପରି ଗୁରୁତ୍ୱ ଦିଆ ହୁଏନାହିଁ । ବ୍ୟକ୍ତି ବିଶେଷଙ୍କର ବୟସ ବା ନିଜସ୍ୱ କୀର୍ତ୍ତି ପ୍ରତି ସେପରି ଶ୍ରଦ୍ଧା ନଥାଏ । ହେଲେ ଓ୍ୱାଶିଂଟନର ନିୟମ କଠୋର । ଏଥିମଧ୍ୟରୁ କେତେ ଗୁଡ଼ିକୁ ଅଦ୍ୟାପି ମୋ ପକ୍ଷରେ ଖୁବ କଠିନ ବୋଲି ମନେ ହୁଏ । ହେଲେ ଅଧିକାଂଶକୁ ଆବଶ୍ୟକୀୟ ବୋଲି ମନେ କରେ । ଓ୍ୱାଶିଂଟନସ୍ଥ ବିଦେଶୀ ଗଣ ଏତଦ୍ ବ୍ୟତିତ ଅନ୍ୟ କୌଣସି ପଦ୍ଧତିକୁ ବୁଝିବାକୁ ନାହାନ୍ତି । ଆମେରିକାବାସୀ ଯେଉଁ ସବୁ ପଦରେ ଅଧିଷ୍ଠିତ—ତାହା ନିଯୁକ୍ତି ବା ନିର୍ବାଚିତ ଯାହା ହେଉନା କାହିଁକି, ତାହାର ଗୁରୁତ୍ୱର ଖୁବ ସମ୍ଭବ ନ୍ୟାୟ ସଙ୍ଗତ କାରଣ ଏହିଠାରେହିଁ ରହିଛି । ସରକାରୀ କାର୍ଯ୍ୟର ଅଧିକାଂଶ ପୁରସ୍କାର ହେଲା ସମ୍ମାନ । ଅର୍ଥାଗମ ଏଠାରେ ଗୌଣ । ଅଧିକାଂଶ ଲୋକ ବ୍ୟବସାୟ ବା ଅନ୍ୟାନ୍ୟ ପେଶାରେ ଯାହା ପାଇଥାନ୍ତି, ତାହା ତୁଳନାରେ ଏଠାରେ କିଛି ପାଆନ୍ତି ନାହିଁ । ସେଇଥି ପାଇଁ ସରକାରୀ ପଦରେ ଯେଉଁ ଗୌରବ ଅଛି, ତାକୁ ରକ୍ଷିବାକୁ ହେଲେ ସତ୍ ଲୋକଙ୍କର ଏକାନ୍ତ ପ୍ରୟୋଜନ । ଯେଉଁସବୁ ନାରୀ ବା ପୁରୁଷ ଜନ କଲ୍ୟାଣ କାର୍ଯ୍ୟରେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନଙ୍କ କର୍ମର ପୁରସ୍କାର ହେଲା ଏହି ସମ୍ମାନ । ଅଧିକନ୍ତୁ ଏଥିରେ ପଦ ମର୍ଯ୍ୟାଦା ବୋଧ ବି ରହିଛି ।

ମୋର ସାପ୍ତାହିକ ସାମାଜିକ ପଞ୍ଜିକାର ଗୋଟିଏ ଖସଡ଼ା ଏଠାରେ ଉଦ୍ଧୃତ କରୁଅଛି । ଆପଣମାନେ ଏଥିରେ ଦେଖିବାକୁ ପାଇବେ ଯେ ପ୍ରେସିଡେଣ୍ଟ ପତ୍ନୀ କେବେହେଲେ ଅଳସ ଭାବରେ ସମୟ କଟାନ୍ତି ନାହିଁ ।

ସୋମବାର

ଦିବା ୧ ଘଟିକା— ମିସେସ ହାଲଙ୍କ ସହିତ ମଧ୍ୟାହ୍ନ ଭୋଜନ

ଦିବା ୪ ଘଟିକା— ୧୭୫ ଜଣ ଅତିଥିଙ୍କ ପାଇଁ ଚାର ବ୍ୟବସ୍ଥା

" ୫ ୨୩୬ ଜଣ ଅତିଥିଙ୍କର ଚା'ର ବ୍ୟବସ୍ଥା

ମଙ୍ଗଳବାର

ଦିବା ୧ ଘଟିକା— ମିସେସ ଗାର୍ଣ୍ଣୀରଙ୍କ ସହିତ ମଧ୍ୟାହ୍ନ ଭୋଜନ

" ୪ " ଡେଲଓ୍ୱାର ଡେମୋକ୍ରାଟିକ କ୍ଲବର ସଭ୍ୟମାନଙ୍କର ଚା'ର ବ୍ୟବସ୍ଥା ।

" ୪।୩୦ ବିଦେଶୀ ଦୂତାବାସସ୍ଥ ଉର୍ଦ୍ଧ୍ୱତନ କର୍ମଚାରୀମାନଙ୍କର ସ୍ତ୍ରୀମାନଙ୍କ ପାଇଁ ଚା'ର ବ୍ୟବସ୍ଥା ।

ରାତ୍ରି ୭ ଘଟିକା— ୨୨ ଜଣଙ୍କ ପାଇଁ ନୈଶ ଭୋଜନ

" ୯ " ବିଚାରକମାନଙ୍କ ପାଇଁ ସମ୍ବର୍ଦ୍ଧନା ।

ବୁଧବାର

ଅପରାହ୍ନ ୪ ଘଟିକା— ୨୬୬ ଜଣ ଅତିଥିଙ୍କ ପାଇଁ ଚା'ର ବ୍ୟବସ୍ଥା ।

" ୫ " ୨୫୬ ଜଣ ଅତିଥିଙ୍କର ଚା' ।

ଗୁରୁବାର

ଦିବା ୧ ଘଟିକା— ୫୨ ଜଣ ଅତିଥିଙ୍କ ପାଇଁ ମଧ୍ୟାହ୍ନ ସାମାଜିକ ଭୋଜନ ।

" ୪ " ଶୈଶବରେ ପକ୍ଷାଘାତ ରୋଗୀମାନଙ୍କର ମହିଳା ବିଭାଗ ପାଇଁ ଚା' ।

" ୫ " ମହିଳା ବିଭାଗର କାର୍ଯ୍ୟନିର୍ବାହିକା ସମିତିପାଇଁ ଚା ।

ଶୁକ୍ରବାର

ଦିବା ୧ ଘଟିକା— ମନ୍ତ୍ରୀ ସଭାର ସଦସ୍ୟମାନଙ୍କର ସ୍ତ୍ରୀମାନଙ୍କପାଇଁ ଚା

ରାତ୍ରି ୮ ଘଟିକା— ବିଦେଶୀ ଦୂତାବାସସ୍ଥ ଉର୍ଦ୍ଧ୍ୱତନ କର୍ମଚାରୀ ମାନଙ୍କର ନୈଶ ଭୋଜନ—ଅତିଥି ୯୪ ଜଣ । ଭୋଜନ ପରେ ସଙ୍ଗୀତ ଆସରରେ ୧୯୬ ଜଣ ଅତିରିକ୍ତ ଅତିଥି ।

ମୁଁ ଏଠାରେ ହ୍ୱାଇଟ ହାଉସରେ ଯେଉଁମାନେ ସ୍ୱାଭାବିକ ଭାବରେ ଆସନ୍ତି ଯେଉଁମାନେ ଚା', ମଧ୍ୟାହ୍ନ ଓ ନୈଶ ଭୋଜନ ଓ ଅପରାହ୍ନ ଜଳଖିଆ ଖାଇଲାବେଳେ ଯୋଗ ଦିଅନ୍ତି, ସେମାନଙ୍କ ସଂଖ୍ୟାର ଗୋଟିଏ ମୋଟା ମୋଟି ହିସାବ ଏଠାରେ ଦେଉଅଛି ।

୧୯୩୯ ମସିହାରେ—

୪,୭୨୯ ଜଣ ଭୋଜନରେ ଯୋଗ ଦେଇଥିଲେ ।

୩୨୩ ଜଣ ଥିଲେ ଘର ଅତିଥି

୯,୨୧୧ ଜଣ ଚା' ଖାଇବାକୁ ଆସିଥିଲେ

୧୪,୦୫୬ ଜଣଙ୍କୁ ଚାରେ ସମ୍ବର୍ଦ୍ଧନା କରାହୁଏ, ସେମାନେ ସମସ୍ତେ ଜଳଯୋଗ କରିଥିଲେ ।

୧,୩୨୦,୩୦୦ ଲୋକ ସରକାରୀ ପ୍ରାସାଦ ଦେଖିବାକୁ ଆସନ୍ତି ସେମାନଙ୍କ ମଧ୍ୟରୁ ୨୬୪, ୫୬୦ ଜଣ ପ୍ରାସାଦର ଭୋଜନାଗାର, ଲାଲଘର, ନୀଳଘର ଓ ସବୁଜ ଘର ଦେଖିବାର ଅନୁମତି ପତ୍ର ସ୍ୱ ସ୍ୱ ଇଲାକା କଂଗ୍ରେସ ସଦସ୍ୟମାନଙ୍କ ଠାରୁ ସଂଗ୍ରହ କରି ଆଣିଥିଲେ ।

ଇଷ୍ଟାର ଏଗ୍ ରୋଲିଂ ସମୟରେ ଗଡ଼ପଡ଼ତା ୫୩୧୮୦ ଜଣ ଲୋକ ଆସିଥିଲେ । ବିବରଣୀରୁ ଦେଖାଯାଏ ୧୮୦ ପିଲା ହଜି ଯାଆନ୍ତି ଓ ସେମାନଙ୍କର ଅନୁସନ୍ଧାନ ମଧ୍ୟ ପରେ ମିଳେ । ଦୁଇଜଣ ଲୋକଙ୍କୁ ଅସ୍ଥାୟୀ ହାସ ପାତାଳକୁ ପଠାହୁଏ । ୬ ଜଣ ମୂର୍ଚ୍ଛା ହୁଅନ୍ତି । ୨୨ ଜଣଙ୍କୁ ସେମାନଙ୍କର ସାମାନ୍ୟ ଆଘାତ ପାଇଁ ଚିକିତ୍ସା କରାହୁଏ । ଉତ୍ସବର ପରଦିନ ଶେଷ ଆଡକୁ ହ୍ୱାଇଟ ହାଉସର ପ୍ରାଙ୍ଗଣ ସମୂହ ସତେ ଯେପରି ଗୋଟିଏ କଂସେଇ ଖାନା ହୋଇ ଯାଇଥାନ୍ତା । କିନ୍ତୁ ଯେଉଁମାନଙ୍କ ଉପରେ ତଦାରଖେବାର ଭାରଥିଲା, ସେମାନଙ୍କୁ ଧନ୍ୟବାଦ—ପରଦିନ ସକାଳ ୯ଟା ମଧ୍ୟରେ ପ୍ରାଙ୍ଗଣ ସମୂହ ପୂର୍ବ ପରି ପରିଷ୍କାର, ସୁସଜ୍ଜିତ ଓ ସୁନ୍ଦର ହୋଇ ଉଠିଥିଲା ।

ମୋର ପ୍ରତ୍ୟୁଷର କାର୍ଯ୍ୟ ଥିଲା ମିସେସ ନେସ୍‌ବିଟ୍, ମିସେସ ହେଲମ ଓ ଦାରେଓ୍ୟାନମାନଙ୍କ ସହିତ ସାକ୍ଷାତ କରିବା । ଏ ସବୁ କାମସାରିଲା ପରେ

ବୈଠକ ଖାନାରେ ଆସି ମିସ୍ ଟମସନ୍ ହାଜର ହେଉଥିଲେ । ସେ ଏଥର ତାଙ୍କ କାମ କରିବାକୁ ଆସୁଥିଲେ । ଆମେ ସବୁ ଚିଠି ପତ୍ର ବ୍ୟାପାରରେ ଗୋଟିଏ ନୂଆ ଉପାୟ ଉଦ୍ଭାବନ କଲୁ । ଚିଠି ପତ୍ର ବିଷୟରେ କର୍ତ୍ତା ରାଲ୍ଫ୍ ମ୍ୟାଗିର ସହିତ କଥାବାର୍ତ୍ତା କରି ଜାଣି ପାରିଲୁ ଯେ ଆଗ ଶାସନ ବ୍ୟବସ୍ଥାର ବେଶୀ ଭାଗ ଚିଠି ପତ୍ରର ଉତ୍ତର ଯାଉଥିଲା ଧରାବନ୍ଧା ଗତ ମଧ୍ୟରେ । ପ୍ରେସିଡେଣ୍ଟ କ୍ଲିଭ୍‌ଲ୍ୟାଣ୍ଡଙ୍କ ଶାସନ ସମୟରେ ଚିଠି ପତ୍ରର ଯେଉଁ ସବୁ ଗତ ବ୍ୟବହୃତ ହେଉଥିଲା, ସେସବୁର ନକଲ ମଧ୍ୟ ତାଙ୍କ ପାଖରେ ଥିଲା । କୌଣସି ପତ୍ର ଲେଖକ ଗୀର୍ଜ୍ଜ ମେଳା ପାଇଁ ରୁମାଲ ବା ଧଳାହାତ ଯାହା ପଠାନ୍ତୁ ନା କାହିଁକ, ସେ ସବୁ ଲେଖା ହେଉଥିଲା:— ( ସ୍ତ୍ରୀ ଓ ପୁରୁଷ ଯାହା ହେଉନ୍ତୁ ନା କାହିଁକ ) ମିସେସ...ଏପରି ଅନେକ ଅନୁରୋଧ ପାଇଛନ୍ତି ଆପଣଙ୍କ ଅନୁରୋଧ ରକ୍ଷିବା ଅସମ୍ଭବ ।...

ମୁଁ ଠିକ କଲି ସମୟ ଯେତେବେଳେ ଗୁରୁତ୍ୱ ପୂର୍ଣ୍ଣ ଓ ଅନୁରୋଧରେ ଏତେ ପରିମାଣରେ ହତାଶ ଦେଖା ଯାଉଅଛି ଯେ ଏପରି ଭାବରେ ଅମୁକ ନମ୍ବରର ଗତରେ ପକାଇ ଚିଠିର ଉତ୍ତର ଦେବା ଅଚଳ ହୋଇ ପଡ଼ିଲା । ମିସ ଟମସନ ଚିଠି ପଢୁଥିଲେ । ସେ ଯେଉଁଗୁଡ଼ି ପାରୁଥିଲେ, ନିଜେ ଉତ୍ତର ଦେଉଥିଲେ । ସେ ଗୁଡ଼ି କେତେବେଳେବା ତାଙ୍କ ନିଜର କେତେ-ବେଳେ ବା ମୋ ସ୍ୱାକ୍ଷରରେ ଯାଉଥିଲା । ଯେଉଁ ଚିଠି ଗୁଡ଼ିକ ମୋ ନିକଟରେ ବିଶେଷ ଆବଶ୍ୟକୀୟ ବୋଲି ମନେ ହେବ, ଓ ଯେଉଁ ଗୁଡ଼ିକର ଉତ୍ତର ସେ ଦେଇ ପାରିବେ ନାହିଁ ବୋଲି ମନେ କରୁଥିଲେ ସେ ଗୁଡ଼ିକ ବଛା ହୋଇ ମୋ ପାଇଁ ଗୋଟିଏ ସ୍ୱତନ୍ତ୍ର ଟୋକେଇରେ ରଖା ହେଉଥିଲା । ମିସ ଟମସନ ଘରକୁ ଯିବା ଆଗରୁ କିମ୍ବା ସେ ଯେବେ କୌଣସି ସନ୍ଧ୍ୟାରେ ରହୁଥିଲେ, ତେବେ ଭୋଜନ ଆଗରୁ ଯେଉଁ ଚିଠି ଗୁଡ଼ିକୁ ମୋତେ ସହି କରିବାକୁ ପଡ଼ିବ, ସେ ଗୁଡ଼ିକୁ ମୋ ଟେବୁଲ ଉପରେ ରଖି ଦେଉଥିଲେ । ମୋର ବ୍ୟକ୍ତିଗତ ଚିଠି ଗୁଡ଼ିକ ନ ଖୋଲି ମୋତେ ଦେବାର ପ୍ରଥା ଥିଲା । ମୋ ସାଙ୍ଗରେ ଅନେକ ଦିନ ଥିଲେ ବୋଲି ମିସ ଟମସନ ମୋର ପରିବାରର

ଓ ବନ୍ଧୁବାନ୍ଧବ ମାନଙ୍କର ହାତ ଲେଖା ଚିହ୍ନୁଥିଲେ ଓ ଠିକଣା ମଧ୍ୟ ଜାଣୁଥିଲେ ।

ସାମାଜିକ ଓ ପାରିବାରିକ ଉତ୍ସବରେ ଅତିଥିମାନଙ୍କ ପ୍ରତି କର୍ତ୍ତବ୍ୟ ସମ୍ପାଦନ କରି ମୁଁ ଚିଠିରେ ସନ୍ଧି କରିବାକୁ ବସେ । ଯେଉଁ ସବୁ ଚିଠି ଆଗରୁ ଦେଖି ନଥାଏ, ସେ ଗୁଡ଼ିକ ପଢ଼େ । ଅନ୍ୟ ସବୁ ଚିଠି ସମ୍ପର୍କରେ ଉତ୍ତର ପ୍ରସଙ୍ଗରେ ମୁଁ ଯାହା ସବୁ କହିବାକୁ ଚାହେଁ, ସେ ସବୁର ସାରାଂଶ ଲିପିବଦ୍ଧ କରି ରଖେ । ଯେଉଁ ସବୁ ଉତ୍ତର ମୁହଁରେ କହିବାକୁ ହେବ, ସେ ସବୁ ଗୋଟିଏ ପାଖକୁ ଆଡ଼େଇ ଦେଇ ରଖେ । ଏଥିରେ ବହୁ ରାତି ଯାଏ ମୋତେ ବ୍ୟସ୍ତ ରହିବାକୁ ପଡ଼ୁଥିଲା । ଶୋଇବାକୁ ଯିବା ଆଗରୁ ମୁଁ ଟୋକେଇ ସବୁକୁ ମିସ ଟମସନଙ୍କ ଟେବୁଲ ଉପରେ ରଖି ଦେଇ ଆସେ । ଯଦ୍ୱାରା ସେ ସକାଳୁ ଆସି ସେ ସବୁ କାମ ଆରମ୍ଭ କରି ପାରିବେ ।

ଯେଉଁ ଚିଠି ଗୁଡ଼ିକୁ ମୋତେ ଲେଖାଇବାକୁ ପଡ଼ିବ, ମିସ ଟମସନ ଓ ମୁଁ ମୋ ଟେବୁଲ ଉପରେ ଦୁଇଜଣ ଯାକ ସେ ସବୁକୁ ନେଇ ବସୁ । ମୋର ବ୍ୟକ୍ତିଗତ କାମ ଯଥା ସମ୍ବାଦ ପତ୍ର ସ୍ତମ୍ଭରେ ପ୍ରବନ୍ଧ, ବହି ବା ବେତାରର ପାଣ୍ଡୁଲିପି ଏପରି ସବୁ ଲେଖା ସମୂହ ବଳକା ସମୟରେ କରିବାର ପ୍ରଥା ଥିଲା ।

ଏଇଥି ପାଇଁ ମୁଁ ମିସଟମସନଙ୍କୁ ମୋର ବ୍ୟକ୍ତିଗତ ପାଣ୍ଠିରୁ ଦରମା ଦେଇଥିଲି ସେଇଥିପାଇଁ ମୋର ସମ୍ପୂର୍ଣ୍ଣ ବ୍ୟକ୍ତିଗତ କାମରେ ସରକାରୀ ସମୟବ୍ୟୟ ହେଉଛି ବୋଲି ଏପରି ପ୍ରଶ୍ନ କେବେହେଲେ ଉଠୁ ନଥିଲା । ଏହି ସବୁ କାମ ଶନି ରବିବାର ଦିନ କରା ହେଉଥିଲା ।

ଦେଶର ଅବସ୍ଥା ଟିକିଏ ଉନ୍ନତ ଆଡ଼କୁ ଆସିବାରୁ ମୋର ଚିଠି ସଂଖ୍ୟା କମିଗଲା । କିନ୍ତୁ ଯେତେବେଳେ ଜନସାଧାରଣ ବିଭ୍ରାନ୍ତ ହୋଇ ଉଠନ୍ତି, ସେତେବେଳେ ଚିଠିର ସଂଖ୍ୟା ବଢ଼ି ଯାଉଥିଲା । ୧୯୩୩ ମସିହା ମାର୍ଚ୍ଚ ମାସ ଠାରୁ ବର୍ଷ ଶେଷ ପର୍ଯ୍ୟନ୍ତ ମୁଁ ୩୦୧,୦୦୦ ଖଣ୍ଡ ଚିଠି ପାଇଥିଲି । ୧୯୪୦ ମସିହା ନିର୍ବାଚନ ଆଗ ବର୍ଷ ୧୦୦,୦୦୦ ଖଣ୍ଡ ଚିଠି ମୋ ପାଖକୁ ଆସିଥିଲା ।

ବୃତ୍ତିସ୍ଥ ଅର ନିର୍ବାଚନ ଅଭିଯାନ ଖସଡ଼ା ପ୍ରସ୍ତୁତ ଏବଂ ଶାସନ ସମ୍ବନ୍ଧୀୟ ଆଇନ କାନୁନହିଁ ପତ୍ର ସଂଖ୍ୟା ବୃଦ୍ଧିର ଅନ୍ୟତମ କାରଣ । ମହାଯୁଦ୍ଧ ସମୟରେ ଚିଠିର ସଂଖ୍ୟା କହିଲେ ନ ସରେ । କିନ୍ତୁ ସଙ୍କଟର ବର୍ଷ ସମୂହରେ ଏ ସବୁଥିଲା ସ୍ୱତନ୍ତ୍ର ଭିନ୍ନ ଧରଣର । ପ୍ରତ୍ୟେକ ଅନୁରୋଧ, ଉପରୋଧ— ମୋ ଦ୍ୱାରା ସମସ୍ତ ଅଭାବ ପୂରଣ ହୋଇପାରେ ବୋଲି ପତ୍ର ଲେଖକ ମାନଙ୍କର ଦୃଢ଼ ଧାରଣା ମୋତେ ଉଦ୍‌ବିଗ୍ନ କରି ପକାଉଥିଲା । ବହୁ ଅନୁରୋଧ ମଧ୍ୟରେ ଆନ୍ତରିକତା ନଥିଲା । ମୁଁ ପ୍ରଥମରୁ ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଏପରି ସବୁଲୋକ ଖୋଜି ବାହାର କରିବାକୁ ଚେଷ୍ଟା କରୁଥିଲି ଯେଉଁମାନଙ୍କ ପାଖକୁ ମୁଁ ହତାଶାର ସ୍ୱର ଭରା ପତ୍ର ସମୂହର କଥା ଜଣାଇ ସାହାଯ୍ୟ ମାଗି ପାରେ । ବହୁ ସ୍ଥାନରେ ମୋର ଚିହ୍ନା ପରିଚୟ ଥିଲା । ସାହାଯ୍ୟ ଭଣ୍ଡାର ସୃଷ୍ଟି ନ ହେବା ଯାଏ, ମୁଁ ସେମାନଙ୍କ ଠାରେ ଏମାନଙ୍କର ଦୁର୍ଦ୍ଦଶା କଥା ଜଣାଇବାକୁ ଲାଗିଲି ।

ଏହି ବାର ବର୍ଷ ମଧ୍ୟରେ ମୋ ଦପ୍ତରରେ ଏପରି କୌଣସି ଭୁଲକଥା ମୋ ମନେ ପଡ଼ୁ ନାହିଁ, ଯେଉଁଥି ପାଇଁ ମୋ ସ୍ୱାମୀ ଓ ମୁଁ ବିବ୍ରତ ହୋଇ ପଡ଼ିଛୁ । ଏଇଥି ପାଇଁ ସମସ୍ତ କାର୍ଯ୍ୟ ଖୁବ୍ ସତର୍କତାର ସହିତ ସମ୍ପାଦିତ ହୋଇଛି । ଏହି ସତର୍କତାକୁ ମୁଁ ଧନ୍ୟବାଦ ନ ଦେଇ ରହି ପାରୁନାହିଁ ।

ଖବର କାଗଜ ସମ୍ବାଦ ଦାତା ମାନଙ୍କ ଉପରେ ମୋର ଯେଉଁ ବିଶ୍ୱାସ ଦେଖା ଦେଲା, ସେଥିପାଇଁ ଦାୟୀ ହେଲେ ଲୁଇସ ହୋ । ନିଜର ପେଶା ପ୍ରତି ତାଙ୍କର ଥିଲା ଅଗାଧ ଶ୍ରଦ୍ଧା ଏବଂ ସେ ବାରମ୍ବାର ମୋତେ ବୁଝାଉଥିଲେ ଯେ ଏହି ଖବର କାଗଜର ମନୁଷ୍ୟଗଣ ହେଉଛନ୍ତି ଜଗତର ଶ୍ରେଷ୍ଠ ସମ୍ମାନାର୍ହ ବ୍ୟକ୍ତି । ମୁଁ ମଧ୍ୟ ଧରି ନେଇଥିଲି ଯେ ପୁରୁଷମାନଙ୍କ ଭଳି ସ୍ତ୍ରୀ ଲୋକ ମାନଙ୍କର ମଧ୍ୟ ମନ ଅଛି ଓ ମୋର ଏହି ବିଶ୍ୱାସ ଖୁବ୍ କମ୍ ହିଁ ଭଙ୍ଗ ହୋଇଛି । ଯେତେବେଳେ ଅତୀତ ବର୍ଷ ସମୂହ ପ୍ରତି ଦୃଷ୍ଟିପାତକରେ, ମୋର ମନେ ହୁଏ, ମହିଳା ସମ୍ବାଦ ଦାତା ମାନଙ୍କୁ ଧନ୍ୟବାଦ ଦେବା ପାଇଁ ପ୍ରଚୁର ଉପାଦାନ ପାଇଛି । ପ୍ରତି ସାମ୍ବାଦିକ ବୈଠକ ସମୂହ ଥିଲା ବୃଦ୍ଧିର

ପୀଠସ୍ଥଳ । ମୋର ମନେ ହୁଏ, ମୋର କିମ୍ବା ସେମାନଙ୍କର କାହାର ପକ୍ଷରେ ହେଲେ ବିଷୟଟି ଲଘୁ ନଥିଲା । ଉଦାହରଣ ସ୍ୱରୂପ କୁହାଯାଇ ପାରେ, ସେମାନେ ଯେତେବେଳେ ଜାଣିବାକୁ ଚେଷ୍ଟା କଲେ ଯେ ଫ୍ରାଙ୍କଲିନ୍ ତୃତୀୟ ଥର ପାଇଁ ପ୍ରେସିଡେଣ୍ଟ ପଦ ପ୍ରାର୍ଥୀ ହେବେ କି ନାହିଁ । ଯେତେ ପ୍ରକାର ଫନ୍ଦି ଫିକରଥିଲା, ସବୁକୁ ସେ ବ୍ୟବହାର କରୁଥିଲେ । ସେମାନଙ୍କ ମଧ୍ୟରୁ କେହି ହୁଏତ ପଚାରୁଥିଲେ ପରବର୍ତ୍ତି ଶୀତକାଳର ସାମାଜିକ ଅନୁଷ୍ଠାନ କ'ଣ ଏଥର ପରି ହେବ ନଚୁବା ଏତେ ଛବି ହାଇଡ୍ ପାର୍କରେ ଟଙ୍ଗାଇବେ । ମୁଁ ସାଧାରଣତ ପ୍ରଶ୍ନ ଗୁଡ଼ିକର ତାତ୍ପର୍ଯ୍ୟ ବେଶ୍ ଭଲ ଭାବରେ ବୁଝି ପାରୁଥିଲି । ସେଇଥି ପାଇଁ ସିଧା ସଳଖ ଉତ୍ତର ଦେବାକୁ କୁଣ୍ଠା ବୋଧ କରୁଥିଲି । କାରଣ ଲୁଇସ୍ ହୋ, ମୋତେ ଏ ବିଷୟରେ ଭଲ ଭାବରେ ପ୍ରସ୍ତୁତ କରି ଦେଉଥିଲେ । ମୋର ସାମ୍ବାଦିକ ବୈଠକ ମାନଙ୍କରେ ମୁଁ ଓ ମୋ ସ୍ୱାମୀ ଅନ୍ୟମାନଙ୍କ ଭଳି ଉଦ୍‌ବିଘ୍ନ ହୋଇ ଉଠିନାହୁଁ ବା ମସ୍ତକ ପରିଚାଳନା କରି ନାହୁଁ । ମୋର ଧାରଣା ମୁଁ ଓ ସାମ୍ବାଦିକଗଣ ପରସ୍ପର ଶ୍ରଦ୍ଧା ଭକ୍ତି କରୁଥିଲୁ । ହେଲେ ମୋର ଥରେ ଅଧେ ତ୍ରୁଟି ବିଚ୍ୟୁତି ଯେ ନ ହେଉଥିଲା ଏପରି ନୁହେଁ ।

ଥରେ ଜଣେ ମହିଳା ସମ୍ବାଦ ଦାତା କାଗଜରେ ମୋ କଥା ଉଲ୍ଲେଖ କରି ଯେତେବେଳେ କହିଲେ ଯେ ମୁଁ କୁଆଡ଼େ କହିଛି ଯେ ଆମ୍ଭେମାନେ ମହାଯୁଦ୍ଧରେ ଜୟଲାଭ କରି ଇଉରୋପକୁ ଆଉ ଖାଦ୍ୟ ଯୋଗାଇ ପାରିବୁ ନାହିଁ । ସେତେବେଳେ ପ୍ରକୃତରେ ମୁଁ ଖୁବ୍ ବିରକ୍ତ ହୋଇଥିଲି । ଇଉରୋପକୁ ଯଥେଷ୍ଟ ଖାଦ୍ୟ ଯୋଗାଇବା ପାଇଁ ଆମ୍ଭମାନଙ୍କର ଯଥେଷ୍ଟ ଖାଦ୍ୟ ଉତ୍ପାଦନ କରିବାର କ୍ଷମତା ଅଛି କି ନା, ଏ ସମ୍ବନ୍ଧରେ ପ୍ରଶ୍ନ ହେବାରୁ ମୁଁ କହିଥିଲି ଯେ ଆମ୍ଭମାନଙ୍କର ଏକୁଟିଆ ଖାଦ୍ୟ ଯୋଗାଇବା ସମ୍ଭବପର ନୁହେଁ । ମୁଁ ଦେଖାଇ ଦେଲି, କ୍ୟାନାଡା, ଦକ୍ଷିଣ ଆମେରିକା ଓ ଅନ୍ୟାନ୍ୟ ଦେଶରୁ କି ପରିମାଣରେ ଖାଦ୍ୟ ଆସିପାରେ । ସୌଭାଗ୍ୟକ୍ରମେ ଏହି ସବୁ ବୈଠକରେ ମୁଁ ଯାହା କହୁଥିଲି ମିସ୍ ଟମସନ୍ ସବୁବେଳେ ସେ

ସବୁକୁ ଟିପି ରଖନ୍ତି । ଜଣେ ମହିଳା ସମ୍ବାଦ ଦାତା ସର୍ଟ ହ୍ୟାଣ୍ଡରେ ବିବରଣୀ ସବୁ ଲିପିବଦ୍ଧ କରି ରଖୁଥିଲେ । ଆଉଜଣେ ଦ୍ରୁତ ଲେଖିବି ପାରୁଥିଲେ । ଆମ୍ଭେମାନେ ଏପରି ଭାବରେ ବିବରଣୀର ଯଥାଯଥ ରିପୋର୍ଟ ସମୂହ ରଖୁଥିଲୁ ! ଏହି ସବୁ ବିବରଣୀରୁ ମୋର ବକ୍ତବ୍ୟ ବେଶ୍ ପରିଷ୍କୃତ ହୋଇ ଉଠୁଥିଲା । ହ୍ୱାଇଟ୍ ହାଉସରେ ମହିଳା ସମ୍ବାଦ ସଂଘ ନାମକ ଗୋଟିଏ ପ୍ରତିଷ୍ଠାନ ଥାଏ । ତାହାର ନିଜସ୍ୱ ନିୟମ ମଧ୍ୟ ଥିଲା । ମୁଁ ସେଇଥି ପାଇଁ ଅନେକ ବିଷୟ ସେମାନଙ୍କ ହାତରେ ଛାଡ଼ି ଦେଇ ପାରୁଥିଲି ଯେ ସେମାନେ ଯେପରି ଏହାକୁ ଦେଖନ୍ତି । ଫଳରେ ଭବିଷ୍ୟତକୁ ଯେପରି ଖୁବ୍ ସତର୍କତା ଅବଲମ୍ବନ କରାହୁଏ । ପୁନର୍ବାର ଅସାବଧାନତା ପ୍ରସୂତ ବା ଇଚ୍ଛାକୃତ ଲେଖା ଦ୍ୱାରା ଯେପରି କେହି ଖଣ୍ଡନ କରି ନ ପାରନ୍ତି ସେ ବ୍ୟବସ୍ଥା ମଧ୍ୟ କରା ହେଉଥିଲା ।

ମୁଁ ଓ୍ୟାଶିଂଟନକୁ ଯେଉଁ ସାମ୍ବାଦିକ ବୈଠକ ଡାକୁଥିଲି, ସେଥିରୁ ମୋର ମନେ ହେଉଥିଲା ଯେ ଯେଉଁଠାକୁ ଯିବି, ସେହିଠାରେହିଁ ମୋର ବୈଠକ ଡାକିବା ଉଚିତ ହେବ । ତାହାର ଫଳରେ ବକ୍ତୃତା ଦେଇ ବୁଲିବା ସମୟରେ ବା ଦେଶର ବିଭିନ୍ନ ଅଞ୍ଚଳକୁ ଗଲେ, ସଙ୍ଗେ ସଙ୍ଗେ ସାମ୍ବାଦିକ ମାନଙ୍କ ପାଖରୁ ଦେଖା କରିବା ପାଇଁ ଡାକରା ଆସୁଥିଲା । ଓ୍ୟାଶିଂଟନର ବାହାରେ ଏହିସବୁ ସମ୍ବାଦ ବୈଠକ ସମୂହରେ ସ୍ଥାନୀୟ ପୁରୁଷ ଓ ମହିଳା ସମ୍ବାଦ ଦାତାଗଣ ଏକତ୍ରିତ ହେଉଥିଲେ । ଅଧିକନ୍ତୁ ଯେଉଁମାନେ ସାମ୍ବାଦିକତା ଶିଖୁଥିଲେ, ଏପରି ସବୁ ଛାତ୍ର ଛାତ୍ରୀ ମାନଙ୍କ ପାଖରୁ ଯୋଗ ଦେବାପାଇଁ ଆବେଦନ ଆସୁଥିଲା ।

ଦେଶର ନାନା ସ୍ଥାନରେ ଭ୍ରମଣ କରିବା ସମୟରେ ଏହି ବୈଠକ ସମ୍ପର୍କରେ କେତେ ଗୁଡ଼ିଏ ମଜାର ଘଟଣା ଘଟିଥିଲା । ଥରେ ମଧ୍ୟ ପଶ୍ଚିମର ଗୋଟିଏ ସହରରେ ଭୋର ସାଢ଼େ ଛଅଟାରେ ମୁଁ ଓ ମିସ୍ ଟମସନ୍ ଯାଇ ପହଞ୍ଚୁ । ଷ୍ଟେଶନରେ ଆମ୍ଭ ମାନଙ୍କ ସହିତ ଜଣେ ମହିଳା ସମ୍ବାଦ ଦାତାଙ୍କର ସାକ୍ଷାତ୍ ହୁଏ । ସେ ଆମ୍ଭମାନଙ୍କ ସାଙ୍ଗରେ ହୋଟେଲକୁ

ଆସନ୍ତି । ସେ ମୋତେ ଏପରି କେତେ ଗୁଡ଼ାଏ ପ୍ରଶ୍ନ କରନ୍ତି ଯାହାର ଉତ୍ତର ଖୁସୀ ହୋଇ ଦେଇଥିଲି । ହୋଟେଲ ଘରେ ପହଞ୍ଚି ମିସ୍ ଟମସନ୍ ତାଙ୍କୁ ଜଣାଇଥିଲେ ଯେ ସାଢ଼େ ନଅଟା ସମୟରେ ପୁନର୍ବାର ବସୁଥିବା ସାମ୍ବାଦିକ ବୈଠକରେ ତାଙ୍କ ସହିତ ମୋର ଦେଖା ହେବ । ମହିଳା ଜଣକ ଜଣାଇଲେ ଯେ ତାଙ୍କ ସମ୍ପାଦକଙ୍କର ଆଦେଶ ସେ ଯେପରି ଦିନ-ବେଳା ମିସେସ୍ ରୁଜ୍‌ଭେଲ୍‌ଟଙ୍କୁ ନିମିଷକ ପାଇଁ ଚକ୍ଷୁର ଅନ୍ତରାଳ ନ କରନ୍ତି । ସେ ଏହାହିଁ ଭାବୁଥିଲେ ଯେ ଆମ୍ଭମାନଙ୍କ ସହିତ ସେ କାମରା ମଧ୍ୟକୁ ଆସିବେ । ମିସ୍ ଟମସନଙ୍କର ମତ ଥିଲା ଅନ୍ୟ ପ୍ରକାରର । କର୍ମବ୍ୟସ୍ତ ଦିନର ପରିଶ୍ରମ ପାଇଁ ପ୍ରସ୍ତୁତ ହେବାକୁ ହେଲେ ମୋର ଅବସର ଦରକାର, ଏ କଥା ସେ ଜାଣିଥିଲେ । ସେଇଥି ପାଇଁ ଯେତେବେଳେ ଦରଜା ବନ୍ଦ କରାହୁଏ, ମହିଳା ଜଣକ ଘର ବାହାରେ ରହି ଯାଆନ୍ତି । ସନ୍ଧ୍ୟା ବେଳକୁ ମୋ ସମ୍ବନ୍ଧରେ ଖବର କାଗଜରେ ଗୋଟିଏ ସୁନ୍ଦର ପ୍ରବନ୍ଧ ବାହାରେ । ତାହାର ଶେଷ ପଂକ୍ତିଟି ହେଲା—"ମିସେସ୍ ରୁଜଭେଲ୍‌ଟଙ୍କ ସହିତ ତାଙ୍କର ସେକ୍ରେଟାରୀ ଅଛନ୍ତି, ସେ ସାଦା ଧରଣର ପୋଷାକ ପିନ୍ଧିଥିବା ଜଣେ ଅର୍ଦ୍ଧ ବୟସ୍କର ସ୍ତ୍ରୀ ଲୋକ । ସେ ଭାରି କ୍ଷଣକୋପୀ ।" ହ୍ୱାଇଟ୍ ହାଉସର ପ୍ରଥମ ଦିନ ସମୂହରେ ବେଶ୍ ଗୋଛେଇ ଗୋଛାଇ ବସିବା ପାଇଁ ପ୍ରସ୍ତୁତ ହୋଇ ରହେ । ଘର କରଣା କାମ ମୋର ଯେତେଟିକିଏ ଦେଖିବା ଦରକାର, ତାର ବନ୍ଦୋବସ୍ତ ବି କରି ଦେଇଥିଲି । ମୋ ସ୍ୱାମୀ ସେତେ-ବେଳେ ବ୍ୟସ୍ତ ହୋଇ ରହୁଥାନ୍ତି ସମସ୍ୟା ପରେ ସମସ୍ୟା ସମାଧାନ କରିବାରେ ।

ମୋ ମନେହୁଏ, ଏଥିରେ ତାଙ୍କ ପକ୍ଷରେ ଖୁବ୍ ଭଲହିଁ ହୋଇଥିଲା । ନୂତନ ଉତ୍ସାହରେ ସେ ଅନୁପ୍ରାଣିତ ହୋଇ ଉଠିଥିଲେ । ସିଦ୍ଧାନ୍ତ ପରେ ସିଦ୍ଧାନ୍ତ କରା ହେଉଥାଏ, ନୂଆ ଭାବଧାରାର ପରୀକ୍ଷା ମଧ୍ୟ ଚାଲୁଥାଏ । ମନୁଷ୍ୟ କାମରେ ଲାଗିଗଲେ, ଆଉ ବ୍ୟବସାୟୀଗଣ ସାଧାରଣତଃ ସରକାରୀ ସାହାଯ୍ୟକୁ ଘୃଣାହିଁ କରୁଥାନ୍ତି । ସେମାନେ ବି ସରକାରଙ୍କ ନିକଟରେ

ସେମାନଙ୍କର ସମସ୍ୟା ସମାଧାନ ପାଇଁ ଅନୁରୋଧ ଜଣାଉଥିଲେ । ଯେଉଁ ନିର୍ଦ୍ଦେଶ ଦିଆ ହେଉଥିଲା, ତାହାକୁ ସେମାନେ ସ୍ୱେଚ୍ଛାରେ ମାନି ନେଉଥିଲେ ।

ମୋ ପାଖରେ ସେତେବେଳକାର ଶାସନ ବ୍ୟବସ୍ଥା ଯାହା ସବୁଠୁ ଭଲ ଲାଗୁଥିଲା ତାହା ହେଉଛି ସମସ୍ତେ ପରସ୍ପର ପ୍ରତି ସହଯୋଗୀତା କରିବା ପାଇଁ ପ୍ରସ୍ତୁତ ହୋଇ ରହିଛନ୍ତି । ଅବଶ୍ୟ ଅବସ୍ଥା ଟିକିଏ ପରିବର୍ତ୍ତନ ହେବାରୁ ମନର ଭାବର ମଧ୍ୟ ପରିବର୍ତ୍ତନ ଘଟିଲା । ହେଲେ ମୂଳତଃ ଏହି ସହଯୋଗୀତାର ମନୋଭାବହିଁ ଆମ୍ଭମାନଙ୍କୁ ସଙ୍କଟରୁ ଉଦ୍ଧାର କରିଥିଲା । କଂଗ୍ରେସ ତାର ଐତିହ୍ୟ ଅନୁସାରେ କେବେହେଲେ ଗୋଟିଏ ପ୍ରେସିଡେଣ୍ଟଙ୍କ ସହିତ ବେଶୀଦିନ କାମ କରି ପାରିନାହିଁ । ରାଜନୈତିକ ଦଳ ହିସାବରେ ତାଙ୍କ ଦଳର ସଂଖ୍ୟା ଗରିଷ୍ଠ ହେଲେହେଁ, ତାହା ସମ୍ଭବପର ହୋଇନାହିଁ—କଂଗ୍ରେସହିଁ ପ୍ରଥମ କେଇ ମାସରେ ପ୍ରେସିଡେଣ୍ଟଙ୍କୁ ନାନା ପ୍ରକାରର କ୍ଷମତା ଦେବା ସଙ୍ଗେ ସଙ୍ଗେ ଏପରି ସବୁ ଆଇନ ପ୍ରଣୟନ କରନ୍ତି ଯାହା ଖୁବ୍ ସଙ୍କଟ ସମୟ ଛଡ଼ା କେବେବେଳେ ହେଲେ ପାସ କରିବା ସମ୍ଭବପର ହୋଇନାହିଁ ।

୧୯୩୩ ମସିହାରେ ପ୍ରେସିଡେଣ୍ଟ ନିର୍ବାଚନ ପରେ ଦଳେ ଅତିଥି ଦେଖା କରିବାକୁ ଆସନ୍ତି । ନୈଶ ଭୋଜନ ପରେ ଫ୍ରାଂକଲିନ୍ ସେମାନଙ୍କୁ ନେଇ ଉପର ପଢ଼ିବା ଘରକୁ ଚାଲି ଯାଆନ୍ତି । ସେଠାକୁ ଯାଇ ଯେପରି କେହି ସେଠାରେ ବାଧା ନ ଦିଅନ୍ତି, ଏହାହିଁ ସେ ଚାହୁଁଥିଲେ । ଅବଶ୍ୟ ମୋତେ ଯେତେବେଳେ ସେଠାକୁ ଯିବାକୁ କହୁଥିଲେ, ସେ କଥା ଥିଲା ସ୍ୱତନ୍ତ୍ର ।

ଦୁଇଟି ସହଜ ଓ ସରଳ କାରଣରୁ ପ୍ରଥମ ବର୍ଷରେ ଏହି ସବୁ ବିଶିଷ୍ଟ ଲୋକମାନଙ୍କୁ ହ୍ୱାଇଟ ହାଉସକୁ ନିମନ୍ତ୍ରଣ କରିହୁଏ । ଗୋଟିଏ କାରଣ ହେଲା ପୃଥିବୀର ଅର୍ଥନୈତିକ ଓ ରାଜନୈତିକ ପରିସ୍ଥିତି ଦ୍ୱାରା ଅନ୍ୟାନ୍ୟ ଦେଶର ନେତାମାନଙ୍କ ସହିତ ଯୋଗାଯୋଗ ରଖିବା । ମୋ ସ୍ୱାମୀଙ୍କ ପକ୍ଷରେ ସେତେବେଳେ ଏହା ଦରକାର ହୋଇ ପଡ଼ିଥିଲା ।

ଆଉ ଗୋଟିଏ କାରଣ ହେଲା ଏହିଯେ ସେ ମହାଦେଶ ଓ ବିଦେଶ ସଙ୍ଗରେ ସଦ୍ଭାବ ସୃଷ୍ଟି କରିବା ପାଇଁ ନୂଆ କରି ଯୋଗାଯୋଗ ସ୍ଥାପନ କରିବାକୁ ଚାହୁଁଥିଲେ ।

୧୯୩୭ ମସିହାରେ ଆମ୍ଭମାନଙ୍କର ପ୍ରଧାନ ଅତିଥିମାନଙ୍କ ମଧ୍ୟରେ ଥିଲେ, ର୍ୟାମଜେ ମ୍ୟାକ୍‌ଡୋନାଲ୍‌ଡ୍ । ସେ ତାଙ୍କର କନ୍ୟା ଇସାବେଲଙ୍କୁ ନେଇ ଆସିଥିଲେ । ତାଙ୍କ ସହିତ ସାକ୍ଷାତ୍ କରି ଖୁବ୍ ଆନନ୍ଦ ପାଇଥିଲୁ । ହେଲେ ସାଙ୍ଗେ ସାଙ୍ଗେ ତାଙ୍କ ଭିତରେ କ୍ଳାନ୍ତିର ଆଭାଷ ପାଏ । ସେ ଯେପରି ଅନ୍ୟମନସ୍କ ହୋଇ ପଡୁଥିଲେ । ତାଙ୍କ ସ୍ତ୍ରୀ-ଙ୍କର ମୃତ୍ୟୁରେ ସେ ଗଭୀର ବ୍ୟଥା ପାଇଥିଲେ । ବିଦାୟ ସମୟରେ ସେ ସ୍ତ୍ରୀଙ୍କ ସମ୍ବନ୍ଧରେ ଯେଉଁ ଶ୍ରେଷ୍ଠ ପୁସ୍ତିକା ଖଣ୍ଡିକ ଲେଖିଥିଲେ, ସେ ଖଣ୍ଡି ମୋତେ ଉପହାର ଦେଇଥିଲେ ।

ଯେଉଁମାନଙ୍କ ସାଙ୍ଗରେ ଆଗରୁ ଦେଖା ହୋଇ ନାହିଁ ବା ଯେଉଁମାନେ ବହୁ ଦିନରୁ ପରିଚିତ ନୁହନ୍ତି, ଲୁଇଜ ହୋ ତାଙ୍କୁ ପାଖେ ପୂରାଉ ନଥିଲେ । ହେଲେ ତାଙ୍କର ମଧ୍ୟ ଇସାବେଲ ମ୍ୟାକ୍‌ଡୋନାଲ୍‌ଡଙ୍କୁ ଖୁବ୍ ଭଲହିଁ ଲାଗିଥିଲା । ସେ ଘଣ୍ଟା ଘଣ୍ଟା ଧରି ଆଳାପ ଆଲୋଚନା ଚଳାନ୍ତି । ଏହି ପ୍ରଥମ ସାକ୍ଷାତ୍ ପରେ ସେମାନଙ୍କ ମଧ୍ୟରେ ଚିଠି ପତ୍ରର ଆଦାନ ପ୍ରଦାନ ହେଉଥିଲା । ଅନ୍ୟ ଲୋକମାନଙ୍କ ମନ ପରୀକ୍ଷା କରି ଦେଖିବାର କ୍ଷମତା ତାଙ୍କର ଥିଲା ଅସୀମ । ଏଥିରୁ ତାହା ସ୍ପଷ୍ଟ ଜଣା ପଡେ । କାରଣ ସାମାନ୍ୟ ପରିଚୟରେ ଅଧିକାଂଶ ଲୋକହିଁ ଲୁଇଜ ହୋଙ୍କର ଚରିତ୍ରଗତ ଗୁଣର ସନ୍ଧାନ ପାଇ ପାରୁ ନଥିଲେ । କାରଣ ସେ ବାସ୍ତବିକ ମନ ବଦଳାଇ ଦେବାର ପ୍ରକୃତ ଲୋକ ବୋଲି କେହି ସହଜରେ ବୁଝି ପାରୁ ନଥିଲେ । କେଇ ବର୍ଷ ଆଗରୁ ଇସାବେଲ ତାଙ୍କ ଦେଶର ପାର୍ଲିୟାମେଣ୍ଟର ସଭ୍ୟ ଥିଲେ । ଜନସାଧାରଣଙ୍କ ଉପରେ ତାଙ୍କର ପ୍ରଭାବ ଅତ୍ୟନ୍ତ ବେଶୀ । ଆମ୍ଭେମାନେ ସେତେବେଳେ ବୁଝି ପାରିଥିଲୁ ଯେ ସେ ଦିନେନା ଦିନେ ହେଲେ ଜଣେ ବଡ ନେତ୍ରୀ ହୋଇ ଉଠିବେ ।

ମୋ ମନେ ହୁଏ ଫ୍ରାଙ୍କଲିନ ସେତେବେଳେ ବିଶ୍ୱାସ କରୁଥିଲେ, ପୃଥିବୀରେ ଇଂରାଜି ଭାଷାଭାଷୀ ଜାତିମାନଙ୍କ ମଧ୍ୟରେ ପରସ୍ପର ଭାବର ଆଦାନ ପ୍ରଦାନ ହେବା ଦରକାର । ତାଙ୍କର ସେହି ଅର୍ଥନୈତିକ ସଙ୍କଟରେ ହେଉ ବା ସାମରିକ ସଙ୍କଟରେ ହେଉ । ସଙ୍କଟ ପରେ ସାମରିକ ପରିସ୍ଥିତି ଦେଖା-ଦେଇଥିଲା । ଏହାର ଅର୍ଥ ଏହି ନୁହେଁ ଯେ ସେ ଏହି ସବୁ ଦେଶର ନୀତି ସବୁବେଳେ ସମର୍ଥନ କରୁଥିଲେ । କିନ୍ତୁ ସେ ବୁଝି ପାରିଥିଲେ ଯେ ସଦ୍ଭାବ, ସହଯୋଗ ଓ ପରସ୍ପରକୁ ବୁଝିବାକୁ ପ୍ରୟୋଜନ ଆମ୍ଭମାନଙ୍କର ଅଛି ।

ପ୍ରଥମ ବର୍ଷ ବସନ୍ତରେ, କ୍ୟାନାଡାର ପ୍ରଧାନ ମନ୍ତ୍ରୀ ଆମ୍ଭମାନଙ୍କ ସହିତ କିଛି ଦିନ ବସବାସ କରନ୍ତି । ଏହାର ପ୍ରୟୋଜନୀୟତା ମଧ୍ୟ ଥିଲା । ମୋର ସ୍ୱାମୀ ଓ ଗ୍ରେଟ ବ୍ରିଟେନର ପ୍ରଧାନ ମନ୍ତ୍ରୀ ଯଦ୍ୱାରା ସେମାନଙ୍କର ଯେଉଁଠାରେ ସମାନ ସ୍ୱାର୍ଥ, ସେଥିରେ ଯେପରି ସେମାନେ ଏକାଠି ମିଳି ପାରନ୍ତି ତାହାର ଚେଷ୍ଟା ସେ କରୁଥିଲେ ।

ଏହି ସମୟରେ ଫରାସୀ ରାଜ୍ୟାତିଙ୍କ ଏଡ଼ଓ୍ୱାର୍ଡ ହ୍ୟାରିଲଟ ମଧ୍ୟ ଓ୍ୱାଶିଂଟନକୁ ଆସନ୍ତି । ପ୍ରଥମବର୍ଷର ଅତିଥି ମାନଙ୍କର ତାଲିକା ଦେଖି ସେ ପ୍ରତ୍ୟୟ କରି ପାରୁନଥିଲେ । ସେହି ପ୍ରଥମବର୍ଷରେ ଇଟାଲୀୟ ମିସନ, ଜାର୍ମାନ ମିସନ, ଚୀନା ମିସନ ଏପରିକି ଏଣେ ଜାପାନୀରାଷ୍ଟ୍ରଦୂତ ମଧ୍ୟ ଆସିଥିଲେ । ଅନ୍ୟ ବିଶିଷ୍ଟ ଅତିଥି ମାନଙ୍କ ମଧ୍ୟରେ ଥିଲେ ଫିଲି-ପାଇନର ଗଭର୍ଣ୍ଣର ଜେନରାଲ ଓ ଫ୍ରାଙ୍କ୍ ମାରଫୀ । ସେ ପରେ ସୁପ୍ରୀମ କୋର୍ଟର ଜର୍ଜ ହୋଇଥିଲେ । ତାଙ୍କସଙ୍ଗରେ ଆସିଥିଲେ ସେହି ମ୍ୟାନୁୟେଲ କୁଏଜନ ମଧ୍ୟ ।

ନିଉଜିଲାଣ୍ଡର ପ୍ରଧାନ ମନ୍ତ୍ରୀ ସସ୍ତ୍ରୀକ ମଧ୍ୟାହ୍ନ ଭୋଜନକୁ ଆସିଥିଲେ । ମହାମାନ୍ୟ ରାଜକୁମାର ଲିଜଡେସ୍ତାଡେମ୍ଭି ମଧ୍ୟ ଆସିଥିଲେ । ସେ ହେଲେ ଇଥିଓପିଆ ସମ୍ରାଟଙ୍କ ବିଶିଷ୍ଟ ଦୂତ । ସେ ମୋତେ ସମ୍ରାଟଙ୍କର ଖଣ୍ଡେ ଫଟୋ ଓ ଦୁଇଟି ସିଂହର ଚମଡ଼ା ଉପହାର ଦେଇଥିଲେ । ଏହି ଚମଡ଼ା ଗୋଲଘରର ଚଟଣାରେ ବିଛାହୋଇଥିଲା । ମୋ ସ୍ୱାମୀଙ୍କ ପାଖରେ ତାହା-ଥିଲା ଗର୍ବ ଓ ଆନନ୍ଦର ବସ୍ତୁ ।

ସେହି ପ୍ରଥମ ବର୍ଷରେ ପାନାମାର ପ୍ରେସିଡେଣ୍ଟ ମଧ୍ୟ ଦେଖା କରିବାକୁ ଆସନ୍ତି । ଆମ ଗୋଲାର୍ଦ୍ଧରୁ ସେ ଯେ ଏକା ଅତିଥି ଏମନ୍ତ ନୁହେଁ । ମେ ମାସର ପ୍ରଥମ ଆଡ଼କୁ ବ୍ରେଜିଲରୁ ଆଗତ ସମ୍ମାନାର୍ହ ବ୍ୟକ୍ତିଗଣଙ୍କୁ ଗୋଟିଏ ଭୋଜି ଦିଆହୁଏ । ଆର୍ଜେଣ୍ଟିନାରୁ ଆଗତ ଜଣେ ବିଶିଷ୍ଟ ରାଷ୍ଟ୍ରଦୂତଙ୍କୁ ଅଭ୍ୟର୍ଥନା କରୁ । ମେକ୍ସିକୋର ଦୂତ ମଧ୍ୟାହ୍ନ ଭୋଜନକୁ ଆସନ୍ତି । ବ୍ରେଜିଲର ଦୂତ ଦେଶ ପରିଭ୍ରମଣକରି ତାଙ୍କର ଭ୍ରମଣ ବୃତ୍ତାନ୍ତ ଜଣାଇବା ପାଇଁ ଦେଶକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ଫ୍ରାଙ୍କଲିନ୍‌ଙ୍କର ଦୃଢ଼ବିଶ୍ୱାସ ଥିଲା ଯେ ଆମ ଗୋଲାର୍ଦ୍ଧର ପ୍ରତିବେଶୀମାନଙ୍କୁ ଚିହ୍ନିବାକୁ ପଡ଼ିବ, ଜାଣିବାକୁ ହେବ । ସେମାନଙ୍କ ସହିତ ସହଯୋଗୀତାକରି ଚାଲିବାକୁ ପଡ଼ିବ । ସେମାନେ ଲାଟିନ୍ ଜାତି ହେଲେହେଁ ତାଙ୍କର ମନେ ହେଉଥିଲା ଏପରି ଗୋଟିଏ ସ୍ଥାନ ଅଛି, ଯେଉଁଠାରେ ଆମେ ସବୁ ଏକ । ଫ୍ରାଙ୍କଲିନ୍ ବିଶ୍ୱାସ କରୁଥିଲେ ଯେ ଆମେସବୁ "ବଡ ଭାଇଙ୍କ" ଭଳି ବହୁ ବିଷୟରେ ପ୍ରତିବେଶୀମାନଙ୍କ ଉପରେ କର୍ତ୍ତୃତ୍ୱ କରିବାପାଇଁ ଦାୟୀ । ସେମାନେ ମଧ୍ୟ ତାହା ମାନି ନେଇ ପାରି ନାହାନ୍ତି । ସେଇଥିପାଇଁ ସେମାନଙ୍କ ସହିତ ସଦ୍‌ଭାବ ରଖିବାର ଚେଷ୍ଟା ଆମପକ୍ଷରୁ ହେବା ଉଚିତ । ସୁତରାଂ ସେ ପ୍ରଥମରୁ ବ୍ୟକ୍ତିଗତ ଯୋଗାଯୋଗ ଭିତର ଦେଇ ସତ୍‌ପ୍ରତିବେଶୀନୀତି "Good Neighbour Policy" ଅବଲମ୍ବନ କରନ୍ତି । ପରେ ତାଙ୍କର ଏହିନୀତିର ଗୁରୁତ୍ୱ ଦିନକୁ ଦିନ ବଢ଼ୁଥିଲା ।

୧୯୩୩ ମସିହାର ମାର୍ଚ୍ଚ ପ୍ରଥମ ମହାଯୁଦ୍ଧରୁ ପ୍ରତ୍ୟାଗତ ବୀର ସୈନିକ ମାନଙ୍କର ବୋନାସ ପାଇବାର ଅଭିଯାନ ସୁରୁ ହୁଏ । ମୁଁ ଉତ୍କଣ୍ଠିତ ହୋଇ ଥାଏ—କାଳେ ଏହି ଭୀଷଣ ପରିଣାମକୁ ଆଉ ଅଟକାଇ ରଖା ଯାଇ ପାରିବନାହିଁ । ଯାହାହେଉ, ପରେ ଲୁଇସ୍ ହୋଉଙ୍କ ସହିତ ପରିସ୍ଥିତି ସମ୍ବନ୍ଧରେ ଆଲୋଚନାକରି ଫ୍ରାଙ୍କ୍‌ଲିନ୍ ସଙ୍ଗେ ସଙ୍ଗେ ଠିକ୍ କରନ୍ତି ଯେ ଯୁଦ୍ଧପ୍ରତ୍ୟାଗତ ବୀର ସୈନିକ ମାନଙ୍କୁ ଗୋଟିଏ ପୁରୁଣା

ବ୍ୟାରକରେ ରଖାଯିବ ଏବଂ ସାହାଯ୍ୟ ବିଭାଗରୁ ସେମାନଙ୍କୁ ଖାଦ୍ୟ ସରବରାହ କରାହେବ । ଲୁଇସ୍ ସେମାନଙ୍କ ସହିତ ଆଳାପ ଆଲୋଚନାରେ ବହୁ ସମୟ କଟାନ୍ତି । ସେମାନେ ସରକାରୀ ବକ୍ତୃତାଗାରରେ ସଭା-କରନ୍ତି । ଯେଉଁମାନଙ୍କର ଶୁଣିବା ଦରକାର, କଂଗ୍ରେସର ସେହିସବୁ ସଦସ୍ୟ ତାଙ୍କର ଆବେଦନ ଶୁଣିଲେ । ଫଳରେ ସମସ୍ତ ବିଷୟ ସୁଶୃଙ୍ଖଳା ମଧ୍ୟରେ ସୁ ମୀମାଂସିତ ହୁଏ ।

ଯଦିଓ ଲୁଇସ୍ ମୋତେ ପ୍ରତି ଅପରାହ୍ନରେ ତାଙ୍କ ସାଙ୍ଗରେ ନେଇ ବୁଲିବାକୁ ଯିବାକୁ ଅନୁରୋଧ କରନ୍ତି, ତଥାପି ଦିନେ ବିସ୍ମିତ ହୋଇ ପଡ଼ିଲି । ଯେତେବେଳେ ସେ ଜାଣିଲେ ଯେ ଯୁଦ୍ଧ ପ୍ରତ୍ୟାଗତ ସୈନ୍ୟ ଶିବିରକୁ ତାଙ୍କୁ ନେଇଯିବାକୁ ହେବ । ବ୍ୟାରକଟି ଥିଲା ପୋଟୋମ୍ୟାକ ସହର ନିକଟରେ । ଯିବାକୁ ବେଶୀ ସମୟ ଲାଗେ ନାହିଁ । ସେହିଠାରେ ଉପସ୍ଥିତ ହୋଇ ସେ କହିଲେ, ସେ ଗାଡ଼ିରେ ବସି ରହିବେ ଓ ମୋତେ ବୁଲି ବୁଲି ଯୁଦ୍ଧ ଫେରନ୍ତା ସୈନ୍ୟମାନଙ୍କର ଅବସ୍ଥା ଅନୁସନ୍ଧାନ କରିବାକୁ ପଡ଼ିବ । କିଛି ଦ୍ୱିଧା ସହକାରେ ମୁଁ ଗାଡ଼ିରୁ ଓହ୍ଲାଏ । ପରେ ଯେଉଁଠାରେ ବହୁ ଲୋକ ଖାଦ୍ୟପାଇଁ ଧାଡ଼ିହୋଇ ଠିଆ ହୋଇଥିଲେ, ସେଠାରେ ଯାଇ ଉପସ୍ଥିତ ହୁଏ । ସେମାନେ ମୋ ଆଡ଼କୁ କୌତୁହଳପୂର୍ଣ୍ଣ ଦୃଷ୍ଟିରେ ଅନାଇଥିଲେ । ଜଣେ ମୋର ନାମ କ'ଣ ବୋଲି ପଚାରିଲା । ଆହୁରି ମଧ୍ୟ ମୋର କ'ଣ ଆବଶ୍ୟକ ବୋଲି ପଚାରିବାକୁ ଛାଡ଼ିଲା ନାହିଁ । ମୁଁ ଯେତେବେଳେ କହିଲି ଯେ ସେମାନେ କପରି ଅଛନ୍ତି, ତାହା ଦେଖିବାକୁ ଆସିଛି ବୋଲି, ସେଇଠୁ ସେମାନେ ସେମାନଙ୍କ ସହିତ ଦଣ୍ଡାୟମାନ ହେବାକୁ ଆଦେଶ ଦିଅନ୍ତି ।

ପାତ୍ର ସମୂହ ଖାଦ୍ୟରେ ପୂର୍ଣ୍ଣ ହେବାରୁ ମୁଁ ସେମାନଙ୍କ ସହିତ ବସି ଭୋଜନ କରିବାକୁ ଯାଏ । ସେମାନଙ୍କୁ କେତୋଟି କଥା କହିବା ପାଇଁ ସେମାନେ ମୋତେ ଡାକ ଦିଅନ୍ତି । ମନେ ପଡ଼େ, ମୁଁ ସେମାନଙ୍କ ନିକଟକୁ ୧୯୧୯ ମସିହାରେ ଯେଉଁ ଯୁଦ୍ଧ ସୀମାନ୍ତକୁ ଯାଇଥିଲି, ସେହି କଥାହିଁ ଉଲ୍ଲେଖ

କରିଥିଲି । ସେମାନେ ଏଥର ମୋତେ ପୁରୁଣା ଯୁଦ୍ଧର ସଙ୍ଗୀତ ଶୁଣାଇ-ଥିଲେ, ପରେ ମୋତେ ଅନ୍ୟ ଘର ଗୁଡ଼ିକୁ ଦେଖାଇବା ପାଇଁ ନେଇ ଯାଆନ୍ତି । ଅବଶେଷରେ ହସ୍‌ପିଟାଲକୁ ଯାଏ । ଏଇଟା ସେମାନଙ୍କ ପାଇଁ ପ୍ରସ୍ତୁତ କରି ହୋଇଥିଲା । ମୋର ଯେତେଦୂର ମନେହୁଏ, ମୁଁ ଘଣ୍ଟାଏଖଣ୍ଡ ସେଠାରେ ଥିଲି । ତାପରେ ଗାଡ଼ିକୁ ଉଠି ଚାଲିଆସେ । ସମସ୍ତେ ବିଦାୟ ସୂଚକ ପ୍ରତ୍ୟାଭିବାଦନ କରିବାକୁ ଲାଗିଲେ । ମୁଁ ସେମାନଙ୍କର ମଙ୍ଗଳ କାମନା କରେ । ସେମାନେ ଉତ୍ତରରେ ଜଣାଇଲେ ମଙ୍ଗଳ କାମନାହିଁ ବିଦାୟ ସମ୍ଭାଷଣ । କୌଣସି ଉତ୍ତେଜନାର ସୃଷ୍ଟି ସେଠାରେ ହୋଇନାହିଁ । ମୋର ଏକମାତ୍ର ରକ୍ଷୀ ଥିଲେ ଶ୍ରାନ୍ତକ୍ଲାନ୍ତ ଖର୍ବାକୃତି ଭଦ୍ରଲୋକ ଲୁଇସ୍ ହୋ । ସେ ମୋର ଏହିପରି ଭ୍ରମଣ ସମ୍ବନ୍ଧୀୟ ଗାଡ଼ିରେ ଶୋଇ କଟାନ୍ତି । ସେ ଯେପରି ନିର୍ଦ୍ଦେଶ ଦେଇଥିଲେ, ସେପରି ଭାବରେ କାମ କରିଛି ଦେଖି ଲୁଇସ୍ ଖୁସୀ ହୋଇଥିଲେ । ଏହାର ଫଳ ଭଲହିଁ ଫଳିଥିଲା । ପରେ ଅନେକ ଲୋକ ପଚାରନ୍ତି ମୋର ରକ୍ଷୀର କୌଣସି ବନ୍ଦୋବସ୍ତ ଅଛି କି ନା । ମୁଁ ଯେତେବେଳେ ଉତ୍ତର ଦିଏଁ "କିଛିହିଁ ନଥିଲା", ସେମାନେ ଟିକିଏ ଭୟହିଁ ପାଆନ୍ତି । ଆଗରୁ ଲୁଇ ଲୁଇଜ୍ ବ୍ୟାରିକକୁ ଯାଇ ନାହାନ୍ତି । ଭ୍ରମଣ କଲେ ତାଙ୍କର ଶରୀର ଭଲହେବ, ଏହାଭାବି ତାଙ୍କର ଗନ୍ତବ୍ୟ ସ୍ଥାନଟିକୁ ଠିକ କରି ନେଇଥିଲେ ।

ଆମେସବୁ ଯେଉଁମାନେ ଲୁଇଜ୍‌କୁ ଦେଖୁ, ସମସ୍ତେ କହିପାରୁ ସେ କ୍ରମେ ଶେଷହୋଇ ଆସୁଥିଲେ ବୋଲି । ଅଧିକାଂଶ ସମୟ ସେ ନିଜଘରେ କଟାଉଥିଲେ । ଚାରିଆଡ଼େ ସ୍ତୁପୀକୃତ ହୋଇ ରହିଥାଏ ଖବର କାଗଜ । ଶେଷ ପର୍ଯ୍ୟନ୍ତ ତାଙ୍କର ଉପଦେଶ ଥିଲା:—ସତ୍ୟହିଁ ଅମୂଲ୍ୟ ।

୧୯୩୬ ମସିହାର ଅପ୍ରେଲ ୮ତାରିଖରେ ସେ ଓ୍ୱାଶିଂଟନର ନୌ-ହସ୍‌ପିଟାଲରେ ମରିଯାନ୍ତି ।

ମୋ ନିଜଗାଡ଼ି ନିଜେ ଚଲାଇବା, ଗୋଏନ୍ଦା ବିଭାଗରେ ଲୋକମାନଙ୍କ ନିକଟରେ ଗୋଟିଏ ସମସ୍ୟା ହୋଇ ଦେଖା ଦେଇଥିଲା । ପ୍ରଥମରୁ ସେମା-

ନଙ୍କ ସଙ୍ଗରେ ଏହାନେଇ ମୋର ଲଢ଼ାଇ ସୁରୁହୁଏ । ଗୋଏନ୍ଦା ବିଭାଗ ଚାହୁଁଥିଲେ ପ୍ରେସିଡେଣ୍ଟ ପତ୍ନୀଙ୍କ ସହିତ ସବୁବେଳେ ତାଙ୍କର ଜଣେ ଅନୁଚର ରହିବେ । କିନ୍ତୁ ଗୋଏନ୍ଦା ବିଭାଗର ପ୍ରତିନିଧି ବା ସୋଫାର କାହାକୁ ମୁଁ ଚାହୁଁ ନଥିଲି । ମୁଁ କେତେବେଳେ ହେଲେ ଗୋଏନ୍ଦା ବିଭାଗର ସୋଫା ସଙ୍ଗରେ ନେବାକୁ ପ୍ରସ୍ତୁତ ନଥିଲି । ତେବେ ହ୍ୱାଇଟ୍ ହାଉସରେ ଶେଷବର୍ଷ କେତୁଟାରେ ଏତେ ବ୍ୟସ୍ତ ରହୁଥିଲି ଯେ ସେତେବେଳେ ନିଜର ଗାଡ଼ି ଚଳାଇବା କମି ଆସିଥିଲି । ଏପରିକି ମୋଟରରେ ଯାତାୟତ କରିବା କମି ଯାଇଥିଲି । କାମରେ କିମ୍ବା ଏପରି ସଖ୍ କରି ବୁଲିବା କମ୍ ହେଉଥିଲି । ହେଲେ ସର୍ବଦା ମୋର ନିଜର ଗାଡ଼ିଥିଲି । ପ୍ରଥମ ବର୍ଷ କେତୋଟି ନିଜେ ଗାଡ଼ି ଚଳାଇ ବହୁ ମାଇଲ ବୁଲିଛି ।

ଏଠାରେ ଯୁଦ୍ଧ ସମୟରେ ମିସ୍ ଟମ୍ସନଙ୍କ ନିକଟରୁ ଶୁଣିବା ଗୋଟିଏ ଗଳ୍ପ ବେଶ ମନେ ପଡୁଛି । କାଣ୍ଡିମୋରେ ମିଷ୍ଟାର ମାଉରି ମେଉରିକଙ୍କ ସହିତ ଗୋଟିଏ ଜେଲଖାନା ଦେଖିବାକୁ ଯାଏ । ସେ ଯୁଦ୍ଧ ସମୟରେ ଜେଲଖାନାର ଶିଳ୍ପ ପ୍ରତିଷ୍ଠାନ ସମୂହର କର୍ତ୍ତାଥିଲେ । ସେ ମୋତେ କିପରି ଭଙ୍ଗାଫଟା ଜିନିଷର ପୁନରୁଦ୍ଧାର ହେଉଛି, ତାହା ଦେଖାଇବାକୁ ନେଇ ଯାଆନ୍ତି । ମୋର କାର୍ଯ୍ୟସୂଚୀ ମଧ୍ୟରେ ଏହି ଜେଲଖାନା ଭ୍ରମଣର ସମୟତକ ଖାପ ଖୁଆଇ ନେବାପାଇଁ ପ୍ରତ୍ୟୁଷରେ ଫ୍ରାଙ୍କଲିନ୍‌ଙ୍କୁ ସୁପ୍ରଭାତ ଜଣାଇ ମୁଁ ହ୍ୱାଇଟ ହାଉସରୁ ବାହାରି ପଡ଼ିଥିଲି । ଅଫିସ ଯିବା ବାଟରେ ସେ ଟମିକି ଡାକି ପଚାରିଲେ "ମୁଁ କେଉଁଠିକି ଯାଉଛି ।" "ମିଷ୍ଟାର ପ୍ରେସିଡେଣ୍ଟ, ସେ ଜେଲକୁ ଯାଉଛନ୍ତି" ବୋଲି ଟମି ଖବର ଦେଲି । "ସେଥିରେ ମୁଁ ଅବାକ ହେଉନାହିଁ" ଫ୍ରାଙ୍କଲିନ୍ କହିଲେ । କିନ୍ତୁ ଜେଲକୁ କାହିଁକି ଗଲେ । ସବୁବେଳେ ମୁଁ ଓ ମୋ ସ୍ୱାମୀ ଯେତେବେଳେ ବାହାରୁ ଓ ଫେରୁ ସେତେବେଳେ ଆଉ ଯେପରି କେହି ଆସି ବାଧା ନ ଦିଅନ୍ତି, ସେପରି ଭାବରେ ଖାଇବା ବନ୍ଦୋବସ୍ତ ହେଉଥିଲି, ଯଦ୍ୱାରା ଆମ୍ଭେମାନେ ପରସ୍ପର ବାସୀ ହେବା ଆଗରୁ ତାଜା ଖାଦ୍ୟ ବାଛିନେଉଁ

ସେ ମୋତେ ସବୁବେଳେ ଅନେକ ପ୍ରକାରର ପ୍ରଶ୍ନ କରନ୍ତି, କିନ୍ତୁ ଏହି ନିର୍ଦ୍ଦିଷ୍ଟ ପ୍ରଶ୍ନ ଉହାଡ଼ରେ ଗୋଟିଏ ପରିଷ୍କାର ତାତ୍ପର୍ଯ୍ୟ ଫୁଟି ଉଠୁଥିଲା । ଗ୍ୟାସ୍‌ପୀ ଉପଦ୍ୱୀପରୁ ଫେରି ଆସିଲି । ପରେ ସେ ମୋତେ ଉତ୍ତର ସାଗରସ୍ଥ ଦ୍ୱୀପ ଗୁଡ଼ିକର ଜୀବନର ଧାରା କିପରି ବୋଲି ପଚାରି ଥିଲେ । ତାପରେ ଭବିଷ୍ୟତ ଭ୍ରମଣ ସୂଚୀ କିପରି ଭାବରେ ପ୍ରସ୍ତୁତ ହେବ, ତାହାର ଗୋଟିଏ ନିର୍ଦ୍ଦେଶ ଦିଅନ୍ତି । ମୋ ପକ୍ଷରେ ଏହା ଗୋଟିଏ ଚମତ୍କାର ଶିକ୍ଷା ହୁଏ । ଫ୍ରାଙ୍କଲିନ୍ ଗଭର୍ଣ୍ଣର ଥିଲାବେଳେ ସମ୍ବାଦ ଦାତା ହିସାବରେ ତାଙ୍କ ସାଙ୍ଗରେ ବୁଲି ମୁଁ ଅଭିଜ୍ଞତା ଅର୍ଜ୍ଜନ କରିଥିଲି । ବର୍ଷ ଯେତେ ବେଶୀ ହେବାକୁ ଲଗିଲା, ତେତେ ମୁଁ ଭଲ ସମ୍ବାଦ ଦାତା ହୋଇ ଉଠିଲି । ପର୍ଯ୍ୟବେକ୍ଷଣ ଶକ୍ତି ମୋର ବଢ଼ିଯିବାକୁ ଲାଗିଲା । ଏହି ଉନ୍ନତି ମୂଳରେ ଥିଲା ଅସଂଖ୍ୟ ବିଷୟରେ ଫ୍ରାଙ୍କଲିନ୍‌ଙ୍କର ପ୍ରଶ୍ନ ସବୁ । ମୁଁ ନିଜକୁ ସମସ୍ତ ଦେଖାଶୁଣା କରିବାକୁ ବାଧ୍ୟ ବୋଲି ମନେ କଲି । ଗ୍ୟାସପୀରୁ ଫେରି ଆସିଲାକ୍ଷଣି ସେ ମୋତେ ସେ ଅଞ୍ଚଳରେ କିପରି ମାଛ ଧରାହୁଏ ଓ କିପରି ଶିକାର କରାହୁଏ କେବଳ ତାହା ଯେ ପଚାରିଥିଲେ; ତାହା ନୁହେଁ, ସେ ଜାଣିବାକୁ ଚାହିଲେ, ଧୀବରମାନଙ୍କର ଦୈନନ୍ଦିନ ଜୀବନ ପ୍ରଣାଳୀ । ସେମାନେ କଣ ଖିଆପିଆ କରନ୍ତି, କିପରି ବସବାସ କରନ୍ତି, କୃଷି ପ୍ରଣାଳୀ କିପରି, ଘରବାଡ଼ି ସବୁ କିପରି ଭାବରେ ପ୍ରସ୍ତୁତ, ଶିକ୍ଷା ସୁବିଧା ସେମାନେ କିପରି ଭାବରେ ପାଆନ୍ତି, ଗ୍ରାମ୍ୟ ବ୍ୟବସ୍ଥା-ଭଳି ଶିକ୍ଷାଦାୟିତ୍ୱ ଗୀର୍ଜ୍ଜା ଉପରେ କି ନା, ଏଭଳି ନାନା କଥା ପଚାରନ୍ତି । ମୁଁ ମେଇନ କଥା କହିଲାକ୍ଷଣି ସେ ପଚାରିଲେ, ସେଠା ଖମାରରେ ମୁଁ କଅଣ ଦେଖିଛି, କିପରି ସେଠାକାର ଲୋକେ, କିପରି ସେମାନଙ୍କର ଘରବାଡ଼ି, ଆଦିବାସୀମାନେ କିପରି ଅଛନ୍ତି ଓ କେଉଁଠାରୁ ସେମାନେ ଆସିଛନ୍ତି ।

ହେମନ୍ତ ଋତୁରେ କୋମ୍ପେକାର ସମ୍ପ୍ରଦାୟଙ୍କ ଠାରୁ ନିମନ୍ତ୍ରଣ ଆସେ । ପଶ୍ଚିମ ଭାର୍ଜ୍ଜିନିୟାର କୋଇଲା ଖଣି ଅଞ୍ଚଳର ଅବସ୍ଥା ସମ୍ବନ୍ଧରେ ତଦନ୍ତ

କରିବାକୁ ଯିବାକୁ ହେବ। ସେତେବେଳେ ସେମାନେ ସେଠାକାର ଅବସ୍ଥାର ପ୍ରତିକାର କରିବାକୁ ଚେଷ୍ଟା କରୁଥିଲେ। ମୋ ସ୍ୱାମୀ ସେଥିରେ ସମ୍ମତ ହୁଅନ୍ତି। ଏଇଟା ଭଲ କାମହିଁ ହେବ। ସଙ୍ଗେ ୨ ଯିବାର ବ୍ୟବସ୍ଥା ହୋଇଗଲା।

ସେତେବେଳେ ମୋର ଏତେ ଛବି କାଗଜରେ ଛପା ହୋଇନାହିଁ ଯଦ୍ୱାରା ମୋତେ ସହଜରେ ଚିହ୍ନାଯାଏ। ସୁତରାଂ ଜଣେ ସମାନ ସେବା ସହିତ ପଶ୍ଚିମ ଭର୍ଜିନିଆର ମାର୍ଗନ ଟାଉନ ନିକଟରେ ଗୋଟିଏ ଅଞ୍ଚଳରେ ସାରାଦିନ ଘୂରି ବୁଲେ। ମୁଁ କେ ? ସରକାରଙ୍କ ସହିତ ମୋର ଯେ ସମ୍ପର୍କ ଅଛି, ଏକଥା କେହି ଜାଣି ପାରିଲେ ନାହିଁ। ସେଠାକାର ଅବସ୍ଥା ଦେଖି ମୋର ଏହି ବିଶ୍ୱାସ ହେଲା ଯେ, ସାମାନ୍ୟ ନେତୃତ୍ୱ ପାଇଲେ ଏହି ଖଣି ଅଞ୍ଚଳ ସମୂହରେ ଜନସାଧାରଣଙ୍କର ବିପ୍ଳବର ବିକାଶ ନହେଲେ ବି, ଅର୍ଥ ନୀତିକ ବିପର୍ଯ୍ୟୟ ମଧ୍ୟରେ ଯେପରି ପୂର୍ବବର୍ତ୍ତୀ ଦଳ ସମୂହର ସୂତ୍ରପାତ ହୋଇଛି, ଠିକ ସେପରି ଭାବରେ ଗୋଟିଏ ଜନସଂଘ ମଧ୍ୟ ଗଢ଼ି ଉଠିପାରେ। ଅଞ୍ଚଳରେ ଏପରି ଅନେକ ମନୁଷ୍ୟ ଅଛନ୍ତି, ଯେଉଁମାନେ ୩ ରୁ ୫ ବର୍ଷ ଯାଏ ସାହାଯ୍ୟ ଉପରେ ନିର୍ଭର କରି ବଞ୍ଚି ରହିଛନ୍ତି। ସପ୍ତାହରେ ଦିନେ କି ଦୁଇଦିନରୁ ବେଶୀ ଯେ କାମ ମିଳେ, ସେ କଥା ସେମାନେ ସାଧାରଣତଃ ଭୁଲି ଯାଇଛନ୍ତି। ଟେବୁଲରେ ବସି ଆହାର ପାଇବାର କଥା ଶିଶୁ-ମାନଙ୍କର ଧାରଣାତୀତ।

ଖଣି ଅଞ୍ଚଳରେ ଭ୍ରମଣ କରି ମୁଁ ସର୍ବପ୍ରଥମ କୋୟାକାର ମାନଙ୍କର ସମ୍ପର୍କରେ ଆସେ। ସେମାନେ ଯେ କାମ କରୁଛନ୍ତି ତାହା ମୁଁ ଜାଣି ପାରିଲି। କୋୟାକାର ମାନଙ୍କୁ ମୋତେ ଭଲ ଲାଗିଲା। ସେମାନେ ଯେ ମନୁଷ୍ୟଙ୍କୁ ସ୍ୱାବଲମ୍ବନଶୀଳ କରାଇବାରେ ସାହାଯ୍ୟ କରନ୍ତି, ଏ ନୀତି ମୋ ମନକୁ ବେଶ ପାଇଥିଲା। ସେଠାରେ ଚେୟାର ପ୍ରସ୍ତୁତ କାରଖାନା ଥାଏ। ସେଠାରେ ସାମୟିକ ଭାବରେ କାମ ଚଳାଇଲା ଭଳି ଏପରି ସବୁ ଚମତ୍କାର ଯନ୍ତ୍ରପାତି ଥିଲା, ଯାହା ମୁଁ ଆଗରୁ କେବେହେଲେ ଦେଖି ନାହିଁ। ଏଥିରେ

ଝଣି କାର୍ଯ୍ୟ ବ୍ୟତୀତ ଅନ୍ୟ ଶିଳ୍ପ ଶିକ୍ଷା କରିବାର ସୁଯୋଗ ହୋଇଥିଲା । ସେମାନେ ଆଶାରେ ଉଦ୍ଦୀପ୍ତ ହୋଇ ଉଠୁଥିଲେ । ମନୁଷ୍ୟମାନଙ୍କୁ ଗୋଟିଏ କାମ ପ୍ରଥମରୁ ଧରାଇ ଦିଆଯାଉଥିଲା । ସେମାନେ ନିଜ ଅଧ୍ୟବସାୟ ଦ୍ୱାରା ଯେପରି କୌଣସି ଗୋଟିଏ ନୂତନ ଉପାୟ ଆବିଷ୍କାର କରନ୍ତି, ତାର ସୁଯୋଗ ମଧ୍ୟ ପାଉଥିଲେ । ଯେଉଁମାନେ ଚେୟାର ନିର୍ମାଣ କାର୍ଯ୍ୟରେ ବ୍ୟାପୃତ ରହନ୍ତି, ସେମାନେ ସେମାନଙ୍କର ସ୍ୱଳ୍ପ ଯନ୍ତ୍ରପାତି ସାହାଯ୍ୟରେ ଘର କରଣୀ ଜିନିଷମାନ ପ୍ରସ୍ତୁତ କରୁଥିଲେ ।

ଝଣି ପଲ୍ଲୀର ନୀରସ ଜୀବନ କଟାଇବା ବ୍ୟତୀତ ସ୍ତ୍ରୀ ଲୋକଗଣ କୁଟୀର ଶିଳ୍ପର କାମ ଯେ ଜାଣିଥିଲେ, ତାହା ସେମାନେ ଏକାବେଳେ ଭୁଲି ଯାଇଥିଲେ । ସେ ସବୁର ପୁନରୁଦ୍ଧାର ପାଇଁ ସେମାନଙ୍କୁ ଉତ୍ସାହ ଦିଆ ହେଉ ।

ଝଣି ଅଞ୍ଚଳକୁ ଏହାପରେ ବହୁଥର ଯାଇଛି । କିନ୍ତୁ ପ୍ରଥମ ଥରର ଦେଖିବା ପରଠୁ, ଘରେ ଘରେ ଗୃହ ଆବାଦ ପରିକଳ୍ପନା ଚାଲୁଛି । ମର୍ଗାନ ଟାଉନ ପଶ୍ଚିମରେ ଭର୍ଜିନିୟା ବିଶ୍ୱବିଦ୍ୟାଳୟ । ଏହାର ମଧ୍ୟରେ ଝଣି ମଜୁରମାନଙ୍କୁ ସାହାଯ୍ୟ କରିବା ପାଇଁ ଗୋଟିଏ କୋୟାକାର କୃଷି ବ୍ୟବସ୍ଥା ସମିତି ଗଢିଥିଲେ । ଏହି ସମିତିର ଅଭିଜ୍ଞତା ସୃଜ ଟର ସରକାର ବିଶ୍ୱ ବିଦ୍ୟାଳୟର ରୁସ୍‌ଟର୍ ଗ୍ରୀମ୍‌ସଙ୍କର ସାହାଯ୍ୟ ପାଆନ୍ତି ଓ ପୁନର୍ବସତିର ବ୍ୟବସ୍ଥା ମଧ୍ୟ କରନ୍ତି । ଲୁଇସ୍ ହୋ ଗୋଟିଏ ଶ୍ରେଷ୍ଠ ଧରଣର ପରାମର୍ଶ ସଭା ଗଠନ କରନ୍ତି । ମୁଁ ସେଥିରେ କାମ କରେ । ଏହାର କାର୍ଯ୍ୟ ଥିଲା ପରୀକ୍ଷା ମୂଳକ । ଏହାର ଉଦ୍ଦେଶ୍ୟ ହେଲା ସରକାରୀ ସାହାଯ୍ୟରୁ ମନୁଷ୍ୟଙ୍କୁ ମୁକ୍ତ ଦେବା । ସେମାନଙ୍କୁ ନିଜ ନିଜ ଘରବାଡ଼ି କାମରେ ନିୟୋଗ କରିବା । ଫସଲ ପାଇଁ ଭୂମିଦାନ ମଧ୍ୟ ଦେବା ।

ଏହି ଆଶା ଥିଲା ଯେ ପ୍ରତି ବ୍ୟାପାରରେ ଗୋଟିଏ ଲେଖାଁ ଶିଳ୍ପ ପ୍ରତିଷ୍ଠାନ ସୃଷ୍ଟି କରିବାକୁ ହେବ । ଏଥିରେ କିଛି କିଛି ଲୋକ ନିୟମିତ ଭାବରେ କାମ ପାଇବେ । ଶ୍ରେଷ୍ଠ କେଟେଗୁଡ଼ିଏ ଶିଳ୍ପପ୍ରତିଷ୍ଠାନ ଗଠିତ

ହେଲା ସତ, କିନ୍ତୁ ସେ ସବୁ କୌଣସି କାମରେ ଲଗିଲା ନାହିଁ । ଏହି ପୁନର୍ବସତି ପ୍ରଚେଷ୍ଟା ଖୁବ କମ ପରିମାଣରେ କୃତକାର୍ଯ୍ୟ ହୁଏ । ତଥାପି ଏକଥା ଭାବୁବେଳେ ମନେ ହୋଇଛି ଯେ ଏଥିରେ ଯାହା ଉପକାର ହୋଇଛି, ତାହା ଧାରଣାତୀତ । ସେଠାକାର ଅବସ୍ଥା ପ୍ରାୟ ବିପ୍ଳବ ହେବାର ସୂଚନା ଭଳି ହୋଇଥିଲା । ସେଇଥିପାଇଁ ପୁରୁଷ ଓ ନାରୀ ଶ୍ରମିକମାନଙ୍କ ପ୍ରତି ସରକାରଙ୍କର ଯେ ସୁଦୃଷ୍ଟି ଅଛି ଓ ସେମାନଙ୍କ ସମ୍ବନ୍ଧରେ ଉଦ୍‌ବିଗ୍ନ, ଏକଥା ବେଶ ଭଲକରି ବୁଝାଇ ଦେବାର ଆବଶ୍ୟକତା ପଡ଼ିଥିଲା ।

ମୁଁ ଲୋଗ୍ୟାନ ଅଞ୍ଚଳର ଅବସ୍ଥା ସମ୍ବନ୍ଧରେ ଅନେକ ଭୟାବହ ଖବର ପାଇବାକୁ ଲାଗିଲି । ପଶ୍ଚିମ ଭର୍ଜିନିଆର ଏହି ଅଞ୍ଚଳରେ ବର୍ଷ ବର୍ଷ ଧରି ଶ୍ରମିକ ପରିବାର ସମୂହ ତମ୍ବୁ ମଧ୍ୟରେ କଟାଉଥିଲେ । କମ୍ପାନୀର କ୍ୱାର୍ଟର ସମୂହରୁ ଧର୍ମଘଟ ପରେ ସେମାନଙ୍କୁ ଉଚ୍ଛେଦ କରାହୁଏ । ସେଠାକାର ସବୁ ଲୋକମାନେ ସେତେବେଳକୁ ଦାଗୀ ହୋଇଯାଇ ଥାନ୍ତି । ସେମାନେ କେଉଁଠାରେ ହେଲେ କାମ ପାଉ ନଥିଲେ । ଓୟେଷ୍ଟ ଭର୍ଜିନିଆ ସରକାର ବେକାରମାନଙ୍କ ପାଇଁ ଯେଉଁ ସାମାନ୍ୟ ବୃତ୍ତିର ବ୍ୟବସ୍ଥା କରିଥିଲେ, ତାଙ୍କାରି ଉପରେ ନିର୍ଭର କରି ସେମାନେ କୌଣସି ରକମରେ ବଞ୍ଚି ରହିଥାନ୍ତି ।

ମୁଁ ମହିଳା ଟ୍ରେଡ଼୍‌ଇଉନିୟନ ସମିତି ମାର୍ଫତରେ ବହୁ ବର୍ଷଧରି ଯତ୍‌ସାମାନ୍ୟ ସାହାଯ୍ୟ ସେହି ଅଞ୍ଚଳରେ ଦେଇ ଆସୁଥିଲି । କିନ୍ତୁ ସେଠାକାର ଅବସ୍ଥା ଯେ କିପରି, ଥରେହେଲେ ଦେଖିବାକୁ ଯାଇନାହିଁ । ଶୁଣିବାକୁ ପାଇଲି ତମ୍ବୁ ସବୁ ଜୀର୍ଣ୍ଣ ହୋଇ ଯାଇଛି । ରୋଗର ପ୍ରାଦୁର୍ଭାବ ଦେଖା ଦେଇଛି । ଚିକିତ୍ସାର କୌଣସି ସୁବନ୍ଦୋବସ୍ତ ନାହିଁ । ଅବଶେଷରେ ମୁଁ ଓ ମିସେସ୍ ଲିଓନାର୍ଡ ଏଲମହାର୍ଷ୍ଟ ପିଲା ପିଲାଙ୍କ ପାଇଁ ଗୋଟିଏ ଚିକିତ୍ସା କେନ୍ଦ୍ର ଖୋଲୁ । ଯେତେବେଳେ ମୋର ସ୍ୱାମୀଙ୍କୁ ଏହି ଅବସ୍ଥା କଥା ଜଣାଏ, ସେ ମୋତେ ହେରି ହବକିନ୍‌ସଙ୍କ ସହିତ ଆଳାପ କରି ଯାହା କିଛି ଦରକାର

ସେ ସବୁ ଯେପରି ନିଶ୍ଚିନ୍ତ ଭାବରେ କରାଯାଏ ବୋଲି ଆଦେଶ ଦେଇଥିଲେ । ସେ ମଧ୍ୟ ଜଣାଇଲେ ଯେ ଏସବୁ ପରିବାର ବର୍ଗଙ୍କୁ ବଡ଼ଦିନ ଆଗରୁ ଛମ୍ମୁରୁ ସରାଇ ନେବାକୁ ପଡ଼ିବ । ତାହାହିଁ କରାହେଲା । ଆଉ ଦୁଇବର୍ଷରେ ମୋର ବେତାର ଆସ୍ଥାରୁ ଓ ମିସେସ୍ ଏଲମହାର୍ଷ୍ଟଙ୍କ ଦାକ୍ଷିଣ୍ୟରୁ ଏହି ବହୁବର୍ଷର ଶୋଚନୀୟ ଅବସ୍ଥା ଫଳରୁ ପିଲା ପିଲିଙ୍କର ଯେଉଁ କ୍ଷତି ହୋଇଥିଲା, ତାର ପ୍ରତିକାରର ଚେଷ୍ଟା କରିବାକୁ ଲାଗିଲୁ । ଗୃହ ଓ ଗୃଷ ଆବାଦ ପରିକଳ୍ପନାର ଆରମ୍ଭ ହେଉ ହେଉ ମୁଁ ବହୁ ଲୋକଙ୍କୁ ଧରାଧରି କରି ଦେଖାଇବା ପାଇଁ ନେଇଯାଏ । ପ୍ରଥମ ଆଡୁ ସେଠାକୁ ଗଲାକ୍ଷଣି ପରିକଳ୍ପନାର ଭାରପ୍ରାପ୍ତ ସୁପାରିଣ୍ଟେଣ୍ଡେଣ୍ଟ ମିଷ୍ଟାର ଗ୍ଲେନ୍‌ଓ୍ୟାକଙ୍କର ଘରେ ରହୁଥିଲି । ସେ ଦିନେ ଖଣିର ଫୋରମ୍ୟାନ ଥିଲେ । ସେଇଥିପାଇଁ ସେ ଜାଣୁଥିଲେ କିପରି ଭାବରେ ଖଣିର ମଜ୍‌ଦୁର ଓ ପରିବାରବର୍ଗ ବସବାସ କରନ୍ତି । ମର୍ଗାନ ଟାଉନ ନିକଟରେ ଯେଉଁ ଗୃହ ଗୃଷବାସର ପରିକଳ୍ପନା ସୁରୁ ହୋଇଥିଲା, ତାହାର ନାମକରଣ କରାହୁଏ ଆର୍ଥାରଡେଲ୍ । ଆଖ ପାଖ ଖଣିର ପଲ୍ଲୀ ଅଞ୍ଚଳରୁ ସେଥିରେ ଲୋକ ନିଆହୁଏ ।

ଆର୍ଥାରଡେଲକୁ ଯେଉଁମାନେ ପ୍ରଥମରେ ଯାଆନ୍ତି, ସେମାନଙ୍କ ମଧ୍ୟରେ ଥିଲେ ବାର୍ଣ୍ଣାଡ୍ ଏମ, ବାରୁଚ୍ । ସେ ମୋତେ ପ୍ରଥମରେ ସେଠାରେ ସ୍କୁଲ ପ୍ରତିଷ୍ଠା କରିବାରେ ସାହାଯ୍ୟ କରନ୍ତି । ପରିକଳ୍ପନା ସମ୍ବନ୍ଧରେ ତାଙ୍କର ଉତ୍ସାହ ଥିଲା ଯଥେଷ୍ଟ । ଏପରିକି ମୋ ସଙ୍ଗ ବ୍ୟତୀତ ସେ ସେଠାକୁ କେଇଥର ଯାଇଥିଲେ । ମୋର ସବୁ ସମୟରେ ମନେ ହେଉଥିଲା ପରି-କଳ୍ପନା ଭିତରେ ଆସି ପିଲାପିଲିଗଣ ୬ମାସରେ ଯେଉଁ ଉନ୍ନତି କରିଛନ୍ତି, ସେଥିରେ ମୋ ପରି ସେ ବି ଖୁସୀ ହୋଇଛନ୍ତି ।

କୌଣସି କାର୍ଯ୍ୟ ଆରମ୍ଭ ସମୟରୁ ଭବିଷ୍ୟତରେ କେଉଁ ଫଳାଫଳ ଦେଖାଦେବ, ସେ କଥା ପ୍ରଥମରେ ହିଁ ଏତିଃ ଜଣା ପଡ଼େନାହିଁ । ଏ ଅଞ୍ଚଳକୁ ବହୁବାର ଆସିବା, ବକ୍ତୃତା ଦେଇ ବୁଲିବା, ଯୁଦ୍ଧ ସମୟରେ ହଂସପାତାଳକୁ ବେଗୀ ଦେଖିଯିବା ପ୍ରଭୃତି ବ୍ୟାପାର ମୋ ପକ୍ଷରେ ଯେପରି ଗୁରୁତ୍ୱପୂର୍ଣ୍ଣ

ନଥିଲି । ସାଧାରଣତଃ ହାଂସପାତାଳର ବିଛଣାରୁ କୌଣସି ଜଣେ ତରୁଣ ଚିତ୍କାର କରି ଉଠିଥିଲି "ମୁଁ ଅମୁକ ସ୍ଥାନର ଅଧିବାସୀ", ଆମ ସ୍କୁଲର ଉଦ୍‌ବୋଧନୀ ବକ୍ତୃତା ଆପଣ ଦେଇଥିଲେ । ସେତେବେଳେ ମୁଁ ତାହାର ବାସଭୂମି ସମ୍ବନ୍ଧରେ ଭାବିବାକୁ ଲାଗେ । କାରଣ, ତାର ସ୍ୱୀୟ ଘରଠାରୁ ବହୁଦୂରରେ, ହାଂସପାତାଳସ୍ଥ ଶଯ୍ୟାଶାୟୀ ଏକାକୀ ବାଳକଟିର ପୃଥିବୀକୁ ନିଶ୍ଚୟ ଭଲ ଲାଗିବ, ଯେବେ କେହି ତାଙ୍କୁ ସେ ସମୟରେ ତାର ବାସ ଭୂମିର ପାର୍କ ଓ ଅଦାଲତ କଥା କହେ ।

ମୁଁ, ମୋର ଅସଲ କଥା ଛାଡ଼ି ବହୁ ଦୂରକୁ ଚାଲି ଆସିଛି, କିନ୍ତୁ ମୁଁ ଯାହା କହିଲି, ସେଥିରୁ ଆର୍ଥାରଡେଲ ଓ ଅନ୍ୟାନ୍ୟ ଗୃହ ପରିକଳ୍ପନାରେ ମୋର ଅତ୍ୟାଧିକ ଉତ୍ସାହ ଦେଖାଇବାର କାରଣ ସ୍ପଷ୍ଟତର ହୋଇ ଉଠିବ । ମୁଁ ସେଠାରେ ଯେଉଁସବୁ ମନୁଷ୍ୟ ଓ ଦ୍ରବ୍ୟାଦି ଦେଖିଛି, ତାହା ଭୁଲିବାର ନୁହେଁ ।

ଯଥା:—ଠିକ୍ ବଡ଼ଦିନ ଆଗରୁ ଆସିଥିବା ପ୍ରଥମ ଦଳଟି ଯେତେବେଳେ ସେମାନଙ୍କ ଗୃହାଭ୍ୟନ୍ତରରେ ପ୍ରବେଶ କରନ୍ତି, ମୁଁ ଗୋଟିଏ ସଦ୍ୟ ପ୍ରସୂତାଙ୍କୁ ଦେଖିବାକୁ ଯାଏ । ମୋର ଯେତେଦୂର ମନେହୁଏ ତାଙ୍କର ଅନ୍ୟ ଶ୍ରେଷ୍ଠ ଝିଅ ଦୁଇଟିର ବୟସ ଯଥାକ୍ରମେ ୪ ଓ ୭ ହେବ । ସଦ୍ୟଜାତ ଶିଶୁଟି ପୁଅ । ମୁଁ ତାଙ୍କ ପାଖକୁ ଯାଇ କହିଲି ଯେ ବଡ଼ଦିନରେ ସେ ହୁଏତ ସେପରି ଉତ୍ସବ କରି ପାରିବ ନାହିଁ । ସେ ମୋ ଆଡ଼କୁ ଦୃଷ୍ଟି ନିକ୍ଷେପ କଲି । ମୁଖମଣ୍ଡଳ ସାଙ୍ଗେ ସାଙ୍ଗେ ଝଲସି ଉଠିଲା । ସେ କହିଲି ଏଥରକାର ବଡ଼ଦିନ ଖୁବ ଭଲ ହେବ । ଜାଣନ୍ତି, ଗତ ବର୍ଷର ବଡ଼ଦିନ କିପରି କାଟିଛୁ । ଆମେସବୁ ଯେଉଁ ଘରେ ଥିଲୁ, ସେଥିରେ ଝରକା ନଥିଲା । କେବଳ କବାଟ ଦେଇ ଆଲୁଅ ଆସୁଥାଏ, ଆମେ ସବୁ ସାହସ କରି ବଡ଼ଦିନ କଥା ପିଲପିଲାଙ୍କ ଆଗରେ କହିନାହୁଁ । କିନ୍ତୁ ଯେତେବେଳେ ବାହାରକୁ ଯାଇ ଫେରିଆସି ସେମାନେ କହିଲେ, "ମା, ଆଜି ନିଶ୍ଚୟ ଗୋଟିଏ ପର୍ବ ଅଛି, ବହୁ ପିଲ୍ଲା ପିଲାଏ ନୂଆ ନୂଆ କଣ୍ଢେଇ ପାଇଛନ୍ତି ।" ଆମେ ବଡ଼ଦିନ ଖେଳି

ଉପଲକ୍ଷରେ ସେମାନଙ୍କୁ ଖାଇବାକୁ ଦେଲି କେତୋଟି ଗାଜର ମାତ୍ର । ଏଥର ସେମାନେ ସମସ୍ତେ ଗୋଟିଏ ଲେଖା କରିନେଇ ପାଇବେ । ଏତଦ୍‌-ବ୍ୟତୀତ ଆମ୍ଭମାନଙ୍କର ନିଜର କୁକୁଡ଼ା ଅଛି, ସେ ସବୁ ଖାଇବୁ । ବଡ଼ ଚମତ୍କାର ହେବ ସେହି କୁକୁଡ଼ା ଭୋଜି ।

ସେଠାରେ ଜଣେ ବୟସ୍କ ଲୋକ ଥିଲେ, ତାଙ୍କୁ ମୋତେ ବେଶ୍ ଭଲ ଲାଗୁଥାଏ । ସେ ବି ଥିଲା ଗୋଟିଏ ସମସ୍ୟା ବିଶେଷ । ତାଙ୍କର ସ୍ତ୍ରୀ ବୃଦ୍ଧା ହୋଇ ଯାଇଥାନ୍ତି । ରୋଗ ବ୍ୟାଧି ଲାଗି ରହିଥାଏ । ତାଙ୍କୁ ଗୃହ ଓ ଘରକରଣା କାମରେ ସାହାଯ୍ୟ କରିବା ପାଇଁ ଏକମାତ୍ର ନାତି ଛଡ଼ା କେହି ନଥିଲେ । ସେ ଥିଲା ଶାସନ ଦପ୍ତରର ଜଣେ ଦରୱାନ । ସେ ଥିଲା ବେଶ୍ ପରିଷ୍କାର ଓ ପରିଚ୍ଛନ୍ନ । ଘର ଦ୍ୱାର ପରିଷ୍କାର ରଖିବାରେ ସେ ଖୁବ ପଟୁଥିଲା । ଶିକ୍ଷିତା ସେବିକାଙ୍କ ଭଳି ସେ ସ୍ତ୍ରୀକୁ ସେବା କରୁଥିଲା । ହିଁ, ସରକାରଙ୍କର ଆର୍ଥିକ ସ୍ୱଚ୍ଛଳତା ନ ହେଲେହିଁ, ମନୁଷ୍ୟତ୍ୱ ମୂଲ୍ୟ ବୋଧର ପୁରସ୍କାର କୁଆଡ଼େ ବା ଯିବ ?

ବହୁବର୍ଷ ପରେ ସାମରିକ ନିରାପତ୍ତା ଆଇନ ପାସହୁଏ । ବ୍ୟକ୍ତି ହିସାବରେ ସେ ଆଇନ ଏ ଅଞ୍ଚଳରେ କିପରି କାର୍ଯ୍ୟକାରୀ ହୋଇଅଛି, ତାହା ମୁଁ ଦେଖିଛି । ଖଣିର ଗୋଟିଏ ଦୁର୍ଘଟଣାରେ କେତେଜଣ ଲୋକ ମରି ଯାଆନ୍ତି । ମୋ ସ୍ୱାମୀ ସେଠାକୁ ଯାଇ ସେମାନେ କ'ଣ କହୁଛନ୍ତି, ତାହା ଜାଣିବାକୁ କହନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଲୋକ ମରିବା ପରେ କାର୍ନେଗୀ ପଦକ, (ବୀରତ୍ୱ ପାଇଁ) ପାଏ । ସେ ଅନ୍ୟ ଲୋକମାନଙ୍କୁ ଉଦ୍ଧାର କରିବା ପାଇଁ ଖଣି ଭିତରକୁ ପୁନର୍ବାର ଓହ୍ଲାଇ ଯାଇଥିଲା । ତାର ବିଧବା ପତ୍ନୀର ପିଲାପିଲି କେଇଟି ଥିଲେ । ସାମାଜିକ ନିରାପତ୍ତା ବୃତ୍ତି ତାକୁ ସ୍ୱଚ୍ଛ-ଳତା ଆଣିଦିଏ । ଆଜି ଜଣେ ବିଧବାଙ୍କ ସହିତ କଥାବାର୍ତ୍ତା କରେ । ତାଙ୍କର ପୁଅ ଝିଅ କରି ତିନୋଟି । ଚତୁର୍ଥଟି ଜନ୍ମହେବା ଉପରେ । ତାଙ୍କୁ ମୁଁ ପଚାରିଲି ସେ କିପରି ଭାବରେ ଚଳାଇବ । ନିଜ ଉପରେ ତାଙ୍କର ପୂର୍ଣ୍ଣ ଆସ୍ଥାଥାଏ । ସେ କହିଲେ ମୋ ସାଙ୍ଗରେ ଭଉଣୀ ଓ ପୁଅ ଝିଅଙ୍କର

ଆସିବାର କଥା । ମୁଁ ପ୍ରତିମାସକୁ ୭୫ ଡଲାର କରି ସାମାଜିକନିରାପତ୍ତା ବୃତ୍ତି ପାଇବି । ମୋ ଘର ଓ ବାଡ଼ି ପାଇଁ ମାସକୁ ୧୫ ଡଲାର ଦେବାକୁ ହୁଏ । ସରକାରଙ୍କ ଠାରୁ ଏହି ବୃତ୍ତି ପାଇଲେ ବାଡ଼ିରେ ପନି ପରିବା ଚାଷ କରିବି ଓ ମୁର୍ଗୀ ପାଳିବି, ସେଥିରେ ମୋର ବେଶ୍ ଖିବରେ ଗୁଜୁରାଣ ମେଣ୍ଟିଯିବ । ଆଗରୁ ହୋଇଥିଲେ ଖଣିର ମାଲିକ କମ୍ପାନୀ କମ୍ ପରିମାଣର ଚେକ ଫେଣ୍ଟେ ଦେଉଥିଲି । ଆଉ ସ୍ୱତନ୍ତ୍ରପର ହେଲେ ସମୟ ସମୟରେ ଶ୍ରମିକଗଣ ଟଙ୍କା ଉଠାଇ ପାରୁଥିଲେ, କିନ୍ତୁ ସରକାରଙ୍କର ଏହି ବୃତ୍ତିଉପରେ ମୋର ପୁଅଟିଏ ସାବାଳକ ହେବା ଯାଏ ମୁଁ ଭରସା କରିପାରେ ।

୧୯୩୩ ମସିହାର ୧୭ ତାରିଖ ନଭେମ୍ବର ମାସରେ ମୋ ସ୍ୱାମୀ ଓ ରୁଷିଆର ରାଷ୍ଟ୍ରଦୂତ ମିଷ୍ଟାର ଲିଟ୍‌ଭିନଫ, ସୋଭିୟେଟ ଇଉନିୟନକୁ ରାଷ୍ଟ୍ର ହିସାବରେ ସ୍ୱୀକାର କରିନେବା ସମ୍ପର୍କରେ କଥାବାର୍ତ୍ତା ଚଳାନ୍ତି । ଫୋନରେ ଦୁଇଦେଶ ମଧ୍ୟରେ କଥାବର୍ତ୍ତା ହେବାରୁ ଖୁବ ଉତ୍ତେଜନା ସୃଷ୍ଟି ହୋଇଥିଲି । ଏହି କଥାବାର୍ତ୍ତା ଚାଲିଥିଲି ହ୍ୱାଇଟ ହାଉସରେ ମିଷ୍ଟାର ଲିଟ୍‌ଭିନଫ ଓ ରୁଷିଆରେ ଥିବା ତାଙ୍କର ସ୍ତ୍ରୀ ଓ ପିଲା ପିଲିଙ୍କ ମଧ୍ୟରେ । ଦରଓ୍ୟାନଗଣ ତାଙ୍କର ଦୈନନ୍ଦିନ ଡାଏରୀରେ ଟିପି ରଖନ୍ତି । ଇଂରେଜପର ବହୁ ଦେଶ ସଙ୍ଗରେ ସାଗର ଏପାରି ଓ ସେପାରି ମଧ୍ୟରେ କଥାବାର୍ତ୍ତା ସବୁ ହୋଇ-ଥିଲେହେଁ, ପ୍ରଥମଥର ପାଇଁ ରୁଷିଆ ସାଙ୍ଗରେ ରାଜନୈତିକ ବ୍ୟାପାରରେ କଥାବାର୍ତ୍ତା ହୁଏ ।

ମୋ ସ୍ୱାମୀ ପ୍ରାୟ ଏହି ଆଳାପ ଆଲୋଚନା ସମ୍ବନ୍ଧରେ ବିଶେଷ କଥା କହନ୍ତି । ତାହା ହେଉଛି ରୁଷିଆର ଧର୍ମାନୁଷ୍ଠାନର ସ୍ୱାଧୀନତା କଥା ।

ସେ ଖୁବ ଧରାଧରି କଲେ ଯେ ଯଦି କୌଣସି ଧର୍ମ ସଂଘର ନିର୍ଦ୍ଦିଷ୍ଟ ସଂଖ୍ୟକ ସଭ୍ୟ ଥାଆନ୍ତି, ତାହେଲେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ପୁରୋ-ହିତ ନିଯୁକ୍ତ କରିବାରେ ଅନୁମତି ଦେବାକୁ ହେବ । ସେମାନେ ସ୍ୱୀୟ ଇଚ୍ଛାନୁସାରେ ଅନୁଷ୍ଠାନ କରି ପାରିବେ । ସେ ପ୍ରତିଶ୍ରୁତି ପାଇଲେ ଯେ, ଏହି

ଅନୁମତିହିଁ ଦେବାକୁ ହେବ । ପ୍ରଥମରେ ସେମାନେ ଏଥିରେ ଇତସ୍ତତ କରିଥିଲେ ।

ଏକଥା କହିବା ବାହୁଲ୍ୟ ଯେ ମୋ ସ୍ୱାମୀଙ୍କ ପୁରୁଣା ବନ୍ଧୁମାନଙ୍କ ମଧ୍ୟରୁ କେହି କେହି ରୁଷିଆକୁ ସ୍ୱୀକାର କରି ନେବାରେ ବିରୁଦ୍ଧାଚରଣ କରିଥିଲେ । ତାଙ୍କ ଜନନୀ ଘୋଷଣା ଆଗରୁ ତାଙ୍କପାଖୁ କହିବାକୁ ଆସନ୍ତି । ସେ ଜନରବ ଶୁଣିଛନ୍ତି ଯେ ତାଙ୍କ ପୁଅ କୁଆଡ଼େ ରୁଷିଆକୁ ମାନି ନେଇଛି । ସେ ଏକଥାବି କହିଲେ ଯେ ତାଙ୍କର ମନେହୁଏ, ଏହା ଗୋଟିଏ ସର୍ବନାଶ ବ୍ୟାପାରହିଁ ହେବ ଓ ସେମାନଙ୍କର ପୁରୁଣା ବନ୍ଧୁ ବାନ୍ଧବଗଣ ସମସ୍ତେ ଭୁଲ ବୁଝିବେ । ସ୍ୱାମୀ କୌତୁକରେ ଏକଥା ମୋତେ କହିଥିଲେ । ସେ ଏହା ମଧ୍ୟ ଜଣାଇଲେ ଯେ ତାଙ୍କର ମା' ଠିକ୍‌ହିଁ କହିଛନ୍ତି ଓ ତାଙ୍କର ପୁରୁଣା ବନ୍ଧୁମାନଙ୍କ ପାଖରେ ଆଗାମୀ ବର୍ଷ ସମୂହରେ ଏପରି ବହୁ ଧକ୍‌କା ସମ୍ଭାଳିବାକୁ ହେବ । ଏକଥା ଯେ ସତ୍ୟ, ସେ ପ୍ରେସିଡେଣ୍ଟ ଥିଲାବେଳେ ବହୁଥର ତାହା ପ୍ରମାଣିତ ହୋଇ ଯାଇଛି ।

କେବଳ ପୁରୁଣା ବନ୍ଧୁବାନ୍ଧବ ନୁହନ୍ତି । ବହୁ ଲୋକଙ୍କ ସଙ୍ଗରେ ସରକାରଙ୍କର ଯେ ଜନସାଧାରଣଙ୍କ ପ୍ରତି ଦାୟିତ୍ୱ ଅଛି—ଏହି ନୂତନ ଭାବଧାରା ଘେନି ପ୍ରାୟ ସେମାନଙ୍କ ମଧ୍ୟରେ ତର୍କ ବିତର୍କ ହେଉଥିଲା । ମନେପଡ଼େ ଯେତେବେଳେ ସେନେଟର ସଭ୍ୟ କାର୍ଟାରଗ୍ଲାସ, ଭର୍ଜିନିଆରେ ସାହାଯ୍ୟର ଦରକାର ନାହିଁ ବୋଲି ଏହି ଭାବଧାରାର ବିରୋଧୀତା କଲେ, ସେତେବେଳେ ଫ୍ରାଂକ୍‌ଲିନ ତାଙ୍କୁ ଗାଡ଼ିରେ ବସାଇ କେତେଗୁଡ଼ିଏ ଦୁସ୍ଥ ଅଞ୍ଚଳ ଦେଖାଇବା ପାଇଁ ନେଇ ଯାଆନ୍ତି । କିନ୍ତୁ ସେନେଟର ସଭ୍ୟ ଜଣକ ତାଙ୍କର ନିମନ୍ତ୍ରଣ ଥରେହେଲେ ଗ୍ରହଣ କଲେନାହିଁ । ରୁଷିଆ ସାଙ୍ଗରେ କୂଟ ରାଜନୈତିକ ସମ୍ବନ୍ଧରେ ସୂତ୍ରପାତ ଓ ଏହି ଗୋଲାର୍ଦ୍ଧର ରାଷ୍ଟ୍ର ସମୂହ ସାଙ୍ଗରେ ସମ୍ପର୍କ ଘେନି ତାଙ୍କର ଶାସନ ବ୍ୟବସ୍ଥା ମଧ୍ୟରେ ଆମର ରାଷ୍ଟ୍ରନୀତି ଉପରେ ପ୍ରଥମ ଆକ୍ରମଣ ସୁରୁହୁଏ । ହେଲେ ପ୍ରଥମ ବର୍ଷ କେତୋଟିରେ ସ୍ୱରାଷ୍ଟ୍ର ନୀତି ଓ ଆଭ୍ୟନ୍ତରୀଣ ଅନ୍ତର୍ନୀତିର ପୁନର୍ବ୍ୟବସ୍ଥା ଉପରେ ବେଶୀ ଜୋରପଡ଼େ ।

ପ୍ରଥମ ବର୍ଷରେ ଯେଉଁ କାର୍ଯ୍ୟକାରୀ ନୀତି ଗ୍ରହଣ କରାହୁଏ, ସେ କଥା ମନେ ପଡ଼ିଲେ ଭଲ ଭାବରେ ବୁଝିପାରେ ଯେ ମୋ ସ୍ୱାମୀ ୧୯୩୭ ମସିହାର ଏପ୍ରିଲ ୫ତାରିଖରେ ସିଭିଲ୍ୟାନ କନସେରଭେସନ କୋର୍ଡର ଶିବିର ପ୍ରତିଷ୍ଠା କରି ସବୁଠାରୁ ବେଶୀ ଆନନ୍ଦ ପାଇଥିଲେ । ସଦ୍ୟ ସ୍କୁଲ ବହିର୍ଗତ ତରୁଣ ଦଳ ଓ ଯେଉଁମାନେ କଲେଜରୁ ଉତ୍ତୀର୍ଣ୍ଣ ହେବାକୁ ଯାଉଛନ୍ତି ଏମାନଙ୍କର ସବୁରି ଅବସ୍ଥା ନୈରାଶ୍ୟମୟ । ବହୁ ବର୍ଷରୁ ଫ୍ରାଂକଲିନ ପିଲମାନଙ୍କର ବାହାର କାମ ଓ ଜ୍ଞାନର ମୂଲ୍ୟ କଥା ମଝିରେ ମଝିରେ କହନ୍ତି । ସେ ହାଇଡ଼ ପାର୍କରେ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ସେଠାରେ କିଶୋରମାନଙ୍କୁ ହାତକାମ ଓ ମସ୍ତିଷ୍କ ପରିଚାଳନ କାମରେ ତାଲିମ କରିବାକୁ ହେବ । ମୋ ମନେହୁଏ, ସେ ଯେତେବେଳେ ସି, ସି, ସି, ର ପରିକଳ୍ପନା ଆରମ୍ଭ କରନ୍ତି, ସେତେବେଳେ ଏହି ଭାବଧାରାହିଁ ତାଙ୍କ ମାନସ ପଟରେ ଉଦୟ ହୋଇଥିଲା । ସିଭିଲ୍ୟାନ କନ୍‌ଜାରଭେସନ କୋର୍ଡର ମୂଲ୍ୟ ଥିଲା ତିନିଆଡ଼ୁ । ପିଲମାନଙ୍କୁ ନିଜ ଦେଶର ବିଭିନ୍ନ ଅଞ୍ଚଳ ଦେଖିବାର ସୁଯୋଗ ଏଥିରେ ଦିଆହୁଏ । ମୁକ୍ତ ପ୍ରାଙ୍ଗଣରେ ହାତକାମ ଶିଖିବାର ବ୍ୟବସ୍ଥା କରାହୁଏ । ଏଥିରେ ସେମାନଙ୍କର ଶାରୀରିକ ଉନ୍ନତି ସାଧିତ ହେବାକୁ ଲଗିଲା । ଏତଦ୍‌ବ୍ୟତୀତ ଏଥିରୁ ଯେଉଁ ଆୟ ହେବାକୁ ଲଗିଲା, ତାହାର କିୟଦଂଶ ସେମାନଙ୍କର ପରିବାର ମଧ୍ୟରେ ବଣ୍ଟନର ବ୍ୟବସ୍ଥା ହେଲା । ଏପରି କରିବାରୁ ପିଲମାନଙ୍କର ଓ ତାଙ୍କର କୁଟୁମ୍ବ-ବର୍ଗଙ୍କର ଆତ୍ମ ବିଶ୍ୱାସ ବଢ଼ିଯାଏ । ସାହାଯ୍ୟ ଓ ପୁନର୍ବସତିର ବିରାଟ ପରିକଳ୍ପନାରେ ଏହି ଭାବଧାରା ତାଙ୍କର ନିଜସ୍ୱ ଦାନ ଅଟେ । ଏଥିରେ ଜାତିର ଯୁବକଗଣ ଭଲଭାବରେ ପାଇଲେ ସ୍ୱାସ୍ଥ୍ୟ । ସେମାନଙ୍କର କାମ ମୋର ସ୍ୱାମୀଙ୍କ ନିକଟରେ ସ୍ଥାୟୀ ଓ ଆକର୍ଷଣୀୟ ବସ୍ତୁ ଥିଲା ବୋଲି ସେ ଅନୁଭବ କରୁଥିଲେ । ସି, ସି, ସି, କୁ ଚିରସ୍ଥାୟୀ କରିବା ଏକାନ୍ତ ଦରକାର ।

୧୯୩୭ ମସିହାର ଜୁନ୍ ୧୬ ତାରିଖରେ ପାବ୍ଲିକ ଓ୍ୱାର୍କସ ଆଡମିନିଷ୍ଟ୍ରେସନ ସ୍ଥାପିତ ହୁଏ । ସଙ୍କଟ ସମୟରେ ଏହାର ଦ୍ୱାରା ସରକାରଙ୍କର

ଜନସାଧାରଣଙ୍କ ଉନ୍ନୟନ ପରିକଳ୍ପନା ଓ କାମ ଆରମ୍ଭ ହୋଇଥିଲା । ଏହି ପ୍ରତିଷ୍ଠାନହିଁ ଆମେରିକାର ବିଭିନ୍ନ ଷ୍ଟେଟ ସମୂହକୁ ପରିକଳ୍ପନା ମାରଫତରେହିଁ ଟଙ୍କା ଦେଇ ବେକାରି ସମସ୍ୟାର ସମାଧାନର ଦାୟିତ୍ୱ ସ୍ୱୟଂ ଗ୍ରହଣ କରିଥିଲେ । ତା ନ ହୋଇଥିଲେ ଷ୍ଟେଟ ସମୂହର ପରିକଳ୍ପନା ଟଙ୍କା ଯୋଗାଇ ଦେବାରେ ସମ୍ଭବପର ହୋଇ ନଥାନ୍ତା ।

୫ ମାସ ପରେ ୧୯୩୩ ମସିହାର ନଭେମ୍ବର ମାସରେ ସିଭିଲ ଓ୍ୟାର୍କସ ଯ୍ୟାଡମିନଷ୍ଟ୍ରେସନ ବିଭାଗ ସ୍ଥାପିତ ହୁଏ । ଏଥିରେ ଯଥା ସମୟରେ ୮୦ ଲକ୍ଷ ବେକାର ଜନସାଧାରଣ କାମ ପାଆନ୍ତି ।

ମୋ ଦେଶ ଭ୍ରମଣ ସମୟରେ ପି, ଡବ୍ଲ୍ୟୁ ଏ, ଓ ସି, ଡବ୍ଲ୍ୟୁଏର ବହୁ କାର୍ଯ୍ୟ ମୁଁ ଦେଖିବାକୁ ପାଇଛି । ସି, ସି, ସି, କାର୍ଯ୍ୟରେ କି ପରିମାଣରେ ଲାଭ ହୋଇଛି, ତାହା ମଧ୍ୟ ଜାଣି ପାରିଛି । ଏହି ପ୍ରତିଷ୍ଠାନ ସମୂହର କୀର୍ତ୍ତିରେ ଗ୍ରାମାଞ୍ଚଳ ଓ ସହର ସମୂହ ଭରପୂର ହୋଇଯାଏ । ମାଟିର ଉତ୍ପାଦିକା ଶକ୍ତି ଓ ଜଙ୍ଗଲ ବିଭାଗୀୟ କାର୍ଯ୍ୟର ଦ୍ରୁତ ସମ୍ପ୍ରସାରଣ ହୁଏ । ବିଶ୍ରାମାଗାର ନିର୍ମିତ ହେଲା । ବହୁ ପୋଲ, ସ୍କୁଲ, ହସପାତାଲ, ହାଇଷ୍ଟେୟାନ୍ନ ପରିକଳ୍ପନା କାର୍ଯ୍ୟର ଶୁଭ ଆରମ୍ଭ ହେଲା । ଏହି ପ୍ରତିଷ୍ଠାନ ସମୂହ ସତ୍‌କାର୍ଯ୍ୟର କୀର୍ତ୍ତିସ୍ତମ୍ଭ ହୋଇ ରହିଲା । ଏହା ବାସ୍ତବ ଯେ, ଏଥିରେ ଦେଶର ବହୁ ଟଙ୍କା ଖର୍ଚ୍ଚ ହୁଏ । ଦେଶର ସମଷ୍ଟି ଭାବରେ ଉନ୍ନତି ହୁଏ । ଏଥିରୁ ଯେଉଁ ସଦ୍ୟ ଫଳ ଫଳିଲା, ତାର ପ୍ରମାଣ ଅଦ୍ୟାପି ଜାଜ୍ଜ୍ୱଲ୍ୟମାନ ।

ସବୁଠାରୁ ସୁଦୂର ପ୍ରସାରୀ ପରିକଳ୍ପନା ହେଲା ଟେନେସୀଭେଲି ଅଥରିଟି । ସେନେଟର ସଭ୍ୟ ଜର୍ଜ୍ଜ ନରିସଙ୍କର ଏଥିଲା ଗୋଟିଏ ବିରାଟ ସ୍ୱପ୍ନ । ଯେଉଁମାନେ ଏହି ଉନ୍ନତିକୁ ପ୍ରତ୍ୟକ୍ଷଭୂତ କରିଛନ୍ତି, ସେମାନେ କେଭେହେଲେ ଭୁଲି ପାରିବେ ନାହିଁ ଯେ ଏହାକୁ ସଫଳ କାମ କରିବା ପାଇଁ ତାଙ୍କୁ କେତେ ବେଶୀ କଷ୍ଟ ସହିବାକୁ ପଡ଼ିଛି । ସେତେବେଳେ ଏହାକୁ ବହୁଲୋକ ବ୍ୟଙ୍ଗୋକ୍ତି କରିଥିଲେ । ପ୍ରଥମ ମହାଯୁଦ୍ଧ ସମୟରେ ଏହି ପରିକଳ୍ପନାର ମୂଳପାତ ହୁଏ । କିନ୍ତୁ ଯୁଦ୍ଧ ଶେଷରେ ସବୁ କାମ ବନ୍ଦ ହୋଇଗଲା ।

ଆଉ ଯେତେଦିନ ମୋର ସ୍ୱାମୀ ସେଥିରେ ଅନୁପ୍ରେରଣା ନ ଯୋଗାଉଥିଲେ, ସେତେଦିନ ଯାଏ ଆଉ କିଛି ହୋଇ ପାରିଲି ନାହିଁ। ସେ ସେନେଟର ନରିସ୍‍ଙ୍କର ତାତ୍ପର୍ଯ୍ୟ ବୁଝିଲେ। ଆଉ ଠିକ ଏହି ସମୟରେ ଅନୁ-ପ୍ରେରଣା ଯୋଗାଇବାକୁ ଲଗିଲେ, ଯେଉଁଥିରେ ଦେଶ ପକ୍ଷରେ ଏତଦ୍ୱାରା ସବୁଠୁ ବେଶୀ ସୁଫଳ ମିଳିପାରେ। ତାଙ୍କ ମନରେ ଆଉ ଗୋଟିଏ ଭବି-ଷ୍ୟତର ସୂଚନା ଦେଖା ଦେଇଥିଲା। ସେଇଥିଯୋଗୁ ଫ୍ରାଙ୍କଲିନ ଟି, ଭି, ଏର କାମ ଯେତେ ଶୀଘ୍ର ସମ୍ଭବ ଆଗେଇ ନେଇ ଯିବାର ଚେଷ୍ଟା କରନ୍ତି। ସେତେବେଳେ ସେ ବୁଝି ପାରିଥିଲେ ଯେ ଅବସ୍ଥାର ଘୂର୍ଣ୍ଣିପାକରେ ପଡ଼ି ଯୁଦ୍ଧର ଆରମ୍ଭ ଶୀଘ୍ର ହୋଇ ପାରେ ବୋଲି। ଆଉ ତାହା ଯେବେହୁଏ ଟି, ଭି, ଏ ଯେଉଁସବୁ ଦ୍ରବ୍ୟାଦି ସରବରାହ କରିବ ସେ ସବୁ ଆମ୍ଭମାନଙ୍କ କାମରେ ଲଗିଯିବ।

୧୯୩୬ ମସିହାର ପ୍ରେସିଡେଣ୍ଟ ନିର୍ବାଚନୀ ଅଭିଯାନରେ ମୁଁ ଓ ମୋର ସ୍ୱାମୀ କେତେମୁଡ଼ିଏ ଟି, ଭି, ଏ ଅଞ୍ଚଳ ବୁଲି ଆସିଥିଲୁ। ପ୍ରତି ଷ୍ଟେସନରେ ଜନତାର ବିରାଟ ସମାବେଶ ଦେଖି ସେ ଖୁବ ଅଭିଭୂତ ହୋଇ ପଡ଼ିଥିଲେ। ଜନସାଧାରଣ ଅତ୍ୟନ୍ତ ଦରିଦ୍ର। ଘର ଦୁଆର ସବୁ ପୁରୁଣା। ଗାଡ଼ି ସବୁ ଭଙ୍ଗା ଦଦରା। ବହୁ ବୟସ୍କ ବ୍ୟକ୍ତି ଓ ଶିଶୁଙ୍କୁ ନଗ୍ନ ପଦରେ ପରି-ଭ୍ରମଣ କରିବାର ଦେଖା ଯାଉଥିଲା। ପିନ୍ଧିବାକୁ ନଥିଲା କନା। ସେହି ଦିନଠୁ ଆଠବର୍ଷ ଯାଉ ନଯାଉଣୁ, ଶିକ୍ଷା, ଓ କୃଷି ପରିକଳ୍ପନାର ଫଳ ଫଳିଲା ବେଳକୁ ମୁଁ ପୁଣିଥରେ ସେ ସବୁ ଅଞ୍ଚଳକୁ ଯାଏ। ଏହାଠାରୁ ବଳି ସମୃଦ୍ଧ ଅଞ୍ଚଳ ଆଉ କେଉଁଠି ଅଛି କି ନା ତାହା ଖୋଜି ବାହାର କରିବା ମୁସ୍କିଲ। ମୋର ସବୁବେଳେ ଇଚ୍ଛା ହେଉଥିଲା, ଯେଉଁମାନେ ଅନ୍ୟାନ୍ୟ ନଦୀ ଉପତ୍ୟକାର ଉନ୍ନତିକର କାର୍ଯ୍ୟରେ ଏପରି ଘୋର ବିରୋଧିତା କରୁଥିଲେ, ସେମାନେ ଯେବେ ମୌଳିକ ପାର୍ଥକ୍ୟ ଟିକିଏ ହେଲେ ହୃଦୟଙ୍ଗମ କରିଆନ୍ତେ! ମୁଁ ବୁଝିଛି ପରିବର୍ତ୍ତନ ସ୍ୱତଃ ହିଁ ହେବ। ତା ବୋଲି କୌଣସି ଚେଷ୍ଟା ନକରିବାକୁ ମୁଁ ଘୃଣା କରେ। ମୋ ସ୍ୱାମୀଙ୍କ-

ପଶ ମୋର ମଧ ଇଚ୍ଛା ଯେ ବର୍ଷ ବର୍ଷ କଶ ଆମ୍ଭମାନଙ୍କର ମିତ୍ରୌଷ୍ଠ ବା ମି, ସି, ଷି, ପି, ନଦୀରେ ଏହି ପ୍ରଚେଷ୍ଟାର ଆରମ୍ଭ କରାଯାଉ, ଏପରି ପ୍ରଚେଷ୍ଟା ଦ୍ୱାରା ଜନସାଧାରଣଙ୍କୁ ସୁଷ୍ଠୁ ପରିବର୍ତ୍ତନଆଡ଼କୁ ଟାଣି ଘେନି-ଯିବ। ଆମ୍ଭମାନଙ୍କର ଗଣତନ୍ତ୍ର ବିରୁଦ୍ଧରେ ଯେଉଁ ଆକ୍ରମଣ ହେଉଛି ଏହାହିଁ ହେବ ତାହାର ଗୋଟିଏ ପ୍ରତିକାର।

ପଛଆଡ଼କୁ ଫେରିଦେଖିଲେ ୧୯୩୪ରୁ ୧୯୩୭—ଏହି ବର୍ଷ କେତୋଟି ହୋଇଛି ହାଉସର ଜୀବନରେ ସବୁଠାରୁ ଶାନ୍ତ ପୂର୍ଣ୍ଣ ଓ ନିରୁଦ୍ବେଗ ବୋଲି ମନେହୁଏ। ଯେଉଁସବୁ ସଂସ୍କାର ପ୍ରବର୍ତ୍ତିତ ହୋଇଥିଲା, ସେହି ସବୁ ଦେଶକୁ ଆଗରୁ ଦୃଢ଼ଭିତ୍ତି ଉପରେ ଠିଆ କରାଇବାରେ ସହାୟକ ହେଲା। ବଣିକ୍ ଓ ଶ୍ରମିକ, କଂଗ୍ରେସ ଓ ପ୍ରେସିଡେଣ୍ଟଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ସ୍ଥାପିତ ହୁଏ। ଆମ୍ଭମାନଙ୍କ ପାରିବାରିକ ଜୀବନରେ ମଧ ଆମେସବୁ ହୋଇଟ ହାଉସର ଗୁରୁତା ସାଙ୍ଗରେ ସାମଞ୍ଜସ୍ୟରଖି ବ୍ୟକ୍ତିଗତ ସୌହାର୍ଦ୍ଦ୍ୟ ସମୂହକୁ ଧୀରେ ଧୀରେ ଗ୍ରହଣକରିବାକୁ ଲାଗିଲୁ। ପରବର୍ତ୍ତୀ ବର୍ଷ ସମୂହ ଏପରିଭାବରେ ଗୋଟିଏ ଗ୍ରନ୍ଥରେ ପଡ଼ିଗଲା।

୧୯୩୪ ମସିହାର ବସନ୍ତ କାଳରେ ଫ୍ରାଙ୍କଲିନ୍ ମୋତେ ପୋର୍ଟୋ ରିକୋଯ୍ୟ ଦ୍ୱୀପକୁ ଯିବାକୁ କହନ୍ତି। ଏହି ଦ୍ୱୀପର ଗଭର୍ଣ୍ଣର ଜେନେରାଲ୍ ବ୍ଲାଣ୍ଟନ ଉଇନ୍ସିପ୍ ଖୁବ୍ ବିପଦରେ ପଡ଼ି ଥାଆନ୍ତି। ସେଠାକାର ଶ୍ରମିକ ମାନଙ୍କର ଅବସ୍ଥା ସେତେବେଳକୁ ଭାରି ଶୋଚନୀୟ। ଜନ ସଂଖ୍ୟା ଅନବରତ ବଢ଼ି ଚାଲିଥାଏ। ଖାଦ୍ୟାଭାବ ଥାଏ। ଚିନି କମ୍ପାନି ସବୁଙ୍କର ଜମିଥିଲା ପ୍ରାଚୁର। ବର୍ଷରେ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ସେଠାରେ କାମ ହେଉଥିଲା। ମଜୁରିର ହାର ବି ଖୁବ୍‌କମ ଥିଲା ସେଠାରେ। ନିର୍ଦ୍ଦିଷ୍ଟ ସମୟ ବିତିଗଲେ ଶ୍ରମିକମାନଙ୍କୁ ଅନାହାରରେ ଦିନ କଟାଇବାକୁ ହେଉଥିଲା। ରେକ୍ସଫୋର୍ଡ ଟାରଓୟେଲ ସେତେବେଳକୁ କୃଷି ବିଭାଗରେ ଥାଆନ୍ତି। ସେଠାରେ କ'ଣ କରାଯାଇପାରେ ତାର ବ୍ୟବସ୍ଥା କରିବାକୁ ସେଠାକୁ ସେ ଯାଉଥିଲେ। ମୋସ୍ୱାମୀ ଭାବିଲେ

ମୁଁ ଯଦି ସେଠାକୁ ଯାଏ, ତାହେଲେ ଜନସାଧାରଣ ବୁଝି ପାରିବେ ପ୍ରକୃତରେ ତାଙ୍କର ଦୃଷ୍ଟି ଜନସାଧାରଣଙ୍କ ସମସ୍ୟା ଉପରେ ଅଛି ବୋଲି। ପୋର୍ଟ, ରିକେଷ୍ଟେକୁ ଯାଇ ମୁଁ ରହେ ଲର୍ଡ଼ଫୋର୍ଡ଼ରେସାରେ। ଏଇଟା ହେଲା ଗଭର୍ଣ୍ଣରଙ୍କର ପୁରୁଣା ଘର। ଦିନେ ଏହାଥିଲା ଗୋଟିଏ ଦୁର୍ଗ। ଓ଼ପସାଗର ଉପରେ ଇଷତ୍ ରକ୍ତାଭ ପ୍ରାସ୍ତାର ବୋଲା ଘରଟି ଦେଖିବାକୁ ଭାରି ସୁନ୍ଦର। ମୋ ପାଇଁ ଖୁବ ଯତ୍ନର ସହିତ କାର୍ଯ୍ୟସୂଚି ପ୍ରସ୍ତୁତ ହୋଇଥାଏ ସେହି ଅନୁସାରେ କାମକରିବାକୁ ଲଗେ। କେଇଟି ଗ୍ରାମ୍ୟସ୍କୁଲ ପରିଦର୍ଶନ କରେ, ବାଳିକାମାନଙ୍କର ହାତକାମ କପଡ଼ି—ପରିଦର୍ଶନ କରେ। କେତେଗୁଡ଼ିଏ ସୂଚିକାମ ଭାରି ସୁନ୍ଦର ଥିଲା। ହେଲେ ଯେଉଁସବୁ କନା ଉପରେ ସେ ସବୁ ବୁଣା ହୋଇଥିଲା, ସେଗୁଡ଼ି ଭାରି ନରସିଆ। କାରଖାନାର ମଜୁରି ବି ଭାରି କମ। ଘର ତିଆରି କାମ ପାଇଁ ଯାହା ଦିଆ ହେଉଥିଲା ସେ ସବୁ ଏତେ କମ ଯେ, ତାହା ବିଶ୍ୱାସକର ହେଉନଥିଲା। ଛୋଟ ଛୋଟ ବାଳିକାଗଣ ଦିପହରେ ଟିଫିନ୍ ବେଳେ ବସି ବସି ରୁମାଲରେ ବୁଣା-କାମ କରି ଦରିଦ୍ର ପଇସା ଉପାର୍ଜ୍ଜି କରି ଘର ଖରଚ ଚଳାଇବାର ଚେଷ୍ଟା କରୁଥିଲେ।

ଗାଁ ଘର ଗୁଡ଼ିକର ଅବସ୍ଥା ସ୍ୱାସ୍ଥ୍ୟର ଅନୁକୂଳ ନୁହେଁ। ସହରର କଥା କହିଲେ ନସରେ। ଦେଖି ଶିହରି ଉଠିଲି। ମୋ ମନେ ପଡ଼େ ଦିନେ ଶ୍ରମିକ ପଲ୍ଲୀ ଦେଖିବାକୁ ଯାଇଥିଲି। ପ୍ରତି ଖଣ୍ଡାରେ ଦୁଇଖଣ୍ଡ କରି ଘର। ବାଡ଼ିଆଡ଼ ଘରକୁ ଆଲୁଅ ଆସେନାହିଁ। ଦାଣ୍ଡଘର ଦରଜା ଦେଇ ଯତ୍-ସାମାନ୍ୟ ଆଲୁଅ ଆସେ। ଘରେ ପରଦା ନଥାଏ। ଏହାଛଡ଼ା ପୁରୁଣା ଇଟା ଘର ଗୁଡ଼ିକରେ ପାଣି ଓ ଆଧୁନିକ ଯୁଗର ଉପଯୋଗୀ କୌଣସି ସୁବିଧା ନଥାଏ। ବହୁ ସ୍ତ୍ରୀ ଲୋକଙ୍କୁ ପଦାରେ ରାନ୍ଧିବାକୁ ପଡୁଥିଲା। ସେମାନଙ୍କର ଛୋଟ ଛୋଟ ଚୂଲି ଗୁଡ଼ିକୁ ଦେଖି ମୁଁ ଏକାବେଳେ ଅବାକ୍। ଏତେ ଛୋଟ ଛୋଟ ଚୂଲିରେ ସେମାନେ କିପରି ଯେ ରନ୍ଧାବଢ଼ା କରନ୍ତି, ତାହା ମୁଁ ଧାରଣା କରି ପାରିଲି ନାହିଁ।

ପ୍ରଧାନ ସହରର ଅବସ୍ଥା ଗୁଡ଼ିକ ଭାରି ଖରାପ । ଘରଆଡ଼େ ପାଣି ଜମି ରହିଥାଏ । ତା ଉପରେ ଗତ ଯୁଦ୍ଧର ପୁରୁଣା ଟିଣା, ଲୁହା ଓ କାଠର ଟୁକୁରା ଦେଇ ଛୋଟିଆ ଛୋଟିଆ ଘର ସବୁ ତିଆରି ହୋଇଥାଏ । ସ୍ତୂପୀକୃତ ଅଳିଆଗଦା ଉପରେ ପଟା ପଡ଼ିଥାଏ । ସେ ସବୁ ବି ପାଣିରେ ବୁଡ଼ି ରହିଥାଏ । ଆମେ ସବୁ ପଟା ଉପରେ ଚାଲୁଥାଉଁ । ପାଣି ପିଚକି ପିଚକି ଉଠୁଥାଏ । ଗୋଟିଏ ବସ୍ତିକୁ ଦେଖିଲୁ ସେ ଯେପରି ଉପସାଗର ମଧ୍ୟରେ ବୁଡ଼ି ରହି କୌଣସି ରକମରେ ପାହାଡ଼ ପାଖରେ ଗୁଞ୍ଜି ହୋଇ ରହିଥାଏ । ଛେଳି ଓ ଅନ୍ୟାନ୍ୟ ଗୃହପାଳିତ ପଶୁ ସବୁ ଘର ଭିତରେ ରହିଛନ୍ତି ଦେଖିବାକୁ ପାଇଲୁ । ସ୍ୱାସ୍ଥ୍ୟରକ୍ଷାର କୌଣସି ବନ୍ଦୋବସ୍ତ ସେଠାରେ ନାହିଁ । ଘରେ ଘରେ ଟାଇଫଏଡ୍ ରୋଗ । ଜଳ ହାଓ୍ୱା ଖରାପ । ଯୁକ୍ତରାଷ୍ଟ୍ରରୁ ଚାଉଳ ଓ ଅନ୍ୟ ଖାଦ୍ୟ ହିସାବରେ କିଣାହୋଇ ନ ଆସୁଥିଲେ ଶରୀରରୋଗ ସାରା ଦ୍ୱୀପଟା ଯାକ ବ୍ୟାପୁଥାଏ । ଯକ୍ଷ୍ମାର ଦାଉ କହିଲେ ନସରେ । ପ୍ରତିବର୍ଷ ଏଠାରେ ଜନ୍ମସଂଖ୍ୟା ବୃଦ୍ଧି ପାଉଥିଲା । ତେଣୁ ଏହି ଛୋଟ ଦ୍ୱୀପର ଲୋକ ସଂଖ୍ୟାର ପ୍ରଶ୍ନ ଜଟିଳରୁ ଜଟିଳତର ହୋଇ ଉଠୁଥିଲା । କ୍ୟାଥଲିକ୍ ଗୀର୍ଜ୍ଜାମାନଙ୍କରେ ବାଳିକାମାନଙ୍କୁ ଭଲ ସୂଚିକାମ ଶିକ୍ଷା ଦିଆ ହେଉଥାଏ । "ନାନ"ଗଣ ପିଲାପିଲିଙ୍କ ଜୀବନ ଗଠନ ଯେପରି ଠିକଏ ଭଲଭାବରେ ହୁଏ ସେ ପ୍ରତି ଯଥାସାଧ୍ୟ ଚେଷ୍ଟା କରୁଥିଲେ ।

ପୋର୍ଟୋରିକ ଦ୍ୱୀପରୁ ଆମେ ଭାର୍ଜ୍ଜିନିଆ ଦ୍ୱୀପକୁ ଆସୁ । ଏଠାକାର ଅବସ୍ଥା ଖରାପ ହେଲେହେଁ ପୋର୍ଟୋରିକ ଠାରୁ କିଛି ଭଲ । ପୋର୍ଟୋରିକୋ ପରି ଏଠାରେ ନୂତନ ଘର ତିଆରିର ଚେଷ୍ଟା ଚାଲୁଥାଏ । ହେଲେ ଏହିସବୁ ଘରେ ଲୋକେ କିପରି ରହିବେ, ସେହି ଶିକ୍ଷାଦେବା ହେଲା ପ୍ରଥମ କାମ । ଭଲଭାବରେ ବସବାସ କରିବାକୁ ସେମାନେ ଜାଣି ନଥିଲେ । କାରଣ, ଯେଉଁ ଅବସ୍ଥାରେ ସେମାନେ ବାସ କରିବାକୁ ବାଧ୍ୟ ହୋଇଛନ୍ତି, ସେପରି କ୍ଷେତ୍ରରେ ପରିଷ୍କାର ପରିଚ୍ଛନ୍ନ ହୋଇ ରହିବା ଅସମ୍ଭବ ।

ଫେରିଆସି ସ୍ୱାମୀଙ୍କୁ ମୁଁ ଶ୍ରମିକ ଓ ବ୍ୟବସାୟୀମାନଙ୍କୁ ସେଠାକୁ ପଠାଇବା ପାଇଁ ଅନୁରୋଧ କରେ । ଉଦ୍ଦେଶ୍ୟ ସେମାନେ ସେଠାକାର ଅବସ୍ଥା ଦେଖି ଫେରି ଆସିବେ । ତାପରେ ମୋର ବନ୍ଧୁ ବନ୍ଧୁବାନ୍ଧବ ସେଠାକୁ ନୂଆ ଶିଳ୍ପ ପ୍ରତିଷ୍ଠାନ ଗଢ଼ିବାକୁ ବାହାରି ପଡ଼ନ୍ତି । ଏମାନଙ୍କ ମଧ୍ୟରେ ଥିଲେ ଆର୍ଡିସ୍‌ଟାନ ଡାଣ୍ଡ୍ରିଜ୍ । ଡବ୍ଲୁ ପି ଏ ର ଶିଳ୍ପ ଓ ହାତ କାମର କାର୍ଯ୍ୟସୂଚୀ ଯେଉଁ ୱାଶିଂଟନରେ କାର୍ଯ୍ୟ କରୁଥିଲେ । ସେ ପୋର୍ଟୋରିକୋର ବାଉଁଶ ଦ୍ୱାରା କେଉଁ କେଉଁ ଜିନିଷ ପ୍ରସ୍ତୁତ ହୋଇପାରେ ତାହାର ଚେଷ୍ଟା କରନ୍ତି ଏବଂ ସେଠାରେ କେତେଗୁଡ଼ିଏ ଶ୍ରେଷ୍ଠ ଶିଳ୍ପ ପ୍ରତିଷ୍ଠାନ ଗଢ଼ି ଭଲ ଭାବରେ କାମ ଚଳାଇବାକୁ ଲାଗନ୍ତି । ପରେ ମିଷ୍ଟାର ଟାଗଓ୍ୱେଲ ପୋର୍ଟୋରିକୋର ଗଭର୍ଣ୍ଣର ହୋଇ ଆସନ୍ତି । ପ୍ରଥମ ଭ୍ରମଣ ସମୟରେ ଏମାନଙ୍କୁ ସାହାଯ୍ୟ କରିବା ପାଇଁ ଯେଉଁ ସବୁ କଥା ସେ ଭାବିଥିଲେ, ସେହି ସବୁକୁ ଏଥର କାମରେ ଲଗାଇବା ପାଇଁ ଚେଷ୍ଟା କରନ୍ତି ।

୧୯୩୪ ରୁ ୧୯୩୬ ମସିହା ପର୍ଯ୍ୟନ୍ତ ଦୁଇବର୍ଷ ବ୍ୟାପୀ ଆମ୍ଭମାନଙ୍କ ମନରେ ଉଦ୍‌ବେଗ ଦେଖାଦିଏ । ସେଥିରୁ ଅଧିକାଂଶ ବ୍ୟକ୍ତିଗତ । ଏହି ବରଷ ମନରେ ପ୍ରେସିଡେଣ୍ଟ ନିର୍ବାଚନୀ ଅଭିଯାନ ଆମ୍ଭେମାନେ ସୁରୁକରୁ । ମୋଟାମୋଟି ଭାବରେ ଦେଖିବାକୁ ଗଲେ ଦେଶ ସ୍ୱାବଲମ୍ବନଶୀଳ ହେବାକୁ ଯାଉଛି । ମୁଁ ସେଥରର ଅଭିଯାନରେ କୌଣସି କାମ କରି ନାହିଁ । ତଥାପି ଅଭିଯାନର ବଡ଼ ବଡ଼ କେନ୍ଦ୍ର ସମୂହ ଦେଖିବାକୁ ଯାଏ । ଫ୍ରାଙ୍କଲିନଙ୍କ ସଙ୍ଗରେ ମଧ୍ୟ ଥରେ ଦିଥର ଯାଇଥିଲି । ସ୍ୱାମୀଙ୍କ ପାଇଁ ନିର୍ବାଚନୀ ଅଭିଯାନରେ କାମ କରିବାକୁ ମୋତେ ଟିକିଏ ଅଡୁଆ ଅଡୁଆ ଲାଗୁଥିଲା । ସେଇଥି ପାଇଁ କୌଣସି ଅଭିଯାନରେ ବିଶେଷ ଅଂଶ ଗ୍ରହଣ କରି ନାହିଁ । ତେବେ କୌଣସି ବିଶେଷ ଘଟଣାର କଥାଥିଲା ସ୍ୱତନ୍ତ୍ର । ଏଥର ନିର୍ବାଚନରେ କୌଣସି ଅନିଶ୍ଚୟତା ବା ଉଦ୍‌ଗ୍ରୀବ ପ୍ରତୀକ୍ଷାର ଆବଶ୍ୟକତା ନଥିଲା । ଅମେ ସବୁ ହାଇଡ ପାର୍କରେ ରହୁଥିଲୁ । ସେଠାକାର ଭୋଜନ-କକ୍ଷ ନିର୍ବାଚନ ରାତିରେ ସବୁବେଳେ ଖବର କାଗଜ ଅଫିସ ଭଳି ହୋଇ

ଉଠିଥାଏ । ଭୋଜନକକ୍ଷ ପାଖରେ ଥିବା କ୍ଷୁଦ୍ର ଘରଟିରେ ଖବର ଆସିବା ଯନ୍ତ୍ର ବସିଥାଏ । ଫ୍ରାଙ୍କଲିନଙ୍କ ନିଜ ପାଖରେ ଫୋନ ଥାଏ । ଦଳ ଦଳ ହୋଇ ଲୋକେ ଆସି ତାଙ୍କ ପାଖରେ ବିବୃତି ପରେ ବିବୃତି ଦେଇ ଯାଉ-ଥାନ୍ତି । ପ୍ରତ୍ୟେକ ଲୋକ ଗଡ଼ପଡ଼ତା ଭୋଟର ଗୋଟିଏ ହିସାବ କଷି ଦେଇ ଯାଉଥାନ୍ତି । ଖବର କାଗଜର ଲୋକେ ଆସୁଥିଲେ । ସେମାନଙ୍କୁ ଜଳଖିଆ ଦିଆ ହେଉଥାଏ । ପରେ ଫଳ ଜଣାଗଲା, ସେତେବେଳକୁ ହାଇଡ ପାର୍କର ଜନସାଧାରଣ ମସାଲ ଶୋଭାଯାତ୍ରା ବାହାର କରି ମୋ ସ୍ୱାମୀଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଆସୁଥିଲେ । ଆମେ ସବୁ ଶୀତରେ କମ୍ପି କାନ୍ଥ ବାରଣ୍ଡାରେ ଯାଇ ଠିଆ ହୋଇ ତାହାର ସଂକ୍ଷିପ୍ତ ବକ୍ତୃତା ଶୁଣୁ ।

୧୯୩୬ ମସିହାରେ ଆମେସବୁ ଯେତେବେଳେ ଓ୍ୱାଶିଂଟନକୁ ଫେରି-ଯାଉ, ଫ୍ରାଙ୍କଲିନଙ୍କୁ ବିରାଟ ସମ୍ବର୍ଦ୍ଧନା ଦିଆହୁଏ । ତାଙ୍କର ଦ୍ୱିତୀୟ ଶାସନ୍ର କାମ ବେଶ୍ ଭଲ ଭାବରେ ଆରମ୍ଭ ହୋଇଥାଏ । କଂଗ୍ରେସ ବା ଡେମୋକ୍ରେଟିକ୍ ଦଳ ସଂଖ୍ୟାରେ ଖୁବ୍ ବେଶୀ ଥିଲେ । ଦଳର ସଭ୍ୟଗଣ ଏତେଦୂର ନିଶ୍ଚିନ୍ତ ଥିଲେ ଯେ ସେମାନେ ଯାହା ଭାବିବେ, ଏଥର ତହାହିଁ ହେବ । ଏଭଳି ମନୋଭାବ ଯେ କୌଣସି ଦଳ ପକ୍ଷରେ ମାରାତ୍ମକ । ଦେଶ ଯେତେବେଳେ ବିରାଟ ସଙ୍କଟର ସମ୍ମୁଖୀନରୁ ସଦ୍ୟ ମୁକ୍ତ ହୋଇଛି, ସେତେବେଳେ ଯେଉଁମାନେ ଦେଶକୁ ଭଲ ଭାବରେ ଶାସନ କରିବାର ଦାୟିତ୍ୱ ନେଇଛନ୍ତି, ସେମାନଙ୍କ ପକ୍ଷରେ ବାସ୍ତବିକ୍ ଏହା ବିପଜ୍ଜନକ ।

ଓ୍ୱାଶିଂଟନରେ ପ୍ରଥମ ବର୍ଷ ସମ୍ଭବରେ ଫ୍ରାଙ୍କଲିନଙ୍କର ସବୁଠୁ ବଳି ବଡ଼କାମ ହେଲା ଆମ ଲାଟିନ୍ ପ୍ରତିବେଶୀ ବନ୍ଧୁମାନଙ୍କ ମଧ୍ୟରେ ଯେଉଁ ଅସଦ୍-ଭାବ ଥିଲା, ତାହାର ଦୂରୀକରଣ କରାଇବା । ସେ ସବୁବେଳେ ମନେ କରୁ-ଥିଲେ, ସେମାନଙ୍କ ମଧ୍ୟରେ ଆମମାନଙ୍କ ମନୋଭାବ ଠିକ୍ ଯେପରି ବିରୁଦ୍ଧବାଦୀ ବଡ଼ ଭାଇଙ୍କ ପରି । ସେଥିପାଇଁ ପ୍ରତିବେଶୀମାନଙ୍କ ପ୍ରତି ବିଚକ୍ଷଣ ହେବାକୁ ପଡ଼ିବ । ପ୍ରତିବେଶୀମାନଙ୍କ ମଧ୍ୟରେ ସ୍ନେହ ଓ ପ୍ରୀତିର ପ୍ରତିଷ୍ଠା କରିବାକୁ ହେବ । ନଭେମ୍ବର ନିର୍ବାଚନ ପରେ ଏହି ନୀତି କାର୍ଯ୍ୟକାରୀ

କରିବା ପାଇଁ ସେ ବୁଏନୋସ ଆୟାର୍ସରେ ୧୯୩୬ ମସିହାରେ ଅନ୍ତମାର୍କିନ ଶାନ୍ତି ସଭାରେ ଯୋଗ ଦେଇ ବ୍ୟକ୍ତିଗତ ପ୍ରଚେଷ୍ଟାହିଁ କରିଥିଲେ । ଏହି ଭ୍ରମଣରେ ଯେଉଁ ସ୍ପନ୍ଦନ ଆସିଥିଲା, ଫ୍ରାଙ୍କଲିନ ସେଥିରେ ଗଭୀର ଭାବରେ ଅଭିଭୂତ ହୋଇ ପଡନ୍ତି । ସମୃଦ୍ଧି ଯେଉଁ ଆକାଂକ୍ଷା ତାଙ୍କ ମନରେ ଥିଲା, ତାହାର ସୂତ୍ରପାତ କରିବାରେ ସେ ସକ୍ଷମ ହୋଇଛନ୍ତି । ଏହା ଭାବି ତାଙ୍କର ଆନନ୍ଦହିଁ ହୁଏ । ଫେରିବା ବାଟରେ ସେ ଉରୁଗୋଏରେ ରହନ୍ତି । ସେଠାରୁ ବ୍ରେଜିଲକୁ ଯାଆନ୍ତି । ତାଙ୍କ ଆଗମନ ଉପଲକ୍ଷରେ ଯେଉଁ ଉତ୍ସାହ ଦେଖାଦିଏ, ସେଥିରେ ସେ ଖୁବ୍ ଖୁସୀ ହୁଅନ୍ତି ।

ପ୍ରେସିଡେଣ୍ଟ ଭାର୍ଗାସ ଓ ତାଙ୍କର ସହଧର୍ମିଣୀ ଅଣ୍ଡର ସେକ୍ରେଟାରୀ ଓ୍ୱେଲ୍ସ ସବୁ ଜାଣନ୍ତି । ସେମାନେ ମୋତେ କିଛି ଉପହାର ପଠାଇବାକୁ ଚାହାନ୍ତି । ସେମାନେ ଜାଣିଥିଲେ ଯୁକ୍ତରାଷ୍ଟ୍ରର କୌଣସି ପ୍ରେସିଡେଣ୍ଟ ସରକାରୀ ପଦରେ ଅଧିଷ୍ଠିତ ଥିବା ସମୟରେ ବିଦେଶୀ ସରକାରଙ୍କ ଠାରୁ କୌଣସି ଉପଢୌକନ ଗ୍ରହଣ କରି ନ ପାରନ୍ତି । ମାଦାମ ଭାର୍ଗାସ ମୋ ପାଖକୁ ଗୋଟିଏ ସୁନ୍ଦର ଚାର ସରଞ୍ଜାମ ପଠାନ୍ତି ଓ ସ୍ୱାମୀ-ସ୍ତ୍ରୀ ଦୁହେଁ ମିଳି ସେମାନଙ୍କ ସଂଗୃହୀତ ମାଳା ମଧ୍ୟରୁ ଖଣ୍ଡେ ଉପହାର ଦିଅନ୍ତି । ମାଳା ଖଣ୍ଡିକ ପୃଥିବୀ ମଧ୍ୟରେ ସବୁଠୁ ବେଶୀ ଦାମ ଓ ବଡ ଭିତରୁ ଖଣ୍ଡେ । ସ୍ୱାମୀ ଫେରି ଆସି ମୋତେ ଉପହାର ଗୁଡ଼ିକ ଦିଅନ୍ତି । ଉପହାର ପାଇ ମୁଁ ଖୁବ୍ ଖୁସୀ ହୁଏ । କିନ୍ତୁ ମୋର ମନେ ହେଲା ହ୍ୱାଇଟ ହାଉସରେ କିମ୍ବା ସରକାରୀ ଉତ୍ସବ ବ୍ୟତୀତ ଏତେ ବଡ଼ ଚାର ସରଞ୍ଜାମ ବ୍ୟବହାର କରିବା ଚଳିବ ନାହିଁ ॥ ପ୍ରସ୍ତର ଖଣ୍ଡିକୁ ହ୍ୱାଇଟ ହାଉସରେ ଥିବା ମୋର ସିନ୍ଦୁକ ମଧ୍ୟରେ ରଖି ଦେଲି । ଫ୍ରାଙ୍କଲିନଙ୍କ ମୃତ୍ୟୁ ପରେ ମୁଁ ଚାର ସରଞ୍ଜାମଟିକୁ ବିମାନ ବହନକାରୀ ଜାହାଜ ଇଉ, ଏସ, ଏସ, "ଫ୍ରାଙ୍କଲିନ ଦ ରୁଜଭେଲଟ"କୁ ଦାନ କରେ । ମୋ ମନେ ହୁଏ ଯେତେବେଳେ ଜାହାଜ ଖଣ୍ଡି ଶୁଭେଚ୍ଛା ସଫର ରେ ଯାଏ, ସେତେବେଳେ ବ୍ରେଜିଲବାସୀଗଣ ଏହି ଚାର ସରଞ୍ଜାମକୁ ଦେଖି ଭାରି ଖୁସୀ ହୁଅନ୍ତି ।

ମିଷ୍ଟାର ଓସ୍ୱେଲସ ମୋତେ କହନ୍ତି ମିଲା ଖଣ୍ଡିକ ଯେବେ ଫ୍ରାଙ୍କ-ଲିନଙ୍କ ଅନ୍ୟାନ୍ୟ ସଂଗୃହିତ ଜିନିଷ ମାନଙ୍କ ସହିତ ହାଇଡ ପାର୍କସ୍ଥ ଲାଇବ୍ରେରୀରେ ରଖାଯାଏ, ତାହେଲେ ବ୍ରେଜିଲବାସୀଗଣ ଖୁବ୍ ଖୁସୀ ହେବେ। ଏଇଟି ଏବେ ବି ସେଠାରେ ଅଛି। ମନେ ହୁଏ ଜନସାଧାରଣ ଏଥିରେ ଉତ୍ସାହ ପାଉଛନ୍ତି। ସଙ୍ଗେ ସଙ୍ଗେ ଏହା ବ୍ରେଜିଲ ବାସୀଙ୍କର ସହୃଦୟତା ଓ ବଦାନ୍ୟତାର ପ୍ରତୀକ ହୋଇ ରହିଛି।

ମୋ ସ୍ୱାମୀ ମୋତେ ଭଲ ଭାବରେ ଚିହ୍ନିଥିଲେ। ସେଇଥିପାଇଁ ସେ ମିଲାର ଗୋଟିଏ ଶ୍ରେଷ୍ଠ ପଦକ ଆଣି ମୋତେ ଉପହାର ଦେଇଥିଲେ। ମୁଁ ମଝିରେ ମଝିରେ ତାକୁ ପିନ୍ଧୁଥିଲି। ମୋତେ ସେଟିକୁ ସେ ଦେଇ କହିଲେ "ମୁଁ ଏହି ସାମାନ୍ୟ ଜିନିଷଟିକୁ ଏଇଥିପାଇଁ ଉପହାର ଦେଉଛି, କାରଣ ମୁଁ ନିଶ୍ଚିତ ଭାବରେ ଜାଣେ ଯେ ତୁମେ ବଡ ପଥର ଖଣ୍ଡି କେବେ ହେଲେ ପିନ୍ଧିବ ନାହିଁ।

ମୋର ସ୍ୱାମୀ ବରାବର ମୋ ଜନ୍ମ ଉତ୍ସବର ପରିକଳ୍ପନା କରୁଥିଲେ। ସେ ଜାଣୁଥିଲେ ମୁଁ ବେଶୀ ଜାକଜମକ ପସନ୍ଦ କରେନା। ସେଇଥିପାଇଁ ଯେଉଁ ସବୁ ବନ୍ଧୁବାନ୍ଧବ ମୋର ଖୁବ ଆତ୍ମୀୟ, କେବଳ ସେହିମାନଙ୍କୁ ଭୋଜିକୁ ନିମନ୍ତ୍ରଣ କରୁଥିଲେ। ଆକର୍ଷଣର କେନ୍ଦ୍ର ନ ହେଲେ ମୁଁ ଖୁସୀ ହେଉଥିଲି।

ହ୍ୱାଇଟ ହାଉସରେ ପ୍ରଥମ ବର୍ଷ ସମୂହରେ ଆମେ ସବୁ ଠିକ୍ କଲୁ ଛୁଟିରେ ଯେତେ ବେଶୀ ପାରୁ ଓ୍ୱାଶିଂଟନରେ କଟାଇବୁ। ବିଶେଷ କରି ବଡ ଦିନର ଛୁଟିତ ନିଶ୍ଚୟ କଟାଇବାକୁ ହେବ। ପୁଅ ଝିଅ ସବୁ ବାହା-ସାହା ନ ହେବା ଯାଏ, ଆମେ ସବୁବେଳେ ଚେଷ୍ଟା କରୁଥିଲୁ ଯଦ୍ୱାରା ପରିବାରର ସମସ୍ତ ସଦସ୍ୟ ବଡ଼ଦିନ ଛୁଟିରେ ଏକତ୍ରିତ ହୋଇପାରୁ। ବଡଦିନର ପ୍ରତ୍ୟୁଷରେ ଆମ ଶୋଇବାଘରେ ସବୁରି ପାଇଁ ମୋଜା ଟଙ୍ଗାହୋଇ ରହିବ ଏହାଥିଲା ଆମର ନୀତି। ପିଲାପିଲାଏ ଉଠି ଆମକୁ ଉଠାଉ ଥିଲେ। ବଡ଼ଦିନର ଆଗଦିନ ଆମର କ୍ରୀଷ୍ଟମାସ ଗଛ ତିଆରି ହୋଇ ଯାଉଥିଲା।

ବଡ଼ ଖୁସି ହିଁ ସବୁ ତାକୁ ସଜାଇବାର ଭାର ନେଉଥିଲେ । ଫ୍ରାଙ୍କଲିନ ସବୁବେଳେ କେଉଁଠାରେ କେଉଁ ଅଳଙ୍କାର ଓ କେଉଁଠାରେ କାଗଜ ଟିଣ୍ଟେର ଓହଳାଇବାକୁ ହେବ, ତାହା ସେ ଦେଖାଇ ଦେଉଥିଲେ । ଯୁଦ୍ଧ ହୋଇ-ଗଲା ପରେ ବି ବଞ୍ଚିଥିବା ଯାଏ, କେତେବେଳେ ପ୍ରକୃତ ମହମ ଛଡ଼ା ଆଉ କିଛି ବ୍ୟବହାର କରିବାକୁ ଦେଉ ନଥିଲେ । ତାଙ୍କର ରାଜନୈତିକ ମତବାଦ ଅଗ୍ରସର ହେଲେ ହେଁ ସେ ଗ୍ରେଟବ୍ରେଟ ବ୍ୟାପାରରେ ଆଶ୍ଚର୍ଯ୍ୟ ଭାବରେ ପୁରୁଣା ନୀତିକୁ ଜାପଟି ଧରି ରଖିଥିଲେ ।

ବଡ଼ ଦିନର ଆଗଦିନ ସକାଳୁ ମୁଁ ଓ ମୋର ସ୍ୱାମୀ ହ୍ୱାଇଟ ହାଉସର କର୍ମଚାରୀ ଓ ଗୋଏନ୍ଦା ବିଭାଗର ଲୋକମାନଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ଆୟୋଜନ କରୁଥିଲୁ । ସେ ସମସ୍ତଙ୍କୁ ଗୋଟିଏ କରି ଉପହାର ଦେଉ-ଥିଲେ । ବଡ଼ଦିନର ଶୁଭେଚ୍ଛା ମଧ୍ୟ ଜଣାଉଥିଲେ । ସନ୍ଧ୍ୟାବେଳେ ଯେଉଁମାନେ ଘରକାମ କରୁଥିଲେ, ଯଥା:—ସୋଫାର, ପୋଲିସ ଏମାନଙ୍କୁ ବି ପାର୍ଟି ଦିଆ ହେଉଥିଲା । ଏହି ଅପରାହ୍ନ ପାର୍ଟିରେ ସମସ୍ତଙ୍କୁ ଜଣାଇ ଦିଆ ଯାଉଥିଲା ଯେ, ସେମାନେ ଇଚ୍ଛାକଲେ ତାଙ୍କର ସ୍ୱ ସ୍ୱ ଆତ୍ମୀୟବର୍ଗଙ୍କୁ ସଙ୍ଗରେ ଆଣି ପାରନ୍ତି । ୧୬ବର୍ଷରୁ ନିମ୍ନ ବୟସ୍କ ବାଳକାମାନଙ୍କୁ ଗୋଟିଏ ଲେଖା ଉପହାର ଦିଆ ହେଉଥିଲା । ପ୍ରତି କର୍ମଚାରୀଙ୍କୁ କିଛି ଟଙ୍କା ଓ କିଛି ଭଲ ମିଷ୍ଟାନ୍ନ ଦିଆ ହେଉଥିଲା । ଆମେ ସବୁ ରକ୍ଷୀମାନଙ୍କୁ ମୋଟାମୋଟି ରୁମାଲ ନେକ୍‌ଟାଇ ବା ଫଳର କେକ୍ ଓ ଭଲ ମିଷ୍ଟାନ୍ନ ଉପହାର ଦେଉଁ ।

ବଡ଼ଦିନ ଆଗ ସପ୍ତାହରେ ମୁଁ ଦିନକ ପାଇଁ ହାଇଡ ପାର୍କକୁ ଯାଏ । ସେଠାରେ ଯେଉଁମାନେ ଥାଆନ୍ତି ବା ଆମର କାମ କରନ୍ତି, ସେମାନଙ୍କ ମଧ୍ୟରେ ଉପହାର ବିତରଣ କରିହୁଏ । ଯଦି ବଡ଼ଦିନ ପରେ ସେଠାକୁ ଯିବାକୁ ପଡୁଥିଲା. ଆମେ ଘରେ ଭୋଜି ଦେଉଥିଲୁ । ପରେ ହାଇଡ ପାର୍କସ୍ଥ ଘରେ ସାମରିକ ବିଦ୍ୟାଳୟ ବସିଲା । ଆମେ ସେଠାରେ ସୈନିକମାନଙ୍କ ପାଇଁ ଦୁଇଟି ଅପରାହ୍ନ ପାର୍ଟି ଦେଇଥିଲୁ । ଫ୍ରାଂକଲିନ ନୂତନ ଭର୍ତ୍ତିହେବା ସୈନ୍ୟମାନଙ୍କ ଚାଲି ଚଳନ ଦେଖି ଖୁବ ଉପଭୋଗ କରୁଥିଲେ । ତାଙ୍କୁ

ପ୍ରଥମରେ ଦେଖି ସେମାନେ ଏପରି ଜଡ ସଡ ହୋଇ ପଡୁଥିଲେ ଯେ ଅଭିବାଦନ କପରି ଭାବରେ କରିବାକୁ ହୁଏ, ତାହା ଏକା ବେଳେକେ ଭୁଲି ଯାଇଥିଲେ । କେତେବେଳେ ବା ବନ୍ଧୁକ ଧରିବାର ମୌଳିକ ଉପାୟ ଖୋଜ ବାହାର କରୁଥିଲେ ।

ଓ୍ୟାଶିଂଟନରେ ବଡଦିନ ଆଗ ଦିନଟି ମୁଁ କର୍ମବ୍ୟସ୍ତତା ମଧ୍ୟରେ କଟାଉଥିଲି । ନ୍ୟାଶନାଲ ଥିଏଟାରରେ ଦୁସ୍ଥ ପିଲା ପିଲାଙ୍କପାଇଁ ଓ୍ୱେଲ-ଫେୟାର କାଉନ୍‌ସିଲରୁ ଯେଉଁ ଉତ୍ସବ କରା ହେଉଥିଲା, ସେଠାରୁ ଆରମ୍ଭ ହେଉଥିଲା ମୋର ବ୍ୟସ୍ତତା । ପରେ ସ୍ୱାମୀଙ୍କ ସହିତ ସରକାରୀ ଦପ୍ତର ବୁଲି ବୁଲି ସମସ୍ତଙ୍କୁ ବଡଦିନର ଶୁଭେଚ୍ଛା ଜଣାଉଥିଲୁ ।

ମଧ୍ୟାହ୍ନ ଭୋଜନ ସମୟରେ ମୁକ୍ତଫୋର୍ସର ପ୍ରଧାନ କାର୍ଯ୍ୟାଳୟରେ ଉପସ୍ଥିତ ରହିବାକୁ ପଡୁଥିଲା । ଖାଦ୍ୟ ଟୋକେଇ ସବୁ ବାଣ୍ଟିବା ଆଗରୁ ସେଠାରେ ଉପାସନା ହେଉଥିଲା । ପରେ ଯାଉଥିଲି ମାର୍କିନ ସ୍ୱେଚ୍ଛାସେବକ ସଂଘକୁ । ସେଠାରେଓ ଉପାସନା ଓ ଖାଦ୍ୟ ବିତରଣ କରା ହେଉଥିଲା । ପରେ ଠିକ ସମୟରେ ଘରକୁ ଫେରି ପୂର୍ବଘରେ ଅପରାହ୍ନ ପାର୍ଟିପାଇଁ ହାଜର ହେଉଥିଲୁ ।

ପାର୍ଟିର ପରେ ସ୍ୱାମୀ, ମୁଁ ଓ ପରିବାରର କୌଣସି ସଦସ୍ୟ ସାଙ୍ଗରେ ଥିଲେ, ସେମାନଙ୍କୁନେଇ ଆମ୍ଭେମାନେ ବଡ଼ଦିନର 'ଖ୍ରୀଷ୍ଟମାସଟ୍ରୀ' ଜଳାଇ-ବାର ସମବେତ ଉତ୍ସବରେ ଯୋଗଦେଉଁ । ସେଠାରେ ମୋର ସ୍ୱାମୀ ବଡ-ଦିନର ଅଭିଭାଷଣ ଦେଇ ଫେରି ଯାଆନ୍ତି ହ୍ୱାଇଟ ହାଉସକୁ । ମୁଁ ଓ୍ୟାଶିଂଟନର ଗୋଟିଏ ବସ୍ତି ଅଞ୍ଚଳକୁ ବଡଦିନର "ଖ୍ରୀଷ୍ଟମାସ୍‌ଟ୍ରୀ" ଅଲୋକ ଜଳାଇବା ଉତ୍ସବକୁ ଯାଉଥିଲି । ସେଠାରେ ବଡଦିନର ସଙ୍ଗୀତ ମଧ୍ୟ ଗାଉଥିଲି ।

ଫେରିଆସି ଦେଖୁଥିଲି, ପରିବାରର ସମସ୍ତଙ୍କୁ ଏକାଠିକରି ଡିକେନ୍‌ସଙ୍କର "ଖ୍ରୀଷ୍ଟମାସର କ୍ୟାରଲ" ବହି ଖଣ୍ଡିକ ସ୍ୱାମୀ ପଢି ଶୁଣାଉ ଥିବାର । ସେ ପୁସ୍ତକର ବିଭିନ୍ନ ଅଂଶ ଅଦଳ ବଦଳ କରି ପଢ଼ନ୍ତି । ସମୟ ସମୟରେ

ସାରା ବହିଟା ଯାକ ବି ପଢ଼ନ୍ତି । ସମସ୍ତ ସମୟରେ ଅଧିକାଂଶ ସେଥିରୁ ବାଦ୍ ଦେଇ ଯାଆନ୍ତି । ଅଶରୀରୀ ଆତ୍ମାର ଭୂମିକା ପଢ଼ିବା ସମୟରେ ସେ ନାଟକୀୟ ଭଙ୍ଗୀର ଅବତାରଣା ମଧ୍ୟ କରୁଥିଲେ । ସେ ଜୋରରେ କିଛି ପଢ଼ିଲା ବେଳେ, ଅଭିନୟ କରି ପଢୁଥିଲେ । ଏଥିରେ ସେ ଛୋଟ ଛୋଟ ପିଲାଙ୍କ ମନକୁ ଆକୃଷ୍ଟ କରି ପାରୁଥିଲେ । ଏପରି ପଢ଼ିବାରୁ ସେମାନେ ବୁଝିବା ଆଗରୁ ତାଙ୍କ ପଢ଼ାକୁ ମନଦେଇ ଶୁଣୁଥିଲେ । ନୈଶଭୋଜନ ପରେ ସେ, "ଖ୍ରୀଷ୍ଟମାସ କ୍ୟାରଲ୍" ଶେଷ କରୁଥିଲେ । ତାପରେ ମୋଜା ଗୁଡ଼ିକୁ ଉପହାର ଜିନିଷ ଦେଇ ଭର୍ତ୍ତି କରା ହେଉଥିଲା । ଏଥର ମୁଁ ଓ ମିସ୍ ଟମସନ୍ ସେଣ୍ଟଟମାସ ଗୀର୍ଜାକୁ ଦ୍ୱିପ୍ରହର ରାତ୍ରି ଉପାସନାରେ ଯୋଗ ଦେବାକୁ ଯାଇଥିଲୁ ।

ସ୍ୱାମୀ ନୂଆ ବର୍ଷର ଆଗଦିନ ହ୍ୱାଇଟ ହାଉସରେ ରହିବାକୁ ପସନ୍ଦ କରୁଥିଲେ । ମୁଁ ଅଳ୍ପ କେତେଜଣ ବନ୍ଧୁଙ୍କୁ ଡାକି ଆଣିଥିଲି । ପରେ ଦ୍ୱିପ୍ରହର ରାତ୍ରିରେ ଗୋଲ ଘରର ରେଡ଼ିଓ ଖୋଲାଦିଆ ହେଉଥିଲା । ପ୍ରଥାନୁଯାୟୀ ଏଗ୍ ନଗ୍ ( କ୍ରିମ, ଚିନି, ମଧୁ, ଏଲକହଲ ଜାତୀୟ ତରଳ ପଦାର୍ଥ ମିଶ୍ରିତ ପାନୀୟ ) ହାତରେ ନେଇ ଦ୍ୱିପ୍ରହର ରାତରେ ନବବର୍ଷ ଆଗମନ ପ୍ରତୀକ୍ଷାରେ ଅପେକ୍ଷା କରି ରହେ । ଫ୍ରାଂକଲିନ ତାଙ୍କର ବିରାଟ ଚେୟାରଟି ଉପରେ ବସନ୍ତି । ପ୍ରେସିଡେଣ୍ଟ ହିସାବରେ ସେ ତାଙ୍କର ଗ୍ଲାସ ଉଠାଇ କହନ୍ତି, "ଆମେରିକା ଯୁକ୍ତରାଷ୍ଟ୍ର ଉଦ୍ଦେଶ୍ୟରେ ।" ଉପରେ ଆମେସବୁ ଉଠି ଠିଆ ହୋଇ ତାଙ୍କର କଥାର ପୁନରାବୃତ୍ତି କରୁ । ସେହି ଘରେ ଦ୍ୱିପ୍ରହର ରାତ୍ରିରେ କଥା ସମୂହ ଯେପରି ବିଶେଷ ତାତ୍ପର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ବୋଲି ମନେ ହେଉଥିଲା । ପରବର୍ତ୍ତୀ ବ୍ୟକ୍ତିଗତ ପ୍ରୀତି ସମ୍ଭାଷଣରେ ସେ ଗାମ୍ଭୀର୍ଯ୍ୟ ଯୋଗାଉଥିଲେ । ଖାଇବା ବେଳେ କିମ୍ବା ପାରିବାରିକ ଆଲୋଚନା ପ୍ରସଙ୍ଗରେ ଫ୍ରାଂକଲିନ ନିଜେ କ'ଣ କରୁଛନ୍ତି, ତାହା ପ୍ରକାଶ କରିବାକୁ ଚାହୁଁ ନଥିଲେ । ଆମେସବୁ ମନେ କରୁଥିଲୁ ଅଫିସ କଥାରୁ ତାଙ୍କୁ ସାମୟିକ ଅବ୍ୟାହତି ଦେବା ଉଚିତ୍ । କିନ୍ତୁ କୌଣସି ବିଷୟରେ

ମତାମତ ନେବାର ଲୋକ ଉପସ୍ଥିତ ଥିଲେ ଆମେ ସବୁ ତାଙ୍କ ସପକ୍ଷର ଓ ବିପକ୍ଷର ଯୁକ୍ତି ଗୁଡ଼ିକ ଜାଣିପାରୁ ।

କେତେଗୁଡ଼ିଏ ବିଷୟରେ ମୁଁ ଦୃଢ଼ମତ ପୋଷଣ କରୁଥିଲି । ରାଜନୀତି କାରଣ ହେତୁ ତାଙ୍କର ଆସ୍ଥାଥିବା କାମବି ସେ ଅନେକ ସମୟରେ କରି ପାରୁନଥିଲେ । ଏଥିଯୋଗୁ ସମସ୍ତ ସମୟରେ ମୁଁ ବିରକ୍ତ ହେଉଥିଲି ।

ଲିଅିଂ ବିରୋଧି ବିଲ ଓ ପୋଲଟ୍ୟାକ୍ସ ରଦ ନିମିତ୍ତ ଯଥା ସାଧ୍ୟ ଚେଷ୍ଟା ମୁଁ କରିଥିଲି । ଫ୍ରାଙ୍କ୍‌ଲିନ୍ ଏହି ବ୍ୟାପାର ଦୁଇଟିରେ ମୋ ସହିତ ଏକମତ ଥିଲେ । ହେଲେ, ସେ ଦୁଇଟି ଆଇନ ପରିବର୍ତ୍ତିତ ହୋଇ ନାହିଁ । ଏ ବିଷୟରେ ମୁଁ ପ୍ରତିବାଦ୍ କରିବାରୁ ସେ ସହଜଭାବରେ ଉତ୍ତର ଦେଉଥିଲେ । ପ୍ରଥମରେ ଯାହା କରିବା ଖୁବ୍ ଜରୁରୀ, ସେ ଗୁଡ଼ିକ ଆଗ କରିବାକୁ ପଡ଼ିବ । ଏବେ ମତାନୈକ୍ୟ ଆଇନ ସବୁ ପାସ କରି ଯାଏନାହିଁ । ସେପରିକଲେ ବହୁ ଭୋଟ ହରାଇବାକୁ ପଡ଼ିବ । ଏହାଠାରୁ ଏପରିସବୁ ଗୁରୁତ୍ୱ ପୂର୍ଣ୍ଣ ଜରୁରି ଆଇନ ପାସ କରାଇବାକୁ ହେବ, ଯଦ୍ୱାରା ମୁଁ ଭୋଟ ସବୁକୁ ସପକ୍ଷରେ ପାଏ । ଏ ସମୟରେ ଇଉରୋପର ଅବସ୍ଥା ଝୋପ ହୋଇଥାଏ । ସବୁରି ଆଗରୁ ଆବଶ୍ୟକ ହୋଇପଡେ ଯୁଦ୍ଧର ଜରୁରୀ ବ୍ୟବସ୍ଥା କରିବା । ଏଇଟା ଥିଲା ଅବଶ୍ୟ କର୍ତ୍ତ-ବ୍ୟର ଜିନିଷ । ଫ୍ରାଙ୍କ୍‌ଲିନ୍ ଜାଣିଥିଲେ, ନିଜ ଦଳରେ ଅରେ ଭାଙ୍ଗଣ ଧରିଲେ ଏହି ଅତ୍ୟାବଶ୍ୟକୀୟ ଆଇନ ଗୁଡ଼ିକୁ ପାସକରାଇ ପାରିବେ ନାହିଁ ।

ପ୍ରେସିଡେଣ୍ଟଙ୍କ ସହ୍ୟଶକ୍ତି ସମ୍ବନ୍ଧରେ ସାଧାରଣ ମନୁଷ୍ୟ କୌଣସି ଖବରାଖବର ରଖନ୍ତି ନାହିଁ । ବାହାରର ନାନାପ୍ରକାର ଚାପରୁ ଅନେକ ସମୟରେ ତାଙ୍କ ନିଜ ଇଚ୍ଛାକୁ ସଂଯତ କରିବାକୁ ପଡେ । ଉଦାହରଣ ସ୍ୱରୂପ ଯୁଦ୍ଧୋନ୍ମାଦନା କଥା ଧରାଯାଉ । ବକ୍ତୃତାରେ ଯେ ଏହାର ପ୍ରଭାବ ପଡ଼ିଛି ତାହାନୁହେଁ, ଶାସନଗତ ଶୃଙ୍ଖଳା ବ୍ୟବସ୍ଥା ମଧ୍ୟ ଦେଖା ଦେଇଥିଲା ।

ସେମାନଙ୍କର ନିଜର ମତାମତ ସେ ଯେପରି ସମର୍ଥନ କରନ୍ତି, ସେଥି-ପାଇଁ ସାଧାରଣତଃ ଲୋକେ ଆସି ତାଙ୍କୁ ପୀଡ଼ା ପୀଡ଼ି କରନ୍ତି । ମୁଁ ହୁଏତଃ ତାଙ୍କ ନିକଟରେ ସେମାନଙ୍କ କଥା ଜଣାଏ । ନିଜର ପୂରାପୂରି ସମର୍ଥନ ଥିବା ସତ୍ତ୍ୱେ ତାଙ୍କୁ ଏପରି ଭାବରେ କାମ କରିବାକୁ ମୁଁ ଅନୁରୋଧ କରି ନାହିଁ । ମୋର ମନେଅଛି ପୁରୁଣା ଜନନେତାଙ୍କର ଏପରି ସବୁ ଟିକିନିଖି ଖବର ସେ ହୁଏତ ଜାଣୁଥିଲେ । ମୁଁ କିନ୍ତୁ ତାହା ଜାଣେ ନାହିଁ । ଯେଉଁମାନେ ମୋ ପାଖକୁ ଆସନ୍ତି, ସେମାନଙ୍କ ପାଇଁ ଯେତେ ପାରୁ ସେତେ କରୁ । ଅବଶ୍ୟ ମୋର ସ୍ୱାମୀଙ୍କ ମତାମତ କ'ଣ ହେବ, ତାହା କେଭେହେଲେ କହି ନାହାନ୍ତି । ସ୍ୱାମୀଓ ମଧ୍ୟ ମୋତେ କେତେବେଳେ ହେଲେ ମତାମତ ପ୍ରକାଶ କରିବାରେ ବାଧା ଦେଇ ନାହାନ୍ତି । ସୁତରାଂ ଅନେକ ସମୟରେ ପ୍ରତିବାଦ କଲାବେଳେ ଖୁବ ସାବଧାନତାର ସହିତ କରିଛି ।

ଜାତୀୟ ଯୁବସଂଘ ପ୍ରତିଷ୍ଠା କରିବା ପ୍ରସ୍ତାବ ତାଙ୍କ ନିକଟରେ କେବଳ-ମାତ୍ର ଥରେ ଉତ୍ଥାପନ କରିବା ପାଇଁ ରାଜି ହୋଇଥିଲି । ହ୍ୟାରି ହାପକିନ୍‌ସ ସେତେବେଳେ ଡବ୍ଲ୍ୟୁ ପି ଏ ର କର୍ତ୍ତା ଥିଲେ ଓ ତାଙ୍କର ସହକାରୀ ଥିଲେ ଅବ୍ରେହଲିୟାମ୍‌ସ । ଭବିଷ୍ୟତକୁ ଏ ଦୁଇଜଣ ଜାତୀୟ ଯୁବକ ସଂଘର କର୍ତ୍ତା । ସେମାନେ ଜାଣୁଥିଲେ, ଦେଶର କିଶୋରମାନଙ୍କ ଅବସ୍ଥା ଦେଖି ମୁଁ ସେତେବେଳେ ଖୁବ ବିଭ୍ରାନ୍ତ ହୋଇ ପଡ଼ିଛି । ସେମାନେ ଦିନେ କହିଲେ, "ଆମେସବୁ ଏଇଥିପାଇଁ ଆପଣଙ୍କ ପାଖୁ ଆସିଛୁ । ଏବେବି ପ୍ରେସିଡେଣ୍ଟଙ୍କୁ କହିବାର ସମୟ ହୋଇନାହିଁ ବୋଲି ଆମେ ମନେକରୁଁ । ସରକାର ମଧ୍ୟରେ ଏପରି ଲୋକ ଅଛନ୍ତି, ଯେଉଁମାନେ ଏହି ସଂଘ ପ୍ରତିଷ୍ଠାର ବିରୋଧିତା କରିବେ । ଏହାଠାରୁ ବେଶୀ ରାଜନୈତିକ ପ୍ରତିକ୍ରିୟା ମଧ୍ୟ ଦେଖା ଦେଇପାରେ । ଦେଶ ଏ ପ୍ରସ୍ତାବ ଗ୍ରହଣ କରିବାକୁ ପ୍ରସ୍ତୁତ କି ନା, ତା ମୁଁ ଜାଣେନା । ପ୍ରେସିଡେଣ୍ଟଙ୍କୁ ପଚାରିବାକୁ ମଧ୍ୟ ଆମେମାନେ ଅନିଚ୍ଛୁକ । ସରକାରୀ ଭାବରେ "ହଁ, ନା" କରିବାର ଅବସର ତାଙ୍କୁ ଦେବାକୁ ଚାହୁଁ ନା ।

ମୁଁ ଖଜହୁଏ। ଫ୍ରାଂକଲିନଙ୍କୁ ସେମାନଙ୍କର ମତାମତ ଓ ଆଶଂକାର କଥା ଜଣାଇବ ଓ ତାଙ୍କ ମନୋଭାବ ମଧ୍ୟ ଜାଣିବ। ମୁଁ ପ୍ରତୀକ୍ଷାରେ ରହିଥାଏ। ତାଙ୍କ ସଙ୍ଗରେ ଆଲାପ ଆଲୋଚନା କରିବା ସମୟ ନିର୍ଦ୍ଧିଷ୍ଟ ଥାଏ। ସେ ଶୋଇବା ଆଗରୁ ମୁଁ ଯାଇ ତାଙ୍କ ଘରେ ହାଜର ହୁଏ। ଗୋଟିଏ ମାତ୍ର କଥା ତାଙ୍କୁ କହେ। ସେ ଆଗରୁ କିଛି କିଛି ଜାଣିଥିଲେ ! ଏଥର ହ୍ୟାରିହ୍ୟାପ୍‌କିନସ୍ ଓ ଅବ୍ରେ ଉଇଲିୟମସଙ୍କ କଥା ମଧ୍ୟ ଉତ୍ଥାପନ କରେ। ସେ ଆମଆଡ଼କୁ ବୁଲି କହିଲେ, "ଏଇଟା କରିବା ଉଚିତ୍ ବୋଲି କ'ଣ ସେମାନେ ମନେ କରନ୍ତି ?" ମୁଁ ଉତ୍ତର ଦିଏ, "ତାଙ୍କର ଧାରଣା, ଏଥିରେ ତରୁଣଗଣ ପ୍ରଭୂତ ଉପକୃତ ହେବେ। କିନ୍ତୁ ରାଜନୈତିକ ଦୃଷ୍ଟିକୋଣରୁ ଏ କାମ ଠିକ ହେବନାହିଁ। ଏକଥା ସେମାନେ ମନେ ରଖିବାକୁ କହିଥିଲେ। ସେମାନେ ମନେ କରନ୍ତି ଜାର୍ମାନୀ ତରୁଣମାନଙ୍କର ନିୟନ୍ତ୍ରଣ ଦେଖି ବହୁଲୋକ ଉଦ୍‌ବୁଦ୍ଧ ହୋଇ ଉଠିଛନ୍ତି, ସେମାନେ ଆହୁରି ମନେ କରୁଛନ୍ତି ଆମେସବୁ ବୋଧହୁଏ ଏ ଦେଶରେ ଅନୁରୂପ ଚେଷ୍ଟା କରୁଅଛୁ। ସେମାନେ ଏହି ପ୍ରସ୍ତାବକୁ ବୁଏତଃ ସ୍ୱୀକାର କରିବେ ନାହିଁ।" ଏଥର ଫ୍ରାଂକଲିନ କହିଲେ, "ଏଥିରେ ତରୁଣମାନଙ୍କର ଯେବେ ମଙ୍ଗଳ ହୁଏ, ତେବେ ତାହାହିଁ କରିବାକୁ ପଡ଼ିବ। ମୋର ମନେହୁଏ ସମାଲୋଚନା ହୁଏତଃ ଆମ୍ଭେମାନେ ସହି ପାରିବୁ, କିନ୍ତୁ ମାର୍କିନ ତରୁଣମାନଙ୍କୁ ଯେକୌଣସି ଉପାୟରେ ଜାର୍ମାନୀ ତରୁଣଙ୍କ ପରି ନିୟନ୍ତ୍ରିତ କରିହୁଏ—ଏ ବିଶ୍ୱାସ ମୁଁ କରେନା।"

ତା କିଛିଦିନ ପରେ ଏନ୍, ଓୱାଇ ଏ ଗଢ଼ି ଉଠେ। ବାସ୍ତବିକ ସେଥିରେ ତରୁଣ ମାନଙ୍କର ଖୁବ ଉପକାର ହୁଏ। ଉଚ୍ଚ ବିଦ୍ୟାଳୟ ଓ କଲେଜ ଛାତ୍ରଗଣ ଯଦ୍ୱାରା ସେମାନଙ୍କର ପଢା ଶେଷକରି ପାରନ୍ତି, ତାହାରିହିଁ ବ୍ୟବସ୍ଥା କରାହୁଏ। ବୋର୍ଡିଂରେ ଥାଆନ୍ତୁ ବା ଘରେ ରହନ୍ତୁ, ସବୁ ଛାତ୍ରଙ୍କୁ ଭିନ୍ନ ଭିନ୍ନ ବିଷୟରେ ଶିକ୍ଷା ଦେବା ବ୍ୟବସ୍ଥା କାର୍ଯକାରୀ ହୁଏ। ସିଭିଲିୟାନ୍ କନସାରଭେସନ କୋର୍ଡ କାମ ଏହି ପ୍ରତିଷ୍ଠାନ ସ୍ୱହସ୍ତରେ ବାଛି

ନେଲେ । ମୁଁ ଏଥିରେ ଭାରି ଖୁସୀ ହୁଏ । ଗର୍ବ ବି ଅନୁଭବ କରେ । ରାଜନୀତି କଥା ନଭାବି ଠିକ୍ କାମହିଁ କରୁଛୁ । ବ୍ୟାପାରଟି ରାଜନୈତିକ ଦୃଷ୍ଟି କୋଣରୁ ଜନପ୍ରିୟ ହୋଇ ଉଠେ । ଶାସନ ବିଭାଗ ମଧ୍ୟ ବଳିଷ୍ଠ ହୋଇ ଉଠିଲା ।

ମୁଁ ଯେତେବେଳେ ତାଙ୍କୁ ଯାହା କହିବାକୁ ଚାହିଁଛି, ଫ୍ରାଙ୍କଲିନ ସେଥିରେ ମୋତେ କେଭେହେଲେ ନିରୁତ୍ସାହ କରିନାହାନ୍ତି କି ବାଧା ଦେଇ ନାହାନ୍ତି, ହେଲେ ଅନ୍ୟମାନେ ଏଥିରେ ସେପରି ସନ୍ତୋଷ ଲାଭକରି ପାରି ନାହାନ୍ତି । ମୁଁ ଜାଣେ, ସାମାଜିକ କାର୍ଯ୍ୟରେ ଜାତି ସମ୍ବନ୍ଧରେ ମୋର ବିଶ୍ୱାସ ବା କାର୍ଯ୍ୟ ପଦ୍ଧତି ମହା ବିକ୍ଷୋଭର କାରଣ ହୋଇଥିଲା । ମୋର ସ୍ୱାମୀଙ୍କର ପରାମର୍ଶ ଦାତାଗଣ ଖିନ୍ନ ଓ ନିସ୍ତ ହୋଇ ପଡ଼ିଥିଲେ । ମୁଁ ବୋଧହୁଏ ରାଜନୈତିକ ଓ ସାମାଜିକ ଦିଗରୁ ମୋର ସ୍ୱାମୀଙ୍କର କ୍ଷତିହିଁ କରିବି । ସେମାନେ ହୁଏତଃ ଜାଣିଥିଲେ, ମୁଁ ସ୍ୱାମୀଙ୍କର ମତାମତ ନ ନେଇ ତାଙ୍କର ଅଜ୍ଞାତସାରେ ଏସବୁ କାମ କରୁଛି ବୋଲି ।

ତାଙ୍କ ରାଜନୈତିକ ପରାମର୍ଶଦାତାଙ୍କ ମଧ୍ୟରୁ ଅନେକ ଓ ଆମ ପରିବାର ଭିତରୁ କେତେଜଣ ଆନା ଓ ଏଲିଏଟର ବିବାହ ବିଚ୍ଛେଦ ବ୍ୟାପାରରେ ଖୁବ ଚିନ୍ତିତ ହୋଇ ପଡ଼ିଥିଲେ । ମୋର ସ୍ୱାମୀଙ୍କ ରାଜନୈତିକ ଜୀବନରେ ଏହାର ପ୍ରତିକ୍ରିୟା ଖୁବ ବିଷମୟ ହେବ ବୋଲି ସେମାନଙ୍କର ଧାରଣା ହୋଇଥିଲା । ପ୍ରତ୍ୟେକ ବିବାହ ବିଚ୍ଛେଦ ବ୍ୟାପାରରେ ଯେପରି ବିଚ୍ଛେଦ ନ ଘଟେ, ତାର ଯଥାସମ୍ଭବ ଚେଷ୍ଟା ଫ୍ରାଙ୍କଲିନ୍ କରନ୍ତି । ଯେତେବେଳେ ସେ ବୁଝିପାରିଲେ ଯେ ପିଲାଏ ବହୁ ଭାବିଚିନ୍ତି ଏପରି ସିଦ୍ଧାନ୍ତରେ ଆସି ପହଞ୍ଚିଛନ୍ତି, ସେତେବେଳେ ତାଙ୍କର ନିଜର ସ୍ୱାର୍ଥପାଇଁ ସେମାନଙ୍କ ଜୀବନରେ ପ୍ରତିବନ୍ଧକ ସୃଷ୍ଟି କରିବାଟାକୁ ସେ ମୋଟେ ପସନ୍ଦ କରୁ ନଥିଲେ । ତାଙ୍କ ମତରେ ରାଜନୈତିକଙ୍କର ଆଦର୍ଶ ଉପରେ ତାଙ୍କର ଭବିଷ୍ୟତ ଫଳାଫଳ ନିର୍ଭର କରେ । ସନ୍ତାନ ସନ୍ତତିଙ୍କର ନିନ୍ଦା ପ୍ରଶଂସା ପ୍ରଭାବ ନିଜ ଉପରେ କେବେହେଲେ ପଡ଼େ ନାହିଁ । ସେ ଯାହା ବୁଝିଥିଲେ, ତାହା

ଯଥାର୍ଥ । ଦେଶର ବହୁଲୋକ ତାଙ୍କର ଉଦ୍ଦେଶ୍ୟରେ ଦୁଃଖ ପ୍ରକାଶ କରି-ଥିଲେ । ସେମାନେ ଏହାମଧ୍ୟ ବେଶ ବୁଝି ପାରିଥିଲେ, ତାଙ୍କର ପରିବାର ସାଧାରଣ ପରିବାରଙ୍କ ଭଳି । ଏହି ଅନିଶ୍ଚିତତା ଯୁଗରେ ବହୁ ପରି-ବାରଙ୍କର ଦୁଃଖ ଏପରି ଭାବରେ ଆସନ୍ନ ହୋଇ ଆସୁଛି । ଏହା ଯୁଗରହିଁ ଦାନ ।

୧୯୩୮ ମସିହାର କଂଗ୍ରେସ ନିର୍ବାଚନ ଦିନ ଆସନ୍ନ ହୋଇ ଆସେ । ଫ୍ରାଙ୍କଲିନ୍‌ଙ୍କୁ ପୁଣି ବିବ୍ରତ ହେବାକୁ ପଡ଼ିଲା । ସେ ଦେଖିଲେ, ତାଙ୍କର ଉଦାର କର୍ମସୂଚୀକୁ କାର୍ଯ୍ୟକାରୀ କରିବାକୁ ହେଲେ ଉଦାରଚେତା କଂଗ୍ରେସ କର୍ମୀର ମଧ୍ୟ ପ୍ରୟୋଜନ । ଡେମୋକ୍ରେଟିକ ଦଳ ଖୁବ ବେଶୀ ସଂଖ୍ୟା ଗରିଷ୍ଠ ହେଲେହେଁ, କୌଣସି ବିଶେଷ ବ୍ୟାପାରରେ ସେମାନେ ସବୁବେଳେ ଏକଗୋଷ୍ଠୀ ଭୁକ୍ତ ହୋଇପାରି ନାହାନ୍ତି । ବରଂ ବହୁ ଉପଦଳର ସୃଷ୍ଟି ହୋଇଛି । ସମୟ ସମୟରେ ଏପରି ମନେ ହୋଇଛି ଯେ ଡେମୋ-କ୍ରେଟିକ ଦଳ ମଧ୍ୟରେ ଏପରି ଗୋଟିଏ ଗୋଷ୍ଠୀ ଅଛନ୍ତି, ଯେଉଁମାନେ ରିପାବ୍ଲିକାନ୍ ମାନଙ୍କ ସହିତ ସବୁ ଦିଗରୁ ମିଳିମିଶି କାମକରି ପାରନ୍ତି । ଏଥିରେ ପ୍ରେସିଡେଣ୍ଟ, ପରାମର୍ଶ ଦାତା, ଓ ମନ୍ତ୍ରୀମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି ହୁଏ ।

୧୯୩୮ ମସିହାର ଗ୍ରୀଷ୍ମ ସମୟରେ ସୁଇଡେନର ଯୁବରାଜ ଓ ଯୁବରାଣୀ ଯୁକ୍ତରାଷ୍ଟ୍ରକୁ ଆସନ୍ତି । ସେହି ଦିନରୁ ଇଉରୋପର ରାଜପରିବାର ସମୂହରୁ ଅତିଥିବର୍ଗ ଆସିବାକୁ ଆରମ୍ଭ କଲେ ।

ସୁଇଡେନର ଯୁବରାଜ ଓ ଯୁବରାଣୀ ସୁଇଡେନ ଅଧିବାସୀମାନଙ୍କର ଅଞ୍ଚଳ ସମୂହ ବୁଲି ଦେଖନ୍ତି । ସେମାନେ ଜୁଲାଇ ପହିଲା ତାରିଖରେ ହାଇଡ୍ ପାର୍କକୁ ଆସନ୍ତି । ସେଠାରେ ସେମାନଙ୍କୁ ସମ୍ମାନ ପ୍ରଦର୍ଶନାର୍ଥେ ଗୋଟିଏ ନୈଶଭୋଜର ଆୟୋଜନ ହୁଏ । ପରବର୍ଷ ମେ ମାସରେ ନିକାରାଗୁଆର ପ୍ରେସିଡେଣ୍ଟ ଓ ସେନୋରାଦ୍ୟ ସୋମୋଜାଙ୍କୁ ନୈଶଭୋଜ ଓ ସଙ୍ଗୀତ ଆଳାପରେ ଆପ୍ୟାୟିତ କରି ସାରିଲା ପରେ ଡେନମାର୍କର

ଯୁବରାଜ ଓ ଯୁବରାଣୀଙ୍କୁ ଚା ଖାଇବାପାଇଁ ନିମନ୍ତ୍ରଣ କରୁ । ଜୁନ ମାସରେ ଦକ୍ଷିଣ ଆଫ୍ରିକାରୁ ଜଣେ ଅତିଥି ଆସନ୍ତି । ବ୍ରେଣ୍ଟଲର ସେନାବାହିନୀର ପ୍ରଧାନ ସ୍ୱାମୀଙ୍କ ସହିତ ଦେଖା କରିବାକୁ ଆସନ୍ତି । ଏ ମାସର ଶେଷ ଆଡ଼କୁ ନରଓ୍ୱେର ଯୁବରାଜ ଓ ଯୁବରାଣୀ ଆସନ୍ତି । ସେମାନେ ଆମ୍ଭମାନଙ୍କ ସହିତ ଚା ଖାଇଲେ । ସେମାନେ ଅନ୍ୟମାନଙ୍କ ପରି ଅଧିବାସୀ ମାନଙ୍କର ଅଞ୍ଚଳ ସମୂହ ବୁଲି ବୁଲି ଦେଖନ୍ତି । ପରେ କଚ୍ଛୁଦନ ପାଇଁ ହାଇଡ ପାର୍କକୁ ଆସନ୍ତି ।

ପ୍ରଥମର ନୈଶଭୋଜି ବା ଖେଳଘର ଭିତ ପାହାଡ଼ ଉପରସ୍ଥ ଫ୍ରାଙ୍କଲିନଙ୍କ ନବନିର୍ମିତ ପ୍ରସ୍ତର ପ୍ରାସାଦରେ ହେଉଥିଲା । ଆମ ହାଇଡ ପାର୍କ ବାସ ଭବନ ପାଖରେ କେତେଜଣ ନରଓ୍ୱେ ଅଧିବାସୀ ବାସ କରୁ-ଥିଲେ । ସେମାନଙ୍କର ଯୁବରାଜ ଓ ଯୁବରାଣୀଙ୍କ ପାଇଁ ଗାନ ବାଜନା ଓ ଅଭିନୟ କରିବାକୁ କୁହା ହୁଏ । ସେ ଉତ୍ସବ ଭଲ ସୁନ୍ଦର ହୋଇ-ଥିଲା । ଆମେ, ଯୁବରାଣୀ ମାର୍ଥା ଓ ଯୁବରାଜ ଓଲାଫ ଓ ତାଙ୍କ ପିଲା-ପିଲିଙ୍କ ସହିତ ଖୁବ ଘନିଷ୍ଠ ହୋଇ ଉଠିଥିଲୁ । ଯୁଦ୍ଧ ସମୟରେ ଯୁବରାଜ ମଝିରେ ମଝିରେ ଏଠାକୁ ଆସୁଥିଲେ । ହେଲେ ଯୁବରାଣୀ ଓ ପିଲାପିଲି ଏ ଦେଶରେ ଥିଲେ । ମୋ ମନେପଡ଼େ ଡେନମାର୍କର ଯୁବରାଜଙ୍କ ସହିତ ଗୋଟିଏ ମଜାର ଆଳାପ ଚାଲିଥାଏ । ବ୍ୟାପାରଟି ହେଲା—ଆମ ଦେଶର ସରକାରୀ ସଦସ୍ୟଗଣ ଛଦ୍ମବେଶରେ ଚଲବୁଲ କରି ପାରନ୍ତି ନାହିଁ ସତ, କିନ୍ତୁ ଇଉରୋପର ରାଜପରିବାରଗଣ ଛୁଟି ସମୟରେ ଏପରି କରି ପାରନ୍ତି । ସେ ଜଣାଇଲେ ଯେ ଯେତେବେଳେ କୌଣସି ଲୋକ ଗୁପ୍ତ ନାମରେ ଦେଶ ଭ୍ରମଣରେ ବାହାରନ୍ତି, ତାଙ୍କୁ ଯଦି କେହି ଧରି ପକାଏ, ତାହେଲେ ସେଇଟା ହେଲା ତାଙ୍କ ପକ୍ଷରେ ଯେପରି ଅପମାନଜନକ, ସେପରି ଗୋପନୀୟତା ଉପରେ ଗୋଟାଏ ପ୍ରଚଣ୍ଡ ଆକ୍ରମଣ । ଆମ ଦେଶରେ ସରକାରୀ ପଦମର୍ଯ୍ୟାଦା ଉତ୍ତରାଧିକାରୀ ସୂତ୍ରରେ ମିଳେ ନାହିଁ । ଏହି ସହଜ କଥାଟିକୁ ଯୁବରାଜଙ୍କୁ ବୁଝାଇବା ପାଇଁ ଯେତେ ଚେଷ୍ଟା କଲି

ସେ ସବୁ ନିଷ୍ଫଳ ହେଲା । ପଦମର୍ଯ୍ୟାଦା ପାଇଲେ ଲୋକ ଯେ ଏକାବେଳେ ବଦଳି ଯାଏ, ଏ କଥା ଆମ ଦେଶର ଲୋକେ ବିଶ୍ୱାସ କରନ୍ତି ନାହିଁ । ସେମାନେ ଆଶା କରନ୍ତି ବ୍ୟବହାର ଠିକ୍ ପୂର୍ବପରି ପାଇବା ଲାଗି ।

ମୋ ସ୍ୱାମୀ ଏପରି ଭାବରେ ଅତିଥିମାନଙ୍କର ଆଗମନକୁ ସ୍ୱାଗତ ଜଣାଉ ଥିଲେ । ମୋର ମନେହୁଏ, ସୁଯୋଗ ପାଇଲେ ସେମାନଙ୍କର ଆଗମନକୁ ସେ ଉତ୍ସାହ ମଧ୍ୟ ଦେଉଥିଲେ । ତାଙ୍କର ଧାରଣା ଦୃଢ଼ଥିଲା ଯେ ଇଉରୋପରେ ଗୋଟାଏ କିଛି ଗଣ୍ଡଗୋଳ ଘଟିବ ବୋଲି । ଯେଉଁମାନେ ଗଣତନ୍ତ୍ରକୁ ରକ୍ଷା କରନ୍ତି, ଯେଉଁମାନେ ସଂଘର୍ଷ ସମୟରେ ଫାସିଷ୍ଟବାଦଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହେବେ, ସେହି ସବୁ ଲୋକଙ୍କ ସହିତ ସେ ଖୁବ୍ ମିତ୍ରତା ସ୍ଥାପନ କରୁଥିଲେ । ଠିକ୍ ହେଲା, ସେହି ବର୍ଷର ବସନ୍ତ ସମୟରେ ଇଂଲଣ୍ଡର ରାଜା ଓ ରାଣୀ ପରିଭ୍ରମଣ ଉଦ୍ଦେଶ୍ୟରେ କ୍ୟାନାଡାକୁ ଆସିବେ । ମୋ ସ୍ୱାମୀ ତାଙ୍କୁ ଓ୍ୟାଶିଂଟନକୁ ଆସିବା ପାଇଁ ନିମନ୍ତ୍ରଣ କରି ପଠାନ୍ତି । ଏପରି କରିବାର ଗୋଟିଏ ବିଶେଷ କାରଣ ମଧ୍ୟ ଥିଲା । ସେ ବେଶ୍ ବୁଝି ପାରିଥିଲେ, ଆମ ସମସ୍ତଙ୍କୁ ଜୀବନ ମରଣ ସଂଗ୍ରାମରେ ଖୁବ୍ ସମ୍ଭବ ଅବତାରଣ କରିବାକୁ ପଡ଼ିବ । ସେତେବେଳେ ଗ୍ରେଟବ୍ରିଟେନ ହେବ ଆତ୍ମରକ୍ଷାର ପ୍ରଧାନ ଦୁର୍ଗ । ସେ ଭାବିଥିଲେ ସେମାନଙ୍କର ଆଗମନରେ ଏ ଦୁଇ ଦେଶର ଅଧିବାସୀ ଆବଦ୍ଧ ହେବେ ବନ୍ଧୁତ୍ୱର ବନ୍ଧନରେ । ଏ ଦେଶରେ ସବୁ-ବେଳେ ଇଂରାଜମାନଙ୍କ ବିରୁଦ୍ଧରେ ସମାଲୋଚନା ଓ ବାହ୍ୟିକ ବିଦ୍ୱେଷ ଭାବ ଯେ ରହିଛି, ଏ କଥା ସେ ଜାଣୁଥିଲେ । ବିପଦରେ ଏ ସବୁ ଯାଏ ମଉଳି । ଇଂରାଜ ଓ ମାର୍କିଣଗଣ ସେତେବେଳେ ଦୃଢ଼ ଭାବରେ ସଂଘବଦ୍ଧ ହୋଇ ଠିଆ ହୁଅନ୍ତି । ଆମ୍ଭମାନଙ୍କର ଅଭିନ୍ନ ଐତିହ୍ୟ ଓ ଭାବଧାରାରେ ଆତ୍ମ ବିଶ୍ୱାସ ସହସା ଆସି ଦେଖା ଦିଏ । ଏହି ଗଭୀର ବନ୍ଧନର ସ୍ମାରକ ହୋଇ ରହିବ ରାଜା ରାଣୀଙ୍କର ଆଗମନ । ଏହି କଥା ସେ ଭାବିଥିଲେ । ସେ ଯାହା ଆଶା କରିଥିଲେ, ତାଠାରୁ ସଫଳତା ଆସିଲା ବହୁ ଗୁଣରେ ।

ସେମାନଙ୍କ ଆଗମନ ଆୟୋଜନ ପାଇଁ କୌଣସି ତ୍ରୁଟୀ ପରିଲକ୍ଷିତ ହୋଇ ନଥିଲା । ଫ୍ରାଙ୍କଲିନ୍ ଏପରି ଭାବ ଦେଖାଇଲେ ଯେ, ସେଥିରୁ ଅନୁମିତ ହେଉଥିଲା, ସତେ ଯେପରି ଦୁଇଟି ସାଧାରଣ ଯୁବକ ଯୁବତୀ ଆସୁଛନ୍ତି ଆମ୍ଭ-ମାନଙ୍କ ସହିତ ବସ ବାସ କରିବାକୁ । ଏତଦ୍ ବ୍ୟତୀତ ସେ ଆଉ କିଛି ଭାବୁ ନଥିଲେ । ମୋ ମନେ ହୁଏ, ଷ୍ଟେଟ ଡିପାର୍ଟମେଣ୍ଟର ବା ରାଜାରାଣୀ ଦଳରୁ ଯେଉଁମାନେ ରାଜା ରାଣୀଙ୍କୁ ଅଭ୍ୟର୍ଥନା କରିଥିଲେ, ସେମାନଙ୍କୁ ସେ ଖୁବ୍ ବିବ୍ରତରେ ପକାଇ ଦିଅନ୍ତି ।

ମୁଁ ଫ୍ରାଙ୍କଲିନ୍‌ଙ୍କୁ କହିଲି ଯେ ଇଂରେଜମାନଙ୍କ ଅଭ୍ୟର୍ଥନା ପ୍ରଥା ଅନୁସାରେ ପ୍ରଧାନ ବଟ୍ଲରପଦ ଫିଲ୍ଡସ ଗୋଟିଏ ଷ୍ଟପୱ୍ୟାଚ ହାତରେ ଧରି ଠିଆ ହୋଇ ରହିବେ । ରଜା ଓ ପ୍ରେସିଡେଣ୍ଟଙ୍କୁ ଖାଦ୍ୟ ପରି-ବେଷଣ କରିବାର ୩୦ ସେକେଣ୍ଡ ପରେ ମୋତେ ଓ ରାଣୀଙ୍କୁ ପରିବେଷଣ କରିବା ପାଇଁ ଗୋଟିଏ ପରିଚାରକକୁ ଆଦେଶ ଦିଆ ହେବ । କିନ୍ତୁ ହ୍ୱାଇଟ୍ ହାଉସର ରୀତି ଅନୁସାରେ ପ୍ରେସିଡେଣ୍ଟଙ୍କୁ ଆଗେ ପରିବେଷଣ କରିବାର ଯେଉଁ ପ୍ରଥା ଅଛି, ତା'ର ବ୍ୟବସ୍ଥା କଣ ହେବ ? ସେ ଦୃଢ଼ ସ୍ୱରରେ ଜଣାଇଲେ ସ୍ଟପୱ୍ୟାଚ ହାତରେ ଧରି ଫିଲ୍ଡଙ୍କୁ ଠିଆ ହୋଇ ରହିବାକୁ ପଡ଼ିବ ନାହିଁ । ସେ କହିଲେ ରାଜା ଓ ପ୍ରେସିଡେଣ୍ଟଙ୍କୁ ଏକା ସଙ୍ଗରେ ପରିବେଷଣ କରାଯିବ । ତାପରେ ଆସିବ ଆମ ପାଳି ।

ପୁଣି ଗୋଟିଏ ଜଟିଳ ପ୍ରଶ୍ନ ଦେଖାଦିଏ । ପ୍ରେସିଡେଣ୍ଟ କ'ଣ ରାଜାଙ୍କୁ ଡାହାଣ ପାଖରେ ଓ ରାଣୀଙ୍କୁ ବାଁ ପାଖରେ ନେଇ ବସିବେ, ଓ ମୋତେ କ'ଣ ରାଜାଙ୍କ ଡାହାଣ ପଟରେ ବସିବାକୁ ପଡ଼ିବ ? ନା, ଆମେ ସବୁ ଆମର ଚିରାଚରିତ ପ୍ରଥା ମାନି ଚଳିବୁ ? ବ୍ୟାପାରଟି ଟିକିଏ ଜଟିଳ ଥିଲା । ହେଲେ ଫ୍ରାଙ୍କଲିନ୍ ଠିକ କଲେ ଯେ ଆମେ ଯୁକ୍ତରାଷ୍ଟ୍ରର ନୀତି ମାନି ଚଳିବୁ । ରାଜା ବସିବେ ମୋ ଡାହାଣ ପାଖରେ ଓ ରାଣୀ ବସିବେ ଫ୍ରାଙ୍କଲିନ୍‌ଙ୍କ ଡାହାଣ ପାଖରେ । ରାଜା ରାଣୀଙ୍କର ଆମ ସାଙ୍ଗରେ ଦେଖା ଶୁଣା ହେବ । ସେ ଇଥିପାଇଁ ଅଳ୍ପ ସମୟ ଲାଗି ରାଜାଙ୍କୁ

ଆମ ମନ୍ଦିରେ ବସାଇ ଅନ୍ୟ ଲୋକଙ୍କ ସହିତ କଥା କହିବାରୁ ବାଧା ଦେବାଟା ଅସଙ୍ଗତ ହେବ । ଫ୍ରାଙ୍କଲିନ୍ ରାଜାଙ୍କୁ ପରେ ଏକଥା କହନ୍ତି । ସେ ହୃଷ୍ଟଚିତ୍ତରେ ଓ ହାସ୍ୟ ମୁଖରେ ଆମର କଥା ସବୁ ମାନି ନିଅନ୍ତି ।

ବଗିଚ ସରକାରୀ ଭୋଜି ଓ ସମ୍ବର୍ଦ୍ଧନା ଆୟୋଜନ କରିବାରେ ଆମେ ଖୁବ୍ ଉପଭୋଗ କରିଥିଲୁ । ବହୁ ଲୋକ ଭାବିଥିଲେ ଅନ୍ତତଃ ମେଟ୍ରୋପୋଲିଟାନ୍ ଅପେରାରୁ ଗାୟକ ଓ ଗାୟିକା ଆସିବେ ବୋଲି, ମୋ ସ୍ୱାମୀ ଓ ମୁଁ ଭାବିଲୁ ରାଜାରାଣୀ ତାଙ୍କ ନିଜ ଦେଶରେ ଯାହା ଦେଖି ନପାରନ୍ତି, ସେହି ଆୟୋଜନ ଆମକୁ କରିବାକୁ ପଡ଼ିବ । ଅପେରା ତାଙ୍କ ପାଖରେ ସେପରି କିଛି ନୂଆ କଥାଟି ନୁହେଁ । ଆମେରିକାର ଲୋକଶିଳ୍ପ ସେମାନଙ୍କ ନିକଟରେ ଉପଭୋଗ୍ୟହିଁ ହେବ । ଏହି ଧାରଣାର ବଶବର୍ତ୍ତୀହୋଇ ଆମ୍ଭେମାନେ ତାଙ୍କୁ ମାର୍କିନ୍ ଖାଦ୍ୟ ସାମଗ୍ରୀ ଦେଉଥିଲୁ । ଗୋଟିଏ ଲୋକ ଉତ୍ସବର ଆୟୋଜନ କଲୁଁ । ତା ବୋଲି ଆମେଯେ ସୁପ୍ରସିଦ୍ଧ ଶିଳ୍ପୀ ଆଣିନାହୁଁ ଏମନ୍ତ ନୁହେଁ । ଲରେନ୍ସ ଟିବେଟ୍ କେତେ-ଖଣ୍ଡ ଗୀତ ଗାଆନ୍ତି । କେଟ୍‌ସ୍ମିଥ୍ ଗାଇଲେ "ପାହାଡ଼ ଉପରୁ ଚନ୍ଦ୍ର ଉଇଁଲା"... । ଏହି ସଂଗୀତଟିକୁ ରାଜା ଶୁଣିବାକୁ ଚାହିଁଥିଲେ । ମ୍ୟାରିୟାନ୍ ଆଣ୍ଡରସନ୍ ଅନ୍ୟ ସଂଗୀତ ବ୍ୟତୀତ କେତୋଟି ନିଗ୍ରୋ ଆଧ୍ୟାତ୍ମିକ ସଂଗୀତ ଗାଇବା ପାଇଁ ରାଜି ହୁଅନ୍ତି । ଆମେ ଦକ୍ଷିଣାଞ୍ଚଳରୁ-ଲୋକ-ଗାଥା ଗାଇ-ବାର ସଂଗୀତଜ୍ଞ ଓ ନର୍ତ୍ତକ ନର୍ତ୍ତକୀ ଆଣୁ ।

ରାଜା ଯେତେବେଳେ ରାଣୀଙ୍କ ସମଭିବ୍ୟାହାରେ ରେଳରେ ଅସ୍ତି ପହଞ୍ଚନ୍ତି, ସମସ୍ତେ କୌତୁହଳୀ ହୋଇ ଉଠିଲେ । ଓ୍ୟାଶିଂଟନ୍‌ରେ ତାଙ୍କର ମଧ୍ୟାହ୍ନ ଭୋଜନ ଶେଷହେଲେ ରାଜା ଓ ସ୍ୱାମୀ ଗୋଟିଏ ଗାଡ଼ିରେ, ରାଣୀ ଓ ମୁଁ ଆଉଖଣ୍ଡିଏ ଗାଡ଼ିରେ ବାହାରି ପଡ଼ିଲୁ ଓ୍ୟାଶିଂଟନ୍ ସହର ବୁଲିବାକୁ । ଯଦ୍ୱାରା ଲୋକେ ରାଜାରାଣୀଙ୍କୁ ଦେଖିବାର ସୁଯୋଗ ପାଆନ୍ତି, ସେଇଥିପାଇଁ ଆମବାଟ ଆଗରୁ ଠିକ୍ ହୋଇଥାଏ । ଯେଉଁଠାରେ ରାସ୍ତାପାର୍ଶ୍ୱରେ ବେଶୀ ଭିଡ଼ ହୋଇନଥାଏ, ସେହିଠାରେ କେବଳ କ୍ଷଣକ

ପାଇଁ ଆଳାପ ଆଲୋଚନା କରିବାର ସୁଯୋଗ ପାଇଁ। ଗୋଟିଏ ଜାଗାରେ ରାଣୀ ଗୋଟିଏ କଥା କହି ମୋର ଖୁବ୍ ପ୍ରଶଂସାପାତ୍ରୀ ହୋଇ ଉଠିଲେ। ସେ କହିଲେ "ମୁଁ ଖବର କାଗଜରେ ଦେଖିଛି, ଡବ୍ଲୁ, ପି, ଏହି କର୍ମୀମାନଙ୍କ ସମ୍ବନ୍ଧରେ ଯୋଗ ଦେଇଥିଲେ ବୋଲି ଆପଣଙ୍କୁ ଆକ୍ରମଣ କରାହୁଏ। ଏଭଳି ଉତ୍କଟ ବିରୁଦ୍ଧ ସମାଲୋଚନା ଯେ ହୋଇପାରେ, ମୁଁ ତାହାଭାବି ଏକାବେଳେ ଅବାକ୍। ମନୁଷ୍ୟଙ୍କୁ ତାର ଦୁଃଖକଥା ଜଣାଇବାତ ଭଲ। ସେମାନେ ଯଦି ସେମାନଙ୍କର ଦୁଃଖକଥା ଅପର କାହା ପାଖରେ ପ୍ରକାଶ କରି ପାରନ୍ତି, ସେହି ସବୁ ଲୋକଙ୍କ ମଧ୍ୟରୁ ଯଦି କୌଣସି ଲୋକ ସେମାନଙ୍କ ପ୍ରତି ସହାନୁଭୂତି ସମ୍ପନ୍ନ ଥାଆନ୍ତି ବା ସେମାନଙ୍କ ମଧ୍ୟରେ ସରକାରଙ୍କ ପାଖରେ ଜଣାଇଲାଭଳି ଲୋକ ଥାଆନ୍ତି, ତାହେଲେ ଖୁବ୍‌ଭଲ"।

ଆମେ ସବୁ ଲଣ୍ଡନ୍ ସ୍ମୃତିସୌଧ, ସେଣ୍ଟ ପିଟର ଓ ପଲ୍‌ଙ୍କ କ୍ୟାଥେଡ୍ରାଲ ଗିର୍ଜା, ରିଜେଣ୍ଟ ପାର୍କ, ଓ ଅନ୍ୟାନ୍ୟ ଯେଉଁସବୁ ଦର୍ଶନୀୟ ବସ୍ତୁ ବା ସ୍ଥାନ ଥିଲା, ସେ ସବୁକୁ ଦେଖି, ହ୍ୱାଇଟ୍ ହାଉସକୁ ଫେରିବାରୁ ରାଜାରାଣୀ ପୋଷାକ ବଦଳାଇବାର ସମୟ ପାଇଥିଲେ। ପୌନେ ଚାରିଟାରେ ବାଳକ ବାଳିକା ସ୍କାଉଟ୍ ଭିତରଦେଇ ସେମାନେ ହ୍ୱାଇଟ୍ ହାଉସରୁ ବାହାରନ୍ତି। ବ୍ରିଟିଶ ରାଷ୍ଟ୍ର ଦୂତାବାସର ଉଦ୍ୟାନ ଉତ୍ସବକୁ ସେମାନେ ଯାଆନ୍ତି। ସେମାନେ ଯାଇ ସାରିଲା ପରେ, ସ୍ୱାମୀ ଟିକଏ ଅବସର ପାଆନ୍ତି।

ଉଦ୍ୟାନଉତ୍ସବ ପରେ ରାଜାରାଣୀ ଆଶ୍ଚର୍ଯ୍ୟ ଭାବରେ ପୋଷାକ ବଦଳାଇ ଧୀରେ, ସୁସ୍ଥରେ ନୈଶ ଭୋଜନ ସମୟରେ ଆସିମିଳିତ ହୁଅନ୍ତି। ମୁଁ ରାଣୀଙ୍କ ଆଡ଼କୁ ଚାହିଁ ଅବାକ୍ ହୋଇଗଲି। ପୋଷାକର ଢଙ୍ଗର ଟିକଏ ହେଲେ ଓଲଟ ପାଲଟ ହୋଇନାହିଁ। ଏପରି ସୁଷ୍ଠୁ ଭାବରେ କିପରି ଯେ ସେ ପୋଷାକ ପରିଚ୍ଛେଦ ପିନ୍ଧି ପାରନ୍ତି, ସେକଥା ମୁଁ ଧାରଣା କରିପାରେନା। ଯେତେବେଳେ ପର୍ଯ୍ୟନ୍ତ ସେ ଆମ୍ଭମାନଙ୍କ ସାଙ୍ଗରେ ଥିଲେ, ପ୍ରତିମୂହୂର୍ତ୍ତରେ ତାଙ୍କ ପ୍ରତି ମୋର ଶ୍ରଦ୍ଧା ବଢି ଯାଉଥିଲା।

ପୋଟୋମ୍ୟାକ୍ ନଦୀକୂଳରୁ ଫେରିଲା ବାଟରେ ଆମେସବୁ ଫୋର୍ଡ-ହାଣ୍ଟରେ କନସାରଭେସନ୍ କୋରର ଗୋଟିଏ ଶିବିର ଦେଖିବାକୁ ଯାଉଁ ।

ପ୍ରଚଣ୍ଡ ଖରାରେ ବାଳକଗଣ ଦୁଇଧାଡ଼ିରେ ଠିଆ ହୋଇଥିଲେ । ରାଜା ଶିବିରର ଅଧ୍ୟକ୍ଷଙ୍କ ନିକଟକୁ ଆସନ୍ତି । ଗୋଟିଏ ବଡ଼ୁପ୍ରି ବୋର୍ଡ଼ ଟଙ୍ଗା ହୋଇଥିଲା । ସେଥିରେ ଦେଶର ବିଭିନ୍ନ ସ୍ଥାନର ଶିବିର ଛବି ସମୂହ ରହିଥାଏ । କେଉଁ କେଉଁ ସ୍ଥାନରେ ବାଳକ ବାଳିକାଗଣ କି କି କାମ କରିଛନ୍ତି, ସେ ସବୁ ସେଥିରେ ପ୍ରଦର୍ଶିତ ହୋଇଥିଲା । ସେ ସେଆଡ଼କୁ ଆଦୌ ଅନାସା କଲେ ନାହିଁ ।

ଆମେସବୁ ସେହି ଲମ୍ବାଧାଡ଼ି ଦେଖି ଦେଖି ଯାଉଥିଲୁ । ରାଜା ଜଣକ ପରେ ଜଣକୁ ପ୍ରଶ୍ନ କରୁଥିଲେ । ଯାହାଙ୍କୁ ବାଦ୍ ଦିଆ ହେଉଥିଲା, ତାଙ୍କୁ ରାଣୀ ପ୍ରଶ୍ନ କରନ୍ତି । ମୁଁ ରାଣୀଙ୍କ ସଙ୍ଗରେ ଥାଏ । ପ୍ରଥମ ଧାଡ଼ି ଶେଷହୁଏ । ଅଧ୍ୟକ୍ଷ ଦ୍ୱିତୀୟ ଧାଡ଼ିକୁ ଯିବେ ନାହିଁ ବୋଲି ପ୍ରସ୍ତୁତ ହୋଇ ରହିଥିଲେ । ରାଜା ସିଧା ସଳଖ ସେ ଧାଡ଼ିକୁ ଯିବାକୁ ଆରମ୍ଭ କରନ୍ତି । ସେମାନଙ୍କ ପ୍ରତି ସହାନୁଭୂତି ଶୀଳ ହୋଇ ରାଜା ପ୍ରଶ୍ନ କରିବାକୁ ଲାଗିଲେ । ଯେଉଁ ଖାଦ୍ୟ ପାଉଛ ସେଥିରେ ସନ୍ତୁଷ୍ଟ କି ନା, ସେମାନେ କ'ଣ ଶିଖିଛନ୍ତି, ଏଥିରେ ସେମାନଙ୍କର କାମ ମିଳିବାରେ ସୁବିଧା ହେବ କିନା, ଓ ପରିଶେଷରେ ପଚାରିଲେ ସେମାନଙ୍କର ରୋଜ-ଗାରର କଥା ।

ଆମେସବୁ ଦ୍ୱିତୀୟ ଧାଡ଼ିର ଶେଷରେ ଯେତେବେଳେ ପହଞ୍ଚିଲୁ ଅଧ୍ୟକ୍ଷ କହିଲେ, "ମହାରାଜା, ଆମ ପିଲାଏ ଆପଣଙ୍କ ପରିଦର୍ଶନ ପାଇଁ ସେମାନଙ୍କ ବ୍ୟାରକ ଓ ଖାଇବା ଜାଗା ସଜାଇ ବସିଛନ୍ତି, କିନ୍ତୁ ଏହି ରୌଦ୍ରରେ ପଡ଼ିଆ ପାର ହୋଇ ସେ ସବୁ ଦେଖିବାକୁ ଯଦି ଇଚ୍ଛା ପ୍ରକାଶ ନ କରନ୍ତି, ସେଥିରେ ଆମେ କ୍ଷୁନ୍ନ ହେବୁନାହିଁ ।" ରାଜା ସାଙ୍ଗେ ସଙ୍ଗେ ଉତ୍ତର ଦେଲେ, "ସେମାନେ ଯଦି ଆଶା କରିଥାନ୍ତି, ତାହେଲେ ନିଶ୍ଚୟ ଆମେ ଯିବୁ ।" "ତାହେଲେ

ନଷ୍ଟସ୍ଥ ଯିବାକୁ ହେବ ।" ବିଦେଶର ସମ୍ଭ୍ରାନ୍ତ ଶ୍ରେଣୀର ଏପରି ଅନୁଗ୍ରହ ମୁଁ ଆମ ସରକାରୀ ଉର୍ଦ୍ଧ୍ୱତନ ଲୋକଙ୍କ ମଧ୍ୟରେ କେବେହେଲେ ଦେଖିନାହିଁ । ମୁଁ ସେମାନଙ୍କ ସାଙ୍ଗରେ ସି, ସି, ସି,ର ଶିବିର, ଏନ, ଓ୍ୱାଇ, ଏ, ଓ ଅନ୍ୟାନ୍ୟ ବ୍ୟାପାରରେ ଯାଇ ତାହା ବେଶ ବୁଝି ପାରିଛି ।

ରାଣୀ ଓ ମୁଁ ପ୍ରଖର ରୌଦ୍ର ମଧ୍ୟରେ ପଡ଼ିଆ ଭିତର ଦେଇ ତାଙ୍କୁ ଅନୁସରଣ କରୁ । ଏପରି ସୂକ୍ଷ୍ମ ପରିଦର୍ଶନ ମୁଁ ଖୁବ କମହିଁ ଦେଖିଛି । ଯେଉଁଠାରେ ଜିନିଷ ପତ୍ର ରହେ, ସେ ଥାକ ପର୍ଯ୍ୟନ୍ତ ସେ ଦେଖିବାକୁ ଛାଡ଼ିଲେ ନାହିଁ । ଯେତେବେଳେ ଶୁଣିଲେ ପିଲାମାନେ ନିଜର ଉପକରଣ ନିଜେ ତିଆରି କରନ୍ତି, କିପରି ସେ ସବୁ ତିଆରି ହୁଏ, ତାହା ଦେଖିବା ପାଇଁ ଟେବୁଲ ଗୁଡ଼ିକୁ ଓଲଟ ପାଲଟ କରି ଦେଖିଲେ । ସେମାନେ ଷ୍ଟୋଭ ଉପରେ ବସିଥିବା କଡ଼ାଇ ଭିତରକୁ ମଧ୍ୟ ଗଳା ଅନିସା କରନ୍ତି । ଖାଦ୍ୟ ତାଲିକା ଦେଖିବା ମଧ୍ୟ ବାଦ ପଡ଼ିଲା ନାହିଁ ।

ଯେତେବେଳେ ସେମାନେ ସେଠୁ ବାହାରନ୍ତି, ସେତେବେଳେ ତାଙ୍କୁ ସେ ସ୍ଥାନ ସମ୍ବନ୍ଧରେ ଜାଣିବାର ଆଉ କିଛି ବାକି ରହିଲା ନାହିଁ । ଶୋଇ-ବାର ବ୍ୟାରକ୍ ସମୂହର ଗଦି ସମୂହକୁ ପରୀକ୍ଷା କରନ୍ତି । ଜୋତା ଓ ପୋଷାକ ପରିଚ୍ଛେଦ ମଧ୍ୟ ଭଲ ଭାବରେ ଦେଖାହେଲା । ସାରା ଦିନଟା ଯାକରେ ମାତ୍ର ଥରେ ରାଣୀଙ୍କୁ ଗୋଟିଏ କଥା କହିବାର ସୁଯୋଗ ପାଏ । ଗ୍ରେଟ ବ୍ରିଅ ଡାଏନା ହ୍ୱପ୍‌କିନ୍‌ସ । ବୟସ ଜମାରୁ ଆଠ । ତା ବାପାଙ୍କ ସଙ୍ଗରେ ରାଜା ରାଣୀଙ୍କର ଦେଖା ହୋଇଛି । ବ୍ରିଅଟିର ଭାରି ଇଚ୍ଛା, ରାଣୀଙ୍କ ସହିତ ସାକ୍ଷାତ୍ କରିବାରେ । ସେ ରାଣୀ ବୋଇଲେ ରୂପ କଥାର ରାଣୀଙ୍କୁ ବୁଝେ । ତେଣୁ, ରାଣୀଙ୍କୁ ସେପରିହିଁ କଳ୍ପନା କରି ନେଇଛି । ରାଜାରାଣୀ ସେତେବେଳକୁ ନୈଶ ଭୋଜନକୁ ଯାଇଥିଲେ । ତଥାପି ରାଣୀ ଡାୟନାକୁ ତାଙ୍କ ପାଖକୁ ଆଣିବାକୁ କହନ୍ତି । ଡାୟନାର ଚକ୍ଷୁ ରାଣୀଙ୍କ ଉପରେ ଥାଏ । ସେ ମଖମଲରେ ସୂଚିକାମ ହୋଇଥିବା ଖଣ୍ଡିଏ ଧଳା ପୋଷାକ ପିନ୍ଧିଥିଲେ । ଶିର ଦେଶରେ ରତ୍ନ ମୁକୁଟ ଥାଏ । ତାଙ୍କୁ ଠିକ ରୂପ

କଥାର ରାଣୀଙ୍କ ଭଳି ସାଜୁଥିଲି । ପୋଷାକର ସୌନ୍ଦର୍ଯ୍ୟରେ ତାଙ୍କର ରୂପଛଟା ଏପରି ଶୋଭା ପାଉଥିଲା ଯେ, ଡାଏନାକୁ ଆଣିଲା କ୍ଷଣି ସେ ରାଣୀଙ୍କୁ ସମ୍ମାନ ଜଣାଏ । ରାଜାଙ୍କ ଆଡ଼କୁ ଫେରି ବି ଦେଖିଲା ନାହିଁ । ସେମାନେ ଦୁଇଜଣ ଯାକ ତାକୁ ପଦେ ଦିପଦ ମିଠାକଥା କହି ଲଂଚରେ ତଳକୁ ଓହ୍ଲାଇ ଆସନ୍ତି । କିଛି ସମୟ ପରେ ମୁଁ ହ୍ୟାରିହିପ୍‌କିନ୍‌ସ୍ ପାଖରେ ତାଙ୍କ ଝିଅଙ୍କୁ ପଠାଇ ଦିଏ । ଗ୍ରେଟ ଝିଅଟିର ଆଖି ଦୁଇଟି ହୋଇଥାଏ ବିସ୍ମୟ ବିସ୍ଫାରିତ । ମୋ ମନେହୁଏ, ସେ ରୂପ କଥା ରାଣୀଙ୍କୁ ଦେଖିବାକୁ କିପରି, ତାହା ଆଉ ମୋତେ ଭୁଲିବ ନାହିଁ ।

ରାଜା ଓ ରାଣୀ ବାହାରି ଯିବା ପରେ ଆମେସବୁ ରେଲ୍‌ରେ ହାଇଡ୍ ପାର୍କକୁ ଯାଉଁ । ସେଠାରେ ସେମାନେ ଆମ ସହିତ ଗୋଟିଏ ଦିନ କଟାଇବେ, ତାହାରି ଯୋଗାଡ଼ ଚାଲିଥିଲା । ଆମ ହାତରେ ସମୟ ଭିତରେ ସେହିଦିନ ଓଳଟି । ଯେଉଁଆଡ଼କୁ ଯିବାକୁ ତାଙ୍କୁ ଭଲ ଲାଗୁଥିଲା, ମୋ ସ୍ୱାମୀ ସେହି ଆଡ଼କୁ ତାଙ୍କୁ ନେଇ ଯାଉଥିଲେ । ତାଙ୍କର ମନେ ହେଉଥିଲା, ହାଇଡ ପାର୍କକୁ ଗଲେ, ସେମାନଙ୍କୁ ଭଲ ଭାବରେ ଚିହ୍ନି ପାରିବେ । ରାଜା ଓ ରାଣୀ ଆସି ପହଞ୍ଚିଲାକ୍ଷଣି ତାଙ୍କୁ ଦରଜାରେ ଅଭ୍ୟର୍ଥନା କରି ଘର ଭିତ-ରକୁ ଘେନିଯାଉଁ, କିଛି ସମୟ ଭିତରେ ସେମାନେ ପୋଷାକ ପିନ୍ଧି ଲାଇବ୍ରେରୀ ଘରେ ଆସି ଉପସ୍ଥିତ ହୁଅନ୍ତି । ରାଜା କକ୍‌ଟେଲ୍ ଟେବୁଲକୁ ମୋ ସ୍ୱାମୀଙ୍କ ପାଖୁ ଆସିଲାକ୍ଷଣି ସେ ତାଙ୍କ ଆଡକୁ ଚାହିଁ କହନ୍ତି, "ମୋ ମା ପୁଣି କକ୍‌ଟେଲ ପସନ୍ଦ କରନ୍ତି ନାହିଁ," ସେ ମନେ କରନ୍ତି ଆପଣଙ୍କର ପିଆଲାଏ ଚା ଖାଇବା ଉଚିତ୍ । ରାଜା ଉତ୍ତର ଦେଲେ, "ମୋ ମା ବି ପସନ୍ଦ କରନ୍ତି ନାହିଁ ।" ସେ ଏଥର ଗୋଟିଏ କକ୍‌ଟେଲ ଉଠାଇ ନିଅନ୍ତି । ସନ୍ଧ୍ୟା ବିତିଯାଏ, ଆମେସବୁ ବିଶ୍ରାମ କରିବାକୁ ଯାଉ । ପ୍ରଧାନ ମନ୍ତ୍ରୀ ମ୍ୟାକେନ୍‌ଜିକିଂ ଓ ରାଜା ଫ୍ରାଂକଲିନଙ୍କ ସହିତ ଆଳାପ କରିବା ପାଇଁ ରହି ଯାଆନ୍ତି । ସେମାନେ ଯେତେବେଳେ ଉପରକୁ ଆସନ୍ତି, ସେତେବେଳକୁ ଏତେ ରାତି ହୋଇ ଯାଇଥିଲା ଯେ ମୋତେ ମୋଟେ ଭଲ ଲାଗିଲା ନାହିଁ । କିନ୍ତୁ ପରଦିନ

ମ୍ୟାକେନ୍‌ଜିକଂ ମୋ ସ୍ୱାମୀଙ୍କୁ କହିଲେ, ରାଜା ତାଙ୍କ କବାଟରେ ଧକ୍‌କା ଦେଇ, ତାଙ୍କୁ ଉଠାଇ, ଘରକୁ ନେଇ ଆଲୋଚନା କରିବାକୁ ଚାହାନ୍ତି । ରାଜା କୁଆଡେ କହିଥିଲେ, "ମୋ ମନ୍ତ୍ରୀସବୁ ପ୍ରେସିଡେଣ୍ଟ ଯେପରି ଭାବରେ ଆଜି ରାତିରେ ଆଲୋଚନା କଲେ, ସେପରି କରନ୍ତିନାହିଁ କାହିଁକି ? ମୋର ମନେ ହେଲା ସତେ ଯେପରି ପିତା ମୋତେ ଉପଦେଶ ଦେଉଛନ୍ତି ।" ଏଥର ଆସିଲା ସେମାନଙ୍କର ବିଦାୟର ପାଳି । ସେମାନେ ସମସ୍ତଙ୍କୁ ବିଦାୟ ସମ୍ଭାଷଣ ଜଣାଇ ଗାଡ଼ିକୁ ଉଠିବାକୁ ଯାଉଛନ୍ତି, ଏପରି ସମୟରେ ରାଣୀ ଗାଡ଼ିରୁ ଛୁଟିଆସି ମୋତେ କହିଲେ, "ରାଜାଙ୍କ ଗାଡ଼ି ଯେ ଚଲାଏ ସେ କେଉଁଠି ? ତାଙ୍କୁ ମୁଁ ଧନ୍ୟବାଦ ଦେବାକୁ ଚାହେଁ । ମୁଁ ବି ମୋର ସ୍ୱାମୀଙ୍କ ସେଫାରମଣ୍ଡି ଡ୍ରାଇଭରକୁ ଖୋଜି ଆଣିଲି । ସେ ଖୁବ ସାବଧାନରେ ଗାଡ଼ି ଚଲାଇଛି ବୋଲି ରାଣୀ ଧନ୍ୟବାଦ ଜଣାଇଲେ ।

ଗାଡ଼ି ଛୁଟିଦେଲା । ଗାଡ଼ି ଶେଷ ପ୍ରାନ୍ତରେ ରାଜଦମ୍ପତି ଠିଆ ହୋଇଥାନ୍ତି । ହାଡ଼ସନ ନଦୀର କୂଳସ୍ଥ ପାହାଡ଼ ଉପରେ ବହୁଲୋକ ରୁଣ୍ଡ ହୋଇଥିଲେ । ସେମାନେ ହଠାତ୍ ଗାଇବାକୁ ଆରମ୍ଭ କରିଦେଲେ ସେମାନଙ୍କର ପ୍ରିୟ ସଙ୍ଗୀତ "ଆଲ୍‌ଲଙ୍ଗ୍‌ସିନ୍" (Auld lang Syne) । ଦୃଶ୍ୟଟି ଏପରି ମର୍ମସ୍ପର୍ଶୀ ହୋଇ ଉଠିଲା ଯେ, ତାହା ଧାରଣାର ଅତୀତ ହୋଇଗଲା । ସନ୍ଧ୍ୟାରେ ଆଲୋକିତ ନଦୀ । ବହୁ ଜନ ସମ୍ମିଳିତ କଣ୍ଠ ସଙ୍ଗୀତ ଓ ମୃଦୁମନ୍ଥର ଗତିରେ ଧାବମାନ ବାଷ୍ପୀୟ ଶକଟ । ତରୁଣ ଦମ୍ପତି କରାଭିବାଦନ ଦ୍ୱାରା ଜଣାଉଥିଲେ ବିଦାୟ ସମ୍ଭାଷଣ । ଯେଉଁ ଅଶାନ୍ତ ମେଘର ଘନଘଟା ତାଙ୍କର ମସ୍ତକ ଦେଶରେ ଛାଇଁ ରହିଥିଲା, ସେହି କଥାହିଁ ମୋର ମନେ ପଡୁଥିଲା । କେତେ ଉତ୍କଣ୍ଠାର ସମ୍ମୁଖୀନ ହେବାକୁ ହେବ ସେମାନଙ୍କୁ । ବ୍ୟଥା ହୃଦୟରେ ଫେରି ଆସିଲି ।

ଅନ୍ତର୍ଦ୍ଦେଶୀୟ ଘୂର୍ଣ୍ଣିବାତ୍ୟା ଯେତେବେଳେ ଦିଗ୍‌ବଳୟକୁ ଆଚ୍ଛାଦିତ କରି ରଖିଥିଲା, ସେତେବେଳେ ଅମେରିକାନ୍ ଇଉଥ୍ କଂଗ୍ରେସ ଅନ୍ୟାନ୍ୟ ଯୁବ ଅନୁଷ୍ଠାନର ପୁରୋଭାଗରେ ରହି ଉଦ୍ଭାସିତ ହୋଇ ଉଠିଲା ଦିଗନ୍ତରାଳକୁ

ଆଲୋକିତ କରି । ସାରା ଦେଶରେ ଏହି ପ୍ରତିଷ୍ଠାନ ବ୍ୟାପିଯାଏ । ସାଥୀମାନେ ଇୟୁଥ୍ କଂଗ୍ରେସ ମଧ୍ୟ ଅନ୍ୟାନ୍ୟ ଯୁବସଂଘ ସହିତ ସମ୍ପର୍କ ରଖି କାମକରିବାକୁ ଲାଗନ୍ତି ।

ଓ୍ୱାଶିଂଟନରେ ସେମାନଙ୍କର ଗୋଟିଏ ସଭାବସେ । ସେତେବେଳେ ଓ୍ୱାଇ, ସି, ର ନେତୃବର୍ଗ ଆସି ସେମାନେ କ'ଣ କରୁଛନ୍ତି ତାହା ମୋତେ ଜଣାନ୍ତି । କ୍ରମେ ମୁଁ ସେମାନଙ୍କ ସଙ୍ଗରେ କାମ କରିବାକୁ ଲାଗିଯାଏ । ମୋର ମନେହେଲା, ତରୁଣଗଣ କପରି ଅଛନ୍ତି, ସେମାନଙ୍କ ମନର ଭାବଧାରା କପରି, ଏ ସବୁ ଜାଣିବାର ପ୍ରକୃଷ୍ଟ ଉପାୟ । ସେମାନଙ୍କ ପାଇଁ ବହୁତ କିଛି କରିବାକୁ ସେମାନେ ଅନୁରୋଧ କରନ୍ତି । ବହୁ ବ୍ୟାପାରରେ ସେମାନେ ମୋର ପରାମର୍ଶ ମଧ୍ୟ ନେଉଥିଲେ । ସେମାନଙ୍କ ସଭାରେ ବକ୍ତା ଯୋଗାଡ଼ କରିବାର ଭାର ମୋ ଉପରେ ପଡ଼େ । ମୁଁ ନିଜେ ସଭାକୁ ଯାଉଥିଲି, ଅଧିକନ୍ତୁ, କିଛି ଟଙ୍କା ମଧ୍ୟ ଦେଇଥିଲି । ସେମାନଙ୍କ ମଧ୍ୟରୁ କେଇଜଣଙ୍କ ସାଙ୍ଗରେ ମୋର ଘନିଷ୍ଠତା ହୋଇଥିଲା । କିଶୋରମାନଙ୍କୁ ମୋତେ ଭାରି ଭଲଲାଗେ । ଆମେରିକାନ୍ ଇୟୁଥ୍ କଂଗ୍ରେସର ଏହି ତରୁଣ ଦଳ ଥିଲେ ଆଦର୍ଶବାଦୀ ଓ ପରିଶ୍ରମୀ । ସେମାନେ କମ୍ୟୁନିଷ୍ଟ ଭାବଧାରାରେ ପ୍ରଥମରୁ ଅନୁପ୍ରାଣିତ ହୋଇଥିଲେ, କି ନା, ତାହା ମୁଁ ଜାଣେନା । ସେମାନଙ୍କ ସହିତ କିଛିଦିନ କାମ କଲାପରେ ଅଭିଯୋଗ ଆସେ । ମୁଁ ନେତାମାନଙ୍କ ମଧ୍ୟରୁ କେଇଜଣଙ୍କୁ ମୋର ବସିବା ଘରକୁ ଡାକିଆଣେ । ମୁଁ ସେମାନଙ୍କୁ ଜଣାଇଲି, ଯେହେତୁ ସେମାନଙ୍କୁ ସକ୍ରିୟ ଭାବରେ ସାହାଯ୍ୟ କରିଛି, ତେଣୁ ସେମାନଙ୍କ ରାଜନୈତିକ ମତବାଦ ମୋତେ ଜାଣିବାକୁ ହେବ ।

ମୁଁ ଦଳର ତରୁଣମାନଙ୍କୁ କହିଲି, ସେମାନଙ୍କ ମଧ୍ୟରୁ କେହି ଯଦି କମ୍ୟୁନିଷ୍ଟ ହୋଇଥାନ୍ତି, ତାର ଅର୍ଥ ମୁଁ ଭଲ ଭାବରେ ବୁଝିପାରେ । ସେମାନେ ଏପରି ଗୋଟିଏ ଜଟିଳ ବ୍ୟବସ୍ଥା ମଧ୍ୟରେ ବଢି ଉଠିଛନ୍ତି ଯେ ଯଦ୍ୱାରା ସେମାନଙ୍କର ଅବସ୍ଥାର ଉନ୍ନତି ପ୍ରତିଶ୍ରୁତ ଅଛି, ଏପରି ଯେ କୌଣସି

ମତବାଦ ପ୍ରତି ସେମାନଙ୍କର ଆକର୍ଷଣ ହେବା ସ୍ୱାଭାବିକ । ତା ସତ୍ତ୍ୱେ ବି ପ୍ରକୃତ ଘଟଣା ଜାଣିବା ମୋର ଏକାନ୍ତ ପ୍ରୟୋଜନ । ଯଦି ସେମାନଙ୍କ ସହିତ କାମ କରିବାକୁ ହୁଏ, ତାହେଲେ ଆମର ମେଳ ବା ଅମେଳ କେଉଁଠି, ସେଇଟା ଜାଣିବା ନିତାନ୍ତ ଆବଶ୍ୟକ । ମୁଁ ପ୍ରତ୍ୟେକଙ୍କୁ ପାଳି କରି ସେମାନଙ୍କର ମତବାଦ ସମ୍ବନ୍ଧରେ ପଚାରେ । ସେମାନଙ୍କର କମ୍ୟୁନିଷ୍ଟ ମାନଙ୍କ ସହିତ କୌଣସି ସମ୍ବନ୍ଧ ନାହିଁ ବୋଲି ପ୍ରତ୍ୟେକ ଜଣାନ୍ତି । ସେମା-ନଙ୍କ ସଙ୍ଗରେ ଏହା ପୂର୍ବରୁ କେହି କେତେବେଳେ ହେଲେ ନଥିଲେ । ସେ ମତବାଦ୍ ପ୍ରତି ସେମାନଙ୍କର ଆକର୍ଷଣ ଆଦୌ ନାହିଁ । ମୁଁ ସେମାନଙ୍କ କଥାରେ ବିଶ୍ୱାସ କରିବି ବୋଲି ଠିକ୍ କରେ । ଆଜି ହେଉ, କାଲି ହେଉ ବା ୪ ଦିନ ପରେ ହେଉ, ସତ୍ୟ ନିଶ୍ଚୟ ପ୍ରକାଶ ପାଇବ ।

ମୋର ମନେ ହୁଏ, ଯେତେବେଳେ ଆମେରିକାନ୍ ଇଉଥ୍ କଂଗ୍ରେସରେ କମ୍ୟୁନିଷ୍ଟ ଆଧିପତ୍ୟ ବଢିଯାଏ, ସେତେବେଳେ ଫ୍ରାଙ୍କଲିନ ସ୍ୱୟଂ ସେମାନଙ୍କ ସଂସ୍ପର୍ଶରେ ଆସନ୍ତି । ସେମାନଙ୍କର କାର୍ଯ୍ୟ କଳାପ ଓ ବକ୍ତୃତା କମ୍ୟୁନିଷ୍ଟ ପାର୍ଟି ଭଳି ହେଉଥିଲା । ଆହୁରି କେତେ ଗୁଡ଼ିଏ ଗୁପ୍ତ ଖାଟ ବ୍ୟାପାରରେ ମୋର ସନ୍ଦେହ ହେଉଥିଲା । ଏଭଳି କୌଣସି ଦଳ ବା ବ୍ୟକ୍ତି ବିଶେଷଙ୍କର କାର୍ଯ୍ୟ କଳାପରେ ଦୃଷ୍ଟି ଦେବା ସମୟ ଫ୍ରାଙ୍କଲିନଙ୍କର ଖୁବ୍ କମହିଁ ଥିଲା । ତେବେ ମୋର ଅନୁରୋଧରେ ସମୟ ସମୟରେ ସେ କୌଣସି କୌଣସି ବିଷୟରେ କାହା ସଙ୍ଗରେ କମିତି ଆଳାପ ଆଲୋଚନା କରୁଥିଲେ ।

୧୯୪୦ ମସିହା ଫେବୃୟାରୀ ୧୦ ତାରିଖ ଦିନ ଆମେରିକାନ ଇଉଥ୍ କଂଗ୍ରେସ ଓ୍ୱାଶିଂଟନରେ କୁଚ୍‌କା ଅଓ୍ୱାଜ ଓ ସଭାର ଆୟୋଜନ କରନ୍ତି । ମୋ ମନେ ହେଲା ଫ୍ରାଙ୍କଲିନଙ୍କୁ ଏହି ସଭାରେ ବକ୍ତୃତା ଦିଆଇଲେ ଭଲହିଁ ହୁଅନ୍ତା । ହ୍ୱାଇଟ ହାଉସର ଦକ୍ଷିଣ ବାରନ୍ଦାରୁ ସେମାନଙ୍କ ଉଦ୍ଦେଶ୍ୟରେ କିଛି କହିବେ ବୋଲି ସ୍ଥିରୀକୃତ ହୁଏ । ସେଦିନ ମେଘ ହେଉଥିଲା । ଦକ୍ଷିଣ ପ୍ରାଙ୍ଗଣରେ ଗୋଟିଏ ଦଳ ମେଘରେ ତିନ୍ତି ଓଦା ସର ସର ହୋଇ ଠିଆ ହୋଇ ରହିଲେ । ସେମାନଙ୍କର ଆସ୍ପର୍ଦ୍ଧା ସେତେବେଳକୁ ଖୁବ୍ ବେଶୀ ।

ସେମାନେ ଭାବୁଥିଲେ ଫ୍ରାଙ୍କଲିନ ବୋଧ ହୁଏ ତାଙ୍କ ପିଠିରେ ବାହାବା କରି ତାଳି ମାରିବେ। ତା ବଦଳରେ ଫ୍ରାଙ୍କଲିନ ଏପରି କେତେ ଗୁଡ଼ିଏ ସତକଥା କହନ୍ତି, ଯାହା ଭଲ ନ ଲାଗିଲେହେଁ ସେମାନଙ୍କର ଶୁଣିବା ଉଚିତ। ତାହେଲେ ସେମାନେ ବୁଝି ପାରିବେ ଯେ ସେମାନଙ୍କ ପ୍ରତି ଦରଦୀ ଓ ସହାନୁଭୂତି ସମ୍ପନ୍ନ ଜନଗଣ, ସେମାନଙ୍କ କାର୍ଯ୍ୟ ସମ୍ବନ୍ଧରେ କିପରି ଧାରଣା ପୋଷଣ କରନ୍ତି। ଫ୍ରାଙ୍କଲିନ ସେମାନଙ୍କ ପ୍ରତି ସଦୟ ଓ ସେମାନଙ୍କୁ ଚାହାନ୍ତି ବୋଲି ସ୍ପଷ୍ଟ ଜଣା ପଡ଼ିଲା। ହେଲେ, ସେମାନଙ୍କ ଜୀବନରେ ଆଦର୍ଶ ଓ ଦାୟିତ୍ୱ ସମ୍ବନ୍ଧରେ କେତେକ ଅପ୍ରିୟ କଥା କହିବା ପାଇଁ ସେ ବାଧ୍ୟ ହୋଇଥିଲେ।

ତାଙ୍କ ସତର୍କବାଣୀ ଶୁଣିଲା ଭଳି ମାନସିକ ଅବସ୍ଥା ତରୁଣମାନଙ୍କର ନଥିଲା। ସେମାନେ ଚିତ୍କାର କରି ପ୍ରେସିଡେଣ୍ଟଙ୍କ ପ୍ରତି ଅଶ୍ରଦ୍ଧା ଦେଖାନ୍ତି। ତରୁଣମାନଙ୍କର ଏହି ପ୍ରତିକ୍ରିୟାରେ ମୁଁ ରାଗିଯାଏ। ଯୁକ୍ତ ରାଷ୍ଟ୍ରର ପ୍ରେସି-ଡେଣ୍ଟଙ୍କ ପ୍ରତି ସେମାନଙ୍କର ଅଶ୍ରଦ୍ଧା ଓ ଅଭଦ୍ରତା ମୋତେ ଭାରି ଖରାପ ଲାଗିଥିଲା। ମୋର ସ୍ୱାମୀ କିନ୍ତୁ ଶାନ୍ତ ଭାବରେ ସବୁ ଗ୍ରହଣ କରିଥିଲେ। ସହୃଦୟରେ ସ୍ମିତ ମୁଖରେ ସେ କହିଲେ "ଆମ ପିଲାଙ୍କର ମନୋଭାବ ବୁଝିବା ମୁସ୍କିଲ...କି, ତାହା ନୁହେଁ ?"

ଆମେରିକାନ୍ ୟୁଥ କଂଗ୍ରେସ ତୀବ୍ର ଭାବରେ "ସାମ୍ରାଜ୍ୟବାଦୀ" ଯୁଦ୍ଧ ଏବଂ ଯୁଦ୍ଧ ଆୟୋଜନର ବିରୁଦ୍ଧରେ ଥିଲେ। ଯେତେବେଳେ ରୁଷିଆ, ଜାର୍ମାନୀର ମିତ୍ର ହୁଅନ୍ତି, ସେତେବେଳେ ଶାନ୍ତି ବ୍ୟାପାରରେ ସେମାନେ ଉଦ୍‌ଗ୍ରୀବ ମଧ୍ୟ ହୋଇଥିଲେ। ଫଳରେ ଟୋଗୋଟିଏ ସଭା ଡକାଇ, ସେମାନଙ୍କର ନେତୃ ବର୍ଗଙ୍କୁ ଡାକି ଜଣାଇ ଦିଏ ଯେ ପରରାଷ୍ଟ୍ର ନୀତି ଦିଗରୁ ଆମ୍ଭମାନଙ୍କୁ ଏଥର ସେମାନଙ୍କ ଠାରୁ ବିଦାୟ ନେବାକୁ ପଡ଼ିବ। ସେତେବେଳେ ଜର୍ମାନୀ ବିରୁଦ୍ଧରେ ଯେଉଁ ସବୁ ଦେଶ ଜୋରରେ ଯୁଦ୍ଧ ଚଲାଉଥାନ୍ତି, ସେମାନଙ୍କୁ ସାହାଯ୍ୟ କରିବାକୁ ମଧ୍ୟ ସେମାନେ ନାପସନ୍ଦ କରୁଥିଲେ।

ଏହାର କିଛି ସମୟ ପରେ ଗୋଟିଏ ଭୋଜି ପାଇଁ ସେମାନଙ୍କର ନେତୃବର୍ଗଙ୍କୁ ହ୍ୱାଇଟ୍ ପାର୍କକୁ ନିମନ୍ତ୍ରଣ କରି ସିଧା ସଳଖ ଜଣାଇ ଦେଲି ଯେ ମୋର ଆଉ ସେମାନଙ୍କ ସମିତିରେ ରହି କାମ କରିବା ଚଳିବ ନାହିଁ । ତେବେ ଉଦ୍‌ବାସ୍ତୁ ଭାରତବର୍ଷୀମାନଙ୍କ ମଧ୍ୟରେ ସେମାନେ ଯେଉଁସବୁ କାମ କରୁଛନ୍ତି, ସେ ବାବଦ ମାସିକ ଆର୍ଥିକ ସାହାଯ୍ୟ ମୁଁ କରିବି ।

'ସେମାନଙ୍କ ସମ୍ବନ୍ଧ ତ୍ୟାଗ ସିଦ୍ଧାନ୍ତ ପରେ ଇଉଥ କଂଗ୍ରେସର ତରୁଣ-ଗଣ ମୋ ବିରୁଦ୍ଧରେ ଏହି ଅଭିଯୋଗ ଆଣନ୍ତି ଯେ "ମୁଁ ଧନବାଦୀମାନଙ୍କ ନିକଟରେ ନିଜକୁ ଏକାବେଳେ ଉତ୍ସର୍ଗ କରି ଦେଇଛି ।" କେହି କେହି ଶାନ୍ତିବାଦୀ ଦଳଙ୍କ ସହାୟତାରେ ହ୍ୱାଇଟ ହାଉସ ସାମନାରେ ପିକେଟିଂ ଆରମ୍ଭ କରନ୍ତି ।

ଜାର୍ମାନ, ରୁଷିୟା ଆକ୍ରମଣ ଖବର ପହଞ୍ଚିଲେ, ଇଉଥ କଂଗ୍ରେସ ପୁନର୍ବାର ଗୋଟିଏ ଜନସଭା ଆହୂତ କରି ରୁଷିୟା ସହିତ ସହଯୋଗୀତା ଓ ଯୁଦ୍ଧରେ ଆହୁରି ଅଧିକା ଆୟୋଜନର ବ୍ୟବସ୍ଥା କରନ୍ତି । ଅଧିକନ୍ତୁ ସେ ମୋତେ ଗୋଟିଏ ତାରିବି ପଠାଇଥିଲେ । ସେଥିରେ ଲେଖାଥିଲି "ଏବେ ଅମେ ସବୁ ଏକାଠି କାମ କରି ପାରୁ ।" ସେତେବେଳେ ଯୁଦ୍ଧ ଆଉ ସାମ୍ରାଜ୍ୟବାଦରେ ସୀମାବଦ୍ଧ ହୋଇ ରହିଲି ନାହିଁ । ସାଙ୍ଗେ ସାଙ୍ଗେ ହ୍ୱାଇଟ ହାଉସରୁ ପିକେଟିଂ ଉଠାଇ ନିଆ ହୁଏ ।

ମୁଁ ଆଉ କେବେହେଲେ ଉଇଥ୍ କଂଗ୍ରେସକୁ କାମ କରିବାକୁ ଯାଇନାହିଁ । ସତକଥା କହିବାକୁ ଗଲେ ସେମାନଙ୍କ ନିଷ୍ଠାଉପରେ ମୁଁ ଆଉ ଆସ୍ଥା ରଖିନାହିଁ । ମୁଁ ଏହା ସ୍ପଷ୍ଟ କହିବାକୁ ଚାହେଁ, ଯେ ସେମାନେ ମୋତେ ଅସ୍ତବ୍ୟସ୍ତ କଲେହେଁ, ସେମାନଙ୍କ ଉପରେ ମୋର ଆନ୍ତରିକତା ଥିଲି । ସେମାନେ ଯେଉଁ ଜଟିଳତା ମଧ୍ୟରେ ଗଡ଼ି ଚାଲୁଥିଲେ, ତାହା ଭୁଲିବା ଶକ୍ତ । ସେମାନଙ୍କ ପ୍ରତି ମୋର ତିଳେ ହେଲେ ବିରାଗ ନଥିଲି । ସେମାନଙ୍କ ସାଙ୍ଗରେ କାମକରି ଯେଉଁ ଅଭିଜ୍ଞତା ଅର୍ଜନ କରିଛି, ସେଥିପାଇଁ ମୁଁ କୃତଜ୍ଞ । ମୁଁ ସେଠାରେ କମ୍ୟୁନିଷ୍ଟ କୌଶଳ ଜାଣି ପାରିଛି ।

ଗୋଟିଏ ଦଳ ମଧ୍ୟରେ କପରି ଗୁପ୍ତଭାବରେ ପ୍ରବେଶ କରିବାକୁ ହୁଏ, ତାହାର କୌଶଳ ମୁଁ ଜାଣେ । କମ୍ୟୁନିଷ୍ଟଗଣ କପରି ଗୁରୁତ୍ୱପୂର୍ଣ୍ଣ ପଦ ପାଆନ୍ତି, ତା ବି ମୁଁ ଜାଣେ । ସେମାନଙ୍କର ତର୍କ, ବିତର୍କ, ବିନଯ଼, ଦଳମଧ୍ୟରେ କ୍ଲାନ୍ତି ଆଣିଦେବା ପ୍ରଚେଷ୍ଟା-ତାପରେ ବିପକ୍ଷଦଳ ଘରକୁ ପ୍ରତ୍ୟାବର୍ତ୍ତନକଲେ ଭୋଟରେ ଜୟଲାଭ ଏସବୁ ମୋର ଦେଖା ଅଛି । ମୁଁ ଏସବୁ କୌଶଳ ସହିତ ସୁପରିଚିତ । ମୁଁ ଜାଣିଛି କୌଣସି ପରାଜୟ ଶେଷ ପରାଜୟ ନୁହେଁ । ଆମେରିକାନ୍ ଇଉଥ୍ କଂଗ୍ରେସ ସହିତ କାମକରି ଯେଉଁ ଶିକ୍ଷା ପାଇଛି ଓ ଏହିଠାରୁ ଯେଉଁ କୌଶଳର ପରିଚୟ ମୁଁ ପାଇଥିଲି, ଇଉ, ଏନ୍, ଓଏରେ ଏହି ସବୁ କୌଶଳର କମ୍ୟୁନିଷ୍ଟ ବୁଝିବାରେ ମୋତେ ସାହାଯ୍ୟ କରିଥିଲା । ହିଟଲରଙ୍କର ସୈନ୍ୟଦଳ ପୋଲାଣ୍ଡରେ ପ୍ରବେଶ କରିବାର ଖବର ଆସି ପହଞ୍ଚିଲେ ଫ୍ରାଙ୍କ୍ଲିନ୍ ହାଇଡ୍ ପାର୍କରେ ମୋତେ ଖବର ଦିଅନ୍ତି । ଭେରି ଟମ୍ପା, ମିସେସ୍ ଜର୍ଜ୍, ଏସ୍, ହାଣ୍ଟିଂଟନ ନାମକ ଜନୈକ ପୁରାତନ ବନ୍ଧୁ ସେତେବେଳକୁ ମୋ ସହିତ ବାସ କରୁଥିଲେ । ମିସ୍ ଟମସନ୍ ଓ ମୁଁ ଶୋଇବାକୁ ଯାଇ ପାରିଲୁ ନାହିଁ । ଆସନ୍ନ ବିପଦର ଅନୁଭୂତି ମୋ ମନ ମଧ୍ୟରେ ଗୋଟିଏ ଭୀଷଣ ଆଶଙ୍କାର ସୃଷ୍ଟିକରି ଉଠାଇ-ଥିଲା । ଯାହାକୁ ଡରୁଥିଲି, ଅବଶେଷରେ ତାହାର ସମ୍ମୁଖୀନ ହେବାକୁ ପଡ଼ିଲା । ଆମେ ସବୁ ବେଶ ଜାଣିଥିଲୁ, ବର୍ତ୍ତମାନରେ ହେଉ ବା ଭବି-ଷ୍ୟତରେ ହେଉ, ଇଉରୋପର ଅନ୍ୟାନ୍ୟ ଦେଶ ସହିତ ଆମ୍ଭମାନଙ୍କୁ ମଧ୍ୟ ଏହି ଘୂର୍ଣ୍ଣିପାକ ମଧ୍ୟରେ ପଡ଼ିବାକୁ ହେବ । ଯୁଦ୍ଧର ଫଳାଫଳ ଯେ କ'ଣ ହେବ, ସେ ଧାରଣା ମୋର ନଥିଲା । ଆମ ପିଲାପିଲାଙ୍କର ବୁଝିବା ଭଲି ବଯ଼ସ ହୋଇଥାଏ । ଯୁଦ୍ଧର ଅଂଶ ସେମାନେ ନିଶ୍ଚଯ଼ ଗ୍ରହଣକରିବେ । ମନେହେଲା ସତେ ଯେପରି ମୋତେ ଓ୍ୱାଶିଂଟନରେ ବସି ଆନନ୍ଦରେ କଟାଇବାକୁ ହେବ । ପ୍ରିୟଜନ ମାନଙ୍କର ବିପଦରେ ପଡ଼ିବାର ସମ୍ଭାବନା ଦେଖାଗଲେ ନିଜେ ଅଚଳାରେ ରହି ସମୟ କଟାଇବା ଅତ୍ୟନ୍ତ ଅଶୋ-ଭନୀଯ଼ । ମନ ସେତେବେଳକୁ ବିଦ୍ରୋହ କରି ଉଠେ । ଯାହା ହେଉ,

ଗୋଟି ଗୋଟି କରି ବହୁଘଟଣା ଘଟିଗଲା । ପୁନର୍ବାର ଆରମ୍ଭ ହେବ ପ୍ରେସିଡେଣ୍ଟ ନିର୍ବାଚନୀ ପ୍ରତିଯୋଗିତା । ଅଧିକୃତ ଦେଶମାନଙ୍କର ବହୁ ଅଧିବାସୀଙ୍କୁ ଏ ଦେଶରେ ରହିବାର ସୁବିଧା ଦେବାକୁ ହେବ । ତାଛଡ଼ା ସମସ୍ତଙ୍କୁ ବ୍ୟକ୍ତିଗତ ଭାବରେ ଅନ୍ୟ ଦେଶ ସମୂହର ଯୁଦ୍ଧର ବାସ୍ତବତା ସମ୍ବନ୍ଧରେ ଅଭ୍ୟସ୍ତ କରିବାକୁ ପଡ଼ିବ । ଏପରି ଭାବରେ ପ୍ରସ୍ତୁତ ହେବାକୁ ହେବ ନିଜର ସର୍ବନାଶ ପାଇଁ ।

ଗ୍ରେଟ୍‌ବ୍ରିଟେନର ଅଧିବାସୀ ମାନଙ୍କ ନିକଟରୁ ଓ ହ୍ୱାଇଟ୍ ହାଉସକୁ ଆମ୍ଭମାନଙ୍କ ପାଖକୁ ଡାକକାର୍ଡ ଆସନ୍ତି ଗୋଟିଏ ଦୁଶ୍ଚିନ୍ତା ଘେନି ଓ ଦୁଃସମୟରେ ମଧ୍ୟ । ସେହି ଯୁଦ୍ଧଭୂମିମାନ ଇଂଲଣ୍ଡର ବୀରତ୍ୱ ଓ ରାଜକୀୟ ବିମାନ ବାହିନୀ କିପରିଭାବରେ ଦେଶ ରଖିବାରେ କୃତକାର୍ଯ୍ୟ ହୋଇଥିଲେ, ଏକଥା ଜଣାଗଲାକ୍ଷଣି ଯୁକ୍ତରାଷ୍ଟ୍ରକୁ ସାଧାରଣ ମନୁଷ୍ୟ ଶତ ମୁଖରେ ପ୍ରଶଂସା ନକରି ରହି ପାରିଲେ ନାହିଁ ।

ପ୍ରେସିଡେଣ୍ଟ ନିର୍ବାଚନର ଏହି ତୃତୀୟ ପର୍ଯ୍ୟାୟ କଥା ବହୁଥର କୁହା ହୋଇଛି । ଫ୍ରାଂକଲିନଙ୍କୁ କେତେବେଳେହେଲେ ରାଜନୈତିକ ଦୃଷ୍ଟି-କୋଣରୁ ସେ କ'ଣ ଭାବୁଛନ୍ତି, ତାହା ପଚାରି ହୋଇନାହିଁ । ମୁଁ ତାଙ୍କୁ କେଭେହେଲେ ଓ୍ୟାଶିଂଟନକୁ ଆସିବାକୁ ଦେଇନାହିଁ । ସେଇଥିଯୋଗୁ ତାଙ୍କର ସିଦ୍ଧାନ୍ତ ଯେ ମୁଁ ଯେପରି ଅନୁମୋଦନ କରେ । ଏକଥା ଜଣାଇବାକୁ ମୁଁ ପ୍ରସ୍ତୁତ ନଥିଲି । ଏ ସମ୍ବନ୍ଧରେ ମୁଁ ବରାବର ସଜାଗ ଥିଲି ।

ମୋର ସ୍ପଷ୍ଟ ଧାରଣା ହୋଇଥିଲା ସେ ଆଉ ନିର୍ବାଚନ ଯୁଦ୍ଧରେ ଅବ-ତୀର୍ଣ୍ଣ ହେବେନାହିଁ ବୋଲି । ସମୟ ଯେତେ ପାଖେଇ ଆସିଲା, ବହୁତଲୋକ ଆସି ମୋତେ କହିବାକୁ ଲାଗିଲେ ତାଙ୍କୁ ନିର୍ବାଚନରେ ପ୍ରତିଦ୍ୱନ୍ଦିତ କରିବାକୁହିଁ ହେବ । ଯୁଦ୍ଧର ଘନଘଟା ଚାରିଆଡ଼େ ବ୍ୟାପିଥାଏ । ତାଙ୍କପରି ସମ୍ମାନିତ ଓ ବୁଦ୍ଧିମାନ ଲୋକ ଦେଶରେ ନାହିଁ କହିଲେ ଚଳେ । ସୁତରାଂ ଅନ୍ୟ କୌଣସି ଲୋକ ନିର୍ବାଚିତ ହେଲେ ଦେଶକୁ ବିପଦମୁକ୍ତ କରି ପାରିବେ ନାହିଁ ।

ମୁଁ ବି ଘୋର ମୁସ୍କିଲରେ ପଡ଼ିଲି । ବାସ୍ତବିକ୍, ଫ୍ରାଂକଲିନଙ୍କ ସ୍ଥାନ ପୂରଣ କରିବା ପାଇଁ ଅନ୍ୟ କୌଣସି ଲୋକ ଅଛନ୍ତି ବୋଲି ମୋର ଦୃଷ୍ଟି ଗୋଚର ହେଲାନାହିଁ ।

ମୁଁ ତାଙ୍କୁ କେତେଥର କହିଥିଲି, ତାଙ୍କ ସ୍ଥାନ ପୂରଣ କରିବା ପାଇଁ ଲୋକ ତିଆରି ବ୍ୟାପାରରେ ତାଙ୍କର ସଚେଷ୍ଟ ହେବା ଉଚିତ୍ ବୋଲି । ଫ୍ରାଂକଲିନ ସବୁବେଳେ ହସି ହସି କହୁଥିଲେ, ତାଙ୍କ ମତରେ ମନୁଷ୍ୟ ନିଜକୁ ନିଜେ ପ୍ରସ୍ତୁତ କରିବା ଉଚିତ୍ । ସେ କେବଳ ସୁଯୋଗ ଦେଇ ପାରନ୍ତି ମାତ୍ର । ଆଉ ସେମାନେ କିପରି ଭାବରେ ସୁଯୋଗକୁ କାମରେ ଲଗାଉଛନ୍ତି, ତାହା ଲକ୍ଷ୍ୟ କରି ପାରନ୍ତି ।

ମୁଁ ଏକଥା ମନେକରି ପାରିନାହିଁ ଯେ, ଫ୍ରାଂକଲିନ ତାଙ୍କ ଉତ୍ତରାଧିକାରୀଙ୍କ କଥା ଗଭୀର ଭାବରେ ଚିନ୍ତାକରି ନାହାନ୍ତି ବୋଲି । ପ୍ରତ୍ୟେକ ଲୋକର ପ୍ରେସିଡେଣ୍ଟ ହେବାର ଯେ ଅଧିକାର ଅଛି, ସେ କଥା ବରାବର ସେ ସ୍ୱୀକାର କରୁଥିଲେ ।

ନିର୍ବାଚନୀ କନଭେନ୍‌ସନ୍ ବସିବା ଆଗରୁ ଏହା ସ୍ପଷ୍ଟଭାବରେ ଜଣାଗଲା, ଫ୍ରାଂକଲିନହିଁ ପୁନର୍ବାର ମନୋନୀତ ହେବେ ଓ ତାଙ୍କୁ ପୁଣି ପ୍ରାର୍ଥୀ ହେବାକୁ ପଡ଼ିବ । ତାଙ୍କୁ କୁହା ହୋଇଥିଲା ଯେ ମନୋନୀତ ହେଲେ ସେ ଆଉ ଅସ୍ୱୀକାର କରି ପାରିବେ ନାହିଁ । ମୁଁ ବିଶ୍ୱାସ କରେ, ବାସ୍ତବରେ ସେ ମନୋନୟନ ଆଶା କରୁଥିଲେ । ମନୋନୀତ ନହେଲେ ସେ ଖୁବ ଖୁସିହିଁ ହୋଇଥାନ୍ତେ ଓ ଶାନ୍ତିରେ ରହି ପାରିଥାନ୍ତେ । ଯେତେବେଳେ ଆପଣ ନିଜେ ପୃଥିବୀର ନାନା ସମସ୍ୟା ମଧ୍ୟରେ ଜଡ଼ିତ ହୋଇ ରହିଛନ୍ତି, ସେତେବେଳେ ଏସମସ୍ୟା ମୋହରେ ଆପଣ ଅନ୍ୟ ଜୀବନଧାରା ଚିନ୍ତାକରି ନପାରନ୍ତି । ମୋ ମନେହୁଏ, ସେ ଯେପରି ଗୋଟିଏ ଗୋଲକଧନ୍ଧା ମଧ୍ୟରେ ପଡ଼ିଛନ୍ତି । ଗୋଟିଏଆଡ଼େ ତାଙ୍କର କ୍ଳାନ୍ତି, ଫସ ର ପ୍ରତି କାମନା, ସ୍ୱଇଚ୍ଛାରେ ବୁଲିଚାଲି କରିବାର ଐକାନ୍ତିକ ଆଗ୍ରହ ଓ ଅପର ଆଡ଼େ ଥିଲା ବିରାଟ ଆକର୍ଷଣ—ଆଜୀ-

ବନ ପ୍ରସ୍ତୁତ ଓ କାର୍ଯ୍ୟରେ ସଫଳତା ଓ ସେହି ସଙ୍କଟ ସମୟରେ ପୃଥିବୀର ଅଧିନାୟକତ୍ୱ କାମନା ।

ଫ୍ରାଂକଲିନ ଘୋଷଣା କଲେ ନିଉ ଫାଉଣ୍ଡଲାଣ୍ଡ ଓ ଓୟେଷ୍ଟ ଇଣ୍ଡିଜରେ ଆମେରିକା ବିମାନ ଘାଟି ନିର୍ମାଣ କରିବାର ବିନିମୟରେ ଗ୍ରେଟ୍ ବ୍ରିଟେନକୁ ୫୦ଖଣ୍ଡି ପୁରୁଣା ଡେଷ୍ଟ୍ରୟାର ପ୍ରେରଣର ଚୁକ୍ତିସମ୍ପର୍ଣ୍ଣ ହୋଇ ଯାଇଛି । ଦୁଇ ସପ୍ତାହ ପରେ ସେପ୍ଟେମ୍ବର ତା ୧୬ ରିଖରେ ସେ ସିଲେକଟିଭ୍ ସାର୍ଭିସ୍ ଯ୍ୟାକ୍ଟରେ ସ୍ୱାକ୍ଷର କରନ୍ତି । ଏଥର ମୋର ମନେହେଲା ଯୁଦ୍ଧ ଆସନ୍ନ । ବ୍ୟକ୍ତିଗତ ଭାବରେ ଆମ ପାଖ ସେ ତ ଆସି ଯାଇଥିଲା । ଏଲିୟଟ ସୈନ୍ୟ ଦଳରେ ନାମ ଲେଖାଏ । ବୈମାନିକ ଶିକ୍ଷା ଇତି ପୂର୍ବରୁ ସେ ପାଇଥିଲା । ଏଥର ସେ ବିମାନ ବାହିନୀରେ ଯୋଗଦେବା ଠିକ୍‌କରେ । ତାର ଆଖି ଭଲ ନଥିଲା । ସେ ଖୁବ ଉତ୍ସାହ ସହକାରେ ଜଣାଏ ଯେ ଗୋଟିଏ ପ୍ରକାରର ନୂଆ ଚଷମାର କାଚ ମିଳିଛି । ଏହା ସାହାଯ୍ୟରେ ସେ ଇଉରୋ-ପ୍ଲାନ୍‌ରେ ଉପରକୁ ଉଠି ପାରିବ ଓ ଓହ୍ଲାଇ ପାରିବ । ବେସାମରିକ ବିମାନ ଚଳାଇବାର ସାର୍ଟିଫିକେଟ ତ ତାର ଅଛି ।

କିଛିଦିନ ପରେ ସେ କ୍ୟାପ୍ଟେନ ହୋଇ ରାଇଟ୍ ଫିଲ୍‌ଡରୁ ଚାଲିଯାଏ । ୧୯୪୦ ନିର୍ବାଚନ ଅଭିଯାନରେ ତାକୁ କ୍ୟାପ୍ଟେନ କରା ହୋଇଛି ବୋଲି, ତା ଉପରେ ବିପକ୍ଷ ଦଳଙ୍କର ଆକ୍ରମଣ ଚାଲେ । ଫ୍ରାଂକଲିନଙ୍କୁ ପରାଜୟ କରିବାର ବହୁ ଅସ୍ତ୍ର ମଧ୍ୟରୁ ଏ ଥିଲା ଗୋଟିଏ । ବାପା ତୃତୀୟ ପର୍ଯ୍ୟାୟରେ ନିର୍ବାଚନରେ ଠିଆ ହେବେବୋଲି ଏଲିୟଟଙ୍କୁ ଯେ ଏଥିପାଇଁ ସହିବାକୁ ପଡ଼ିବ, ଏହା ମୋ ଆଖିରେ ଅନ୍ୟାୟ ବୋଲି ମନେ ହେଉଛି । କିନ୍ତୁ ରାଜନୈତିକ କୌଶଳରେ ନ୍ୟାୟ ଅନ୍ୟାୟର ସ୍ଥାନ ବିରଳ । ଫ୍ରାଂକଲିନ ଓ ମୁଁ ବହୁ ଦିନରୁ ଏପରି ବ୍ୟକ୍ତିଗତ ଆକ୍ରମଣରେ ଅଭ୍ୟସ୍ତ ହୋଇ ପଡ଼ିଥିଲୁ । ଏଲିଏଟ୍ କିନ୍ତୁ ରାଗରେ ଅଗ୍ନିଶର୍ମା ହୋଇଉଠେ । ସେ ଦେଖିଲେ ଯେ ଅନ୍ୟମାନଙ୍କର ତା ପରି ପାରିବାରିକ ଶିକ୍ଷା ଓ ଗୁଣ ନଥିବା ସତ୍ତ୍ୱେ ପାରିବାରିକ ଐତିହ୍ୟକୁ ସମ୍ବଳ କରି ଏପରି ପଦମର୍ଯ୍ୟାଦା

ଲାଭକରି ପାରିଛି । ତା'ର ଓ ଆମ୍ଭମାନଙ୍କର ଏବଂ ଅନ୍ୟସବୁ ପିଲାପିଲିଙ୍କ ଉପରେ ଏହି ଜାତୀୟ ସମାଲୋଚନାର ବିରୋଧୀ ମୁଁ ମଧ୍ୟ ଥିଲି । ହେଲେ ମୁଁ ନିଜକୁ ବୁଝାଉଥିଲି ଯେ, ଯଦି ଏହି ଜାତୀୟ ସମାଲୋଚନା, ଭଲ ଭାବରେ ଗ୍ରହଣ କରିଯାଏ, ତାହେଲେ ନିଜର ମାନସିକ ଶକ୍ତି ବଢ଼େ । ମୋହର ନିଜ ଉପରେ ହେଉଥିବା ଏଭଳି ଆକ୍ରମଣକୁ ମୁଁ ହସରେ ଉଡ଼ାଇ ଦେଇଥିଲି । ବିଶେଷକରି ବିରାଟ ଅଭିଯାନ ସମୟରେ ବ୍ୟବହୃତ ପ୍ରଚାର-ପତ୍ର ସମ୍ବଳିତ ବୋତାମ ସମୂହ, ବହୁ ସ୍ତ୍ରୀ-ଲୋକଙ୍କୁ ପିନ୍ଧିବାର ଦେଖି ଖୁବ ଭଲ ଲାଗୁଥିଲା । ସେଥିରେ ଲେଖାଥିଲା, "ଆମେସବୁ ଏଲିନରକୁ ବି ଚାହୁଁନା ।"

ଆଗଭଳି ସେଥରର ନିର୍ବାଚନ ରାତିଟି ମଧ୍ୟ ଆମେ ସବୁ ହାଇଡ ପାର୍କରେ କଟାଉ । ଫ୍ରାଙ୍କଲିନଙ୍କର ସବୁବେଳେ ବିଶ୍ୱାସଥିଲା ଜିତିବେ ବୋଲି । ତଥାପି ସେ କହନ୍ତି ଶେଷ ଗଣନା ନ ସରିଲେ ଦାକ୍ ଦାକ୍ ଯାଏନା । ଯାହାହେଉ, ଏହି ନିର୍ବାଚନର ଜୟଲାଭ ସମ୍ବନ୍ଧରେ ସେ ଖୁବ୍ ସନ୍ଦିଗ୍ଧ ଥିଲେ । କେବଳ ଯେ ମିଷ୍ଟାର ଉଇଲକି ଯେ ଜଣେ ପ୍ରତିପତ୍ତିଶାଳୀ ପ୍ରାର୍ଥୀଥିଲେ ତା ନୁହେଁ, ସେ ଜାଣିଥିଲେ ଏହି ତୃତୀୟଥର ପ୍ରେସିଡେଣ୍ଟ ହେବା ପାଇଁରେ ବିରାଟ ପ୍ରତିବନ୍ଧକ ଦେଖା ଦେବ । କିନ୍ତୁ ତାହା ହୋଇ ନାହିଁ । ମୁଁ ଆନ୍ତରିକ ତାଙ୍କର ଜୟ କାମନା କରୁଥିଲି । ସେ ମଧ୍ୟ ତାହାହିଁ ଚାହୁଁଥିଲେ । ସେ ପରାଜିତ ହୋଇଥିଲେ ମୁଁ ଖୁବ୍ ଦୁଃଖିତ ହୋଇଥାନ୍ତି । ମୁଁ ଆହୁରି ମଧ୍ୟ ଜାଣିଥିଲି, ସେ ହାରିଗଲେ ବେଶ୍ ଶାନ୍ତିରେ ଜୀବନ କଟାଇବେ । ସେଥିଲେ ଜଣେ ଦାର୍ଶନିକ । ଯାହା ହେଉନା କାହିଁକି, ସେ ତାହାକୁହିଁ ଗ୍ରହଣ କରୁଥିଲେ ।

୧୯୪୧ ମସିହାର ପ୍ରଥମାଂଶ ପ୍ରାୟ ପୂର୍ବ ପରି ଅଟେ । ଅଗଷ୍ଟ ମାସର ପ୍ରଥମ ଆଡୁ ବହୁ ରହସ୍ୟମୟ ଆଲୋଚନା ପରେ ସେ ମୋତେ ଜଣାନ୍ତି ଯେ ସେ କେଇଦିନ ପାଇଁ କେଫ, କଡ କ୍ୟାନାଲକୁ ବୁଲିବାକୁ ଯାଉଛନ୍ତି । ସେଠାରେ ସେ ମାଛ ଧରିବାକୁ ଇଚ୍ଛା କରନ୍ତି ବୋଲି କହି ହସିବାକୁ

ଲଗିଲେ । ମୁଁ ବୁଝି ପାରିଲି ସେ ଆଉ ଯାହା କରିବାକୁ ଚାହାନ୍ତି, ତାହା ମୋତେ ଜଣାଇବେ ନାହିଁ ।

ସ୍ୱେଚ୍ଛାରେ ନ କହିଲେ ପଚାରିବାଟା ଅସଙ୍ଗତ ହେବ, ସେ କଥା ମୁଁ ଜାଣିଥିଲି । ଯୁଦ୍ଧ ସମୟରେ ଏହି ଭାବନା ମୋତେ ଗ୍ରାସ କରି ପକାଇଥିଲା । ମୁଁ ଜାଣେ, ମୁଁ ବହୁ ଲୋକ ସଙ୍ଗରେ ମିଶେ । ଅସତର୍କ ଭାବରେ ଏପରି କଥା କହି ପକାଏ, ଯାହା କହିବା କେଭେହେଲେ ଉଚିତ ନୁହେଁ । ସେଇଥି ପାଇଁ ସ୍ୱାମୀଙ୍କୁ ଅନୁରୋଧ କଲି, ସେ ଯେପରି କୌଣସି ଗୋପନ କଥା ମୋତେ ନ କହନ୍ତି । ଏପରି ବହୁଥର ଘଟିଛି, କିଛି ଗୋଟିଏ ହେବାକୁ ଯାଉଛି, ତାହା ବୁଝି ପାରିଲେ ହେଁ ପଚାରିବାକୁ ସାହସ କରି ପାରି ନାହିଁ । ସେଇଥି ଯୋଗୁ ସେ ସମ୍ବନ୍ଧରେ ମୋର ଜ୍ଞାନ ଅସମ୍ପୂର୍ଣ୍ଣ ହୋଇ ରହିଛି ।

ଫ୍ରାଙ୍କଲିନଙ୍କ ସାଙ୍ଗରେ କେପ କଡ଼କୁ ବୁଲିବାକୁ ଯିବା ପାଇଁ କେତେଜଣ ବନ୍ଧୁଙ୍କୁ ନିମନ୍ତ୍ରଣ କରନ୍ତି । ଏହି ଭ୍ରମଣ ଖବର ସମ୍ବାଦ ପତ୍ରରେ ଖୁବ୍ ଅତିରଞ୍ଜିତ ହୋଇ ବାହାରେ । ଖାଲି କୂଳେ କୂଳେ ଜନତା ତାଙ୍କୁ ଦେଖିଲେ ସତ, ପରେ ସେ ଆଉ ଦୃଶ୍ୟ ହେଲେ ନାହିଁ । ପରେ କପରି ପ୍ରେସିଡେଣ୍ଟଙ୍କ ବୋଟ ଇଉ, ଏସ, ଏସ "ଅଗାଷ୍ଟାରେ" ଚଢି ଆର୍ଜେଣ୍ଟିୟା ବନ୍ଦରରେ ଉପସ୍ଥିତ ହୋଇଥିଲେ । ସେଠାରେ ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲଙ୍କ ସହିତ ତାଙ୍କର ଦେଖା ହୁଏ ।

ଏହି ସାକ୍ଷାତର କଥା ପ୍ରାୟ ମୁଁ ଶୁଣେ । ଗ୍ରେଟ ଫ୍ରାଙ୍କଲିନ ଓ ଏଲିୟଟ ଏହି ସାକ୍ଷାତକାର ବ୍ୟାପାରରେ ଯାହା ଜାଣିଥିଲେ ସେ ସମ୍ବନ୍ଧରେ ଗଳ୍ପ କରନ୍ତି । ମୋ ଠାରୁ ସେମାନେ ବିଶଦ ଭାବରେ ବର୍ଣ୍ଣନା କରି ପାରୁଥିଲେ । କାରଣ ସେଠାରେ ସେମାନେ ଉପସ୍ଥିତ ଥିଲେ । ଏଲିୟଟ ସେତେବେଳକୁ ସେହି ଅଞ୍ଚଳରେ ଥାଏ । ତାକୁ ଅଗଷ୍ଟ ମାସରେ ଆରଜେଣ୍ଟିୟାକୁ ପଠାଯାଏ । ସେତେବେଳକୁ ତାର ବାପା ଓ ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ ଆଟଲାଣ୍ଟିକ ସମ୍ବନ୍ଧରେ ଆଳାପ ଆଲୋଚନା କରିବା ପାଇଁ ଦେଖା

କରନ୍ତୁ । ଏଲିସ୍ବୃଟ ଜାଣି ନ ଥିଲି କାହିଁକି ଯେଉଁଠାରେ କାମ କରୁଥିଲି, ସେଠୁ ଆରଜେଣ୍ଟିଆକୁ ପଠାହେଉଛି । ପରେ ସେଠାରୁ ଯାଇ ବନ୍ଦରରେ ସାରି ସାରି ଜାହାଜ ବନ୍ଧା ଥିବାର ଦେଖି ପୁଅ ଏକାବେଳେ ଅବାକ ହୋଇ-ଯାଏ । ଏଥର ଗ୍ରେଟ ଫ୍ରାଙ୍କଲିନଙ୍କର ମଧ୍ୟ ଅବାକ୍ ହେବାର ପାଳି । ସେ ଥିଲି ନୌ ବିଭାଗର ରକ୍ଷିତ ଦଳରେ । ଆମେ ସବୁ ଯୁଦ୍ଧରେ ଅବତରଣ କରିବା ଆଗରୁ ତାକୁ ନୌ ବାହିନୀରେ ଭର୍ତ୍ତିକରି ହୋଇଥିଲି । ଗୋଟିଏ ଡେଷ୍ଟ୍ରୟାରରେ ସେ ଥିଲି ଉଚ୍ଚ ପଦସ୍ଥ କର୍ମଚାରୀ । ସୌଦାଗରୀ ଜାହାଜ ଗୁଡ଼ିକୁ ଇଂଲଣ୍ଡରେ ପହଞ୍ଚାଇ ଦେବା ହେଲି ଏହାର କାମ । ସେ ଦିଗରୁ କାର୍ଯ୍ୟଟି ଖୁବ୍ ଅପ୍ରୀତିକର ହିଁ ଥିଲି । ଶୀତ ଶେଷରେ ଓ ବସନ୍ତର ପ୍ରାର-ମ୍ଭରେ ଆଣ୍ଟଲାଣ୍ଟିକ ମହାସାଗରରେ ପ୍ରଚଣ୍ଡ ଶୀତ ଥାଏ । ସେ ତେଣୁ ପରିବାରର ସମସ୍ତଙ୍କୁ ତା ପାଇଁ ଗରମ ଜାମା କପଡ଼ା ପଠାଇବା ପାଇଁ ଅନୁରୋଧ ଜଣାଇ ଥିଲେ । ତାର ଏହି କାମଥିଲି ବୋଲି ସେ ପ୍ରେସିଡେଣ୍ଟ ଓ ପ୍ରଧାନ ମନ୍ତ୍ରୀଙ୍କ ଜାହାଜରେ ପହରି ଦେବାକୁ ଖବର ପାଏ । ମେଇନସ୍ଥ ପୋଟଲ୍ୟାଣ୍ଡ ସେତେବେଳକୁ ତୁଷାରବୃତ ଥିଲି । ସେ କଥା ସେ କହେ । ତା କାମ ଏଇଆ ଥିଲି ବୋଲି ପ୍ରେସିଡେଣ୍ଟ ଓ ପ୍ରଧାନ ମନ୍ତ୍ରୀଙ୍କ ଜାହାଜରେ ପହରି ଦେବାର ସୁଯୋଗ ପାଏ । ଆର୍ଜେଣ୍ଟିଆରେ ପହଞ୍ଚିଲାକ୍ଷଣି ଖବର ଆସିଲି ପ୍ରଧାନ ସେନାପତି ଗୋଟିଏ ନିର୍ଦ୍ଦିଷ୍ଟ ଜାହାଜକୁ ତାଙ୍କୁ ଡକାଇ ପଠାଇଛନ୍ତି । ସେ ହତଭମ୍ବ ହୋଇ ପଡ଼ିଲି ଓ ଭାବିବାକୁ ଲାଗିଲି "ମୁଁ ଫେରେ କ'ଣ କରିବି ?" ତାଙ୍କ ମନରେ ହେଲି ନାହିଁ ଯେ ଆଡମିରାଲ ମଧ୍ୟ ପ୍ରଧାନ ସେନାପତି ନୁହନ୍ତି । ତେଣୁ ଜାହାଜକୁ ଯାଇଁ ବାପାକୁ ଦେଖି ସେ ବିସ୍ମିତ ହେବା ସଙ୍ଗେ ସଙ୍ଗେ ସ୍ୱସ୍ତିର ନିଶ୍ୱାସ ମଧ୍ୟ ପକାଇଲି । ଫେରି ଆସି ସ୍ୱାମୀଙ୍କୁ ଖୁବ୍ ଖୁସୀ ଥିବାର ଦେଖିଲି । ଆଟଲାଣ୍ଟିକ ସନନ୍ଦ ସମ୍ବନ୍ଧରେ ଆଲାପ ଆଲୋଚନା ଏକ ରକମ ସ୍ଥିର ହୋଇ ଯାଇଛି ଓ ସେହି ମର୍ମରେ ଗୋଟିଏ ଘୋଷଣା ମଧ୍ୟ ପ୍ରକାଶିତ ହୋଇଛି । ମିଷ୍ଟର ଚର୍ଚ୍ଚିଲ ଓ ସେ ପରସ୍ପର ପରସ୍ପରକୁ ଚହ୍ନିଛନ୍ତି, ଆଲାପ କରିଛନ୍ତି ଓ ପରସ୍ପର ପରସ୍ପରକୁ

ଖୁବ୍ ଭଲ ଲାଗିଛି । ଏଥି ପୂର୍ବରୁ ମିଷ୍ଟାର ଗ୍ରୁଚିଲଙ୍କ ସହିତ ତାଙ୍କର ଦେଖା ହୋଇଥିଲା । ସେତେବେଳକୁ ସେ ତାଙ୍କୁ ଚିହ୍ନି ପାରି ନାହାନ୍ତି । ତାଙ୍କର ମନେ ହେଲା ଏହି ସାକ୍ଷାତରେ ଦୁଇଜଣଙ୍କ ମଧ୍ୟରେ ବନ୍ଧୁତ୍ୱ ପ୍ରଗାଢ଼ ହୋଇଛି । ଏବେ ସେ ଜାଣିଲେ, ଯାହାଙ୍କୁ ସେ ପ୍ରକୃତ "ଜନ୍ ବୁଲ" ବୋଲି ଜାଣିଥିଲେ, ବାସ୍ତବିକ୍ ପକ୍ଷରେ ତାଙ୍କ ସାଙ୍ଗରେ କାମ କରି ହୁଏ ।

ଆଜେଣ୍ଟିସ୍ଥାନାରୁ ଫେରି ଫ୍ରାଙ୍କଲିନ କ୍ରମେ ବ୍ୟସ୍ତ ହୋଇ ପଡ଼ିଲେ । ଅଗଷ୍ଟରୁ ସେପ୍ଟେମ୍ବର ମାସର ୪ ତାରିଖକୁ ସେ ହାଇଡ୍ ପାର୍କକୁ ଯିବାପାଇଁ ସ୍ଥିର କରନ୍ତି । ତାଙ୍କ ମା କ୍ୟାମ୍ପୋବେଲରୁ ଫେରି ଖୁବ ସୁସ୍ଥ ହୋଇ ଉଠିଥିଲେ । ଟିକିଏ ଯାହା ସର୍ଦ୍ଦି ଧରି ପକାଇଥିଲା ମାତ୍ର, ଅନ୍ୟଥା ସେ ଭଲହିଁ ଥିଲେ । ହଠାତ୍ ତାଙ୍କର ରୋଗର ଅବସ୍ଥା ସାଂଘାତିକ ଆଡ଼କୁ ଯାଏ । ସେପ୍ଟେମ୍ବର ମାସ ୭ ତାରିଖରେ ସେ ଇହଲୀଳା ସମ୍ବରଣ କରନ୍ତି । ମୋ ସ୍ୱାମୀଙ୍କର ଦୁଃଖ ଥିଲା ଅଶେଷ । ପରବର୍ତ୍ତି କାଳରେ ଜନସାଧାରଣଙ୍କ କାର୍ଯ୍ୟରେ ମତଗତ ପାର୍ଥକ୍ୟ ଦେଖାଦେଲେହେଁ, ସେମାନଙ୍କର ସମ୍ବନ୍ଧ ଖୁବ ଦୃଢ଼ହିଁ ଥିଲା ।

ଯେଉଁ ରାତିରେ ମୋର ଶାଶୁ ମୁମୂର୍ଷ ହୋଇ ପଡନ୍ତି, ମୋ ଭାଇ ଜି, ହାଲ୍ ରୁଷଭେଲଟ୍ ମଧ୍ୟ ଖୁବ ଅସୁଖରେ ପଡ଼ିଯାଆନ୍ତି । ସେ ହାଇଡ ପାର୍କରେ ଆମ ଘରଠାରୁ ଅନତିଦୂରରେ ଗୋଟିଏ ଷ୍ଟେଟ ଘରେ ରହୁ-ଥାନ୍ତି । ତାଙ୍କୁ ପୁକପୋଷୀ ଭଷାର ହସ୍ପାତାଲକୁ ନେଇଯାଏ । ଶାଶୁଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଦିନ ସେଠାରୁ ୱାଶିଂଟନର ୱାଲଟାର ରିଡ୍ ହସ୍-ପାତାଲକୁ ନିଆହୁଏ ।

ଶାଶୁଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଶେଷ ହେବା ସଙ୍ଗେ ସଙ୍ଗେ ଆମେ ସବୁ ହ୍ୱାଇଟ୍ ହାଉସକୁ ଫେରି ଆସି ତାପରେ କେଇ ସପ୍ତାହ ଭାଇଙ୍କ ମୃତ୍ୟୁ ଶଯ୍ୟା ନିକଟରେ କଟାଏ । ଏହି ରୋଗରେ ଅନ୍ୟ ରୋଗୀ ହେଲେ ବହୁ-ଦିନ ଆଗରୁ ମୃତ୍ୟୁ ଶଯ୍ୟାରେ ଶାୟିତ ହୋଇଥାନ୍ତା । କିନ୍ତୁ ଏ କ୍ଷେତ୍ରରେ ତାହାର ବିପରୀତ ଦେଖାଦେଲା । ତାହାର ଯଥେଷ୍ଟ ଶକ୍ତିଥିଲା ବୋଲି

ସେ ମରଣ ସହିତ ଖୁବ ଯୁଦ୍ଧ କରିବାକୁ ଲଗିଲ୍ । ମଝିରେ ମଝିରେ ତା ଘରକୁ ଗଲେ, ସେ ଦେଖି ମୋତେ ବେଶ ଚହ୍ନିପାରୁ ଥିଲ୍ ।

ସେପ୍ଟେମ୍ବର ମାସ ୨୫ ତାରିଖରେ ସେ ଇହଲୀଳା ସମ୍ବରଣ କରେ । ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ହ୍ୱାଇଟ ହାଉସରେ ସମ୍ପର୍ଣ୍ଣ ହୁଏ । ଦୁଃଖ ମାତ୍ରେହିଁ ଦୁଃସହ । ଅଧିକନ୍ତୁ ତାହା ଯଦି ପ୍ରିୟଜନଙ୍କ ବିଚ୍ଛେଦଜନିତ ହୁଏ । ମନେ ହୁଏ, ଏହି ଦୁଃଖ ଭୁଲିବାପାଇଁ ମୁଁ ସିଭିଲଡ଼ିଫେନ୍ସ ଅଫିସରେ ବସନ୍ତ କାଳରେ କାମ ଆରମ୍ଭ କରେ ।

ହିଲଙ୍କ ମୃତ୍ୟୁର କେଇଦିନ ଆଗରୁ ସେପ୍ଟେମ୍ବର ମାସ ୨୨ ତାରିଖରେ ମେୟରଲ ଗାର୍ଡ଼ିଆରଙ୍କ ହାତରୁ କିଛି କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରେ । ଏସବୁ ଠିକ ଯୁଦ୍ଧ ପ୍ରତିରୋଧର କାମ ନହେଲେ ବି କିଛିନା କିଛି ସମ୍ପର୍କ ନିଶ୍ଚୟ ତାସହିତ ଅଛି । ଅସାମରିକ ଅଧିବାସୀମାନଙ୍କ ରକ୍ଷା ପାଇଁ ପ୍ରୟୋଜନ ବି ଥିଲ । ପ୍ରଥମ କେଇ ସପ୍ତାହରେ ମେୟର ପ୍ରଦତ୍ତ କାମ ସେପରି କରି ପାରି ନାହିଁ । ଘାଇର ଅନ୍ତ୍ୟେଷ୍ଟିକ୍ରିୟାରୁ ଫେରି ଖୁବ ଜୋର ସୋରରେ କାମରେ ଲଗି ଯାଏ । ମୁଁ ଶୀଘ୍ରହିଁ ବୁଝିପାରିଲି ଯେ ମେୟର ଯେଉଁ-ସବୁ କାମ ତାଙ୍କ କାର୍ଯ୍ୟ ସୂଚିରେ ରଖି ନାହାନ୍ତି, ସେ ସବୁ ଆଣି ମୋ ବିଭାଗରେ ଦେଇଛନ୍ତି ।

ମୁଁ ପ୍ରତିଦିନ ସିଭିଲୟାନ ଡ଼ିଫେନ୍ସ ଅଫିସରେ ବହୁ ସମୟ ଅତି-ବାହିତ କରେ । ନିଜ କାର୍ଯ୍ୟ ଘରେ ରାତିରେ ବହୁ ସମୟ କାମକରି ଶେଷ କରିବାକୁ ପଡ଼ୁଥିଲ୍ । ପ୍ରତି ଘଣ୍ଟା ପରେ, ହ୍ୱାଇଟ ହାଉସରେ ସବୁ ଠିକ ଅଛି କି ନା, ଦେଖିବା ଲଗି ପ୍ରହରୀଗଣ ଟହଲ ଦିଅନ୍ତି । ଦିନେ ଭୋର ବେଳା ସ୍ୱାମୀ କହିଲେ "କଅଣ ଶୁଣୁଛି, କୁହତ, କାଲି ରାତିରେ ତୁମେ ଜୁଆଡ଼େ ମୋଟେ ଶୋଇନାହଁ" ? ସମୟର ହିସାବ ନ ରଖି, ସେଦିନ ରାତିରେ ମୁଁ ଡାକ କାମ କରୁଥିଲି । ହଠାତ୍ ଯେତେବେଳେ ଦେଖିଲି, ସୁନ୍ଦର ଫାଟି ଆସିଲଣି, ସେତେବେଳେ ଭାବିଲି ଆଉ ଶୋଇବି ନାହିଁ । ଯେଉଁ ଲୋକଟି ଟହଲ ଦେଉଥିଲା, ସେ ମୋର କବାଟ

ଫାଙ୍କରୁ ଆଲୋକ ଦେଖିବାକୁ ପାଏ । ମୁଁ ଘର ମଧ୍ୟରେ ବୁଲୁଛି, ସେ ପଦ ଶବ୍ଦ ମଧ୍ୟ ଶୁଣିବାକୁ ପାଇଲି । ସେ ଘରର ଅନ୍ୟମାନଙ୍କୁ ଏକଥା ଜଣାଏ । ସ୍ୱାମୀ ଏହା ସେମାନଙ୍କ ନିକଟରୁ ଶୁଣନ୍ତି । ଏପରି ଭାବରେ ମୁଁ ବରାବର ଅନିଦ୍ରା ହୋଇ ରହେଁ ।

ପାର୍ଲ ହାରବାରର ଆକ୍ରମଣ ଦିନୁଟି ଆସିଲା ଶାନ୍ତ ଭାବରେ । ସେଦିନ ମଧ୍ୟାହ୍ନ ଭୋଜନରେ ଗୋଟିଏ ବିରାଟ ଦଳ ଯୋଗ ଦେବେ ବୋଲି ପ୍ରତ୍ୟାଶା କରିଥିଲୁ । ଫ୍ରାଙ୍କଲିନ ଖବର ଦେଲେ, ସେ ଠିକ୍-କରି ପାରୁନାହାନ୍ତି କିପରି ଭାବରେ ଆମ ସହିତ ସେ ଭୋଜିରେ ଯୋଗ ଦେବେ । ଅନେକ ଦିନ ଯାଏ, ତାଙ୍କର ଦୁଶ୍ଚିନ୍ତା ବଢ଼ିବାକୁ ଲାଗିଲା । ବିରାଟ କୌଣସି ସମ୍ମେଳନର ଆୟୋଜନ ଥିଲେ ସେ ଆସି ପାରିବେ ନାହିଁ ବୋଲି ଶେଷ ମୁହୂର୍ତ୍ତରେ ଜଣାଇ ଦିଅନ୍ତି । ସେ ଯାହା କହନ୍ତି, ଜନ-ସାଧାରଣ ତାହା ଶୁଣିବାପାଇଁ ବ୍ୟଗ୍ର । ତାଙ୍କ ମଗଜରେ ଏତେ ଗୁପ୍ତକଥା ରହିଛି ଯେ ଯାହି କିଛି କହୁଥିଲେ ସତର୍କତା ସହିତ କହୁଥିଲେ । ଏହାର ଚାପ କିଛି କମ୍ ନୁହେଁ । ଏହି ଦୁଃଶ୍ଚିନ୍ତା ଓ ହତାଶା ତାଙ୍କର ସାଇନାସକୁ ଖରାପ କରିଦିଏ । ସେଇଥି ପାଇଁ ପ୍ରତ୍ୟହ ତାଙ୍କର ନାସିକା ଚିକିତ୍ସା କରିବାକୁ ପଡୁଥିଲା । ଲଞ୍ଚ ଶେଷ ହେବା ସଙ୍ଗେ ସଙ୍ଗେ ପର୍ଲହାରବାର ଆକ୍ରମଣ ଖବର ଆସି ପହଞ୍ଚେ । ଉପର ମହଲାକୁ ନପିବାଯାଏ ସେଖବର ଶୁଣିବାକୁ ପାଇ ନଥିଲେ । ଏଥର ଜଣେ ଦରୋଆନ୍ ଖବର ଦିଅନ୍ତି । ଖବରଟି ଯେପରି ମୋର ବୋଧଶକ୍ତି ପଙ୍ଗୁ କରିଦେଲା । ଘରଆଡ଼ ଶୂନ୍ୟ ଓ ଶାନ୍ତ । ଆମେ ନିର୍ଜନତା ପରିବେଷ୍ଟିତ ହୋଇ ଘରେ ନିଜ ନିଜର କର୍ତ୍ତବ୍ୟ ପାଳନ କଲୁ । ଅତିଥିମାନଙ୍କୁ ବିଦାୟ ଦିଏ । ଯେପର୍ଯ୍ୟନ୍ତ ବୈଠକ ଖାନାକୁ ସେ ଏକା ଫେରି ନ ଆସୁଛନ୍ତି ସେ ଯାଏ, ଫ୍ରାଙ୍କଲିନ୍‌ଙ୍କ ଅପେକ୍ଷାରେ ରହେ । ପ୍ରଥମ ଧକ୍କାଟିକୁ ନ ସହିବାଯାଏ କ'ଣ ଘଟିଛି ତାହା କହିବାକୁ ସେ ରାଜି ହେଲେ-ନାହିଁ । କ'ଣ କରିବାକୁ ହେବ, ତାହାର ଚେଷ୍ଟାରେ । ମୋରିତ ସେହିଭଳି ମନେ ହେଲା । ମୁଁ ବି ତେଣୁ କାମରେ ଲାଗିଗଲି ।

ଏବଡ଼ ଆଶ୍ଚର୍ଯ୍ୟ ଘଟଣା ଯେ ବିପଦ ସମୟରେ କ'ଣ ଘଟିଛି ବା ଘଟିବ ସେ କଥା ଭାବି ଭାବି ଜାତିର ଚିନ୍ତା ସହିତ ନିଜର ଚିନ୍ତା ମଧ୍ୟ ମିଶିଯାଏ । ସ୍ତ୍ରୀଲୋକମାନଙ୍କ ନିକଟରେ ବ୍ୟକ୍ତିଗତ ବିଷୟଟି ଆହୁରି ବେଶୀକରି ସାମ୍ନାକୁ ଆସିଯାଏ । କିନ୍ତୁ ହ୍ୱାଇଟ୍ ହାଉସରେ ବ୍ୟକ୍ତିଗତ ବ୍ୟାପାରକୁ ଦବେଇ ରଖିବା ଦରକାର, ଏକଥା ମୁଁ ଜାଣୁଥିଲି । ବେଳର ଅବସାନ ଘଟିଲା । ମୋର ବସିବା ଘରେ ବସି, , ଯଦିଓ ଡାକ ଦେଖା ଓ ଚିଠିଲେଖାର କାମ-କରୁଥିଲି, ମୋ କାନଥିଲା ସ୍ୱାମୀଙ୍କ ବୈଠକ ଖାନାକୁ କିଏ କିଏ ଯିବା ଆସିବା କରୁଛନ୍ତି, ସେହି ଆଡ଼କୁ । ସେ ସନ୍ଧ୍ୟାବେଳେ ଡାକ୍ତରଙ୍କ ଅଫିସକୁ ଗଲେ ନାକର ଚିକିତ୍ସା ପାଇଁ । ସନ୍ଧ୍ୟାରେ ତାଙ୍କ ବୈଠକ ଖାନାରେ ନୈଶ ଭୋଜନ ଦିଆହୁଏ । ପରଦିନ ଆମେସବୁ ବ୍ୟସ୍ତତାରେ କଟାଉ । ଯେପରି ରୋଜ ଯାଉଥିଲି, ଠିକ୍ ସେହିପରି ଦିନ ୯ଟା ବେଳେ ସିଭିଲିୟାନ୍ ଡ଼ିଫେନସ୍ ଅଫିସରେ ହାଜର ହୁଏ । ତାପରେ ବାରୁଟା ବାଜିବାର ଅଳ୍ପସମୟ ଆଗରୁ ହ୍ୱାଇଟ୍ ହାଉସକୁ ଫେରିଆସୁ । ସ୍ୱାମୀଙ୍କ ସହିତ କଂଗ୍ରେସ ଭବନକୁ ଯାଇ କଂଗ୍ରେସ ଯୁକ୍ତ ଅଧିବେଶନରେ ତାଙ୍କର ଅଭିଭାଷଣ ଶୁଣିବାକୁ ହେବ । ମୁଁ ସେହିଦିନହିଁ ଫେରିଆସେ । ସେଦିନ ପ୍ରେସିଡେଣ୍ଟ ଉଇଲସନ୍ ଆମଦେଶର ଯୁଦ୍ଧକଥା କଂଗ୍ରେସରେ ସର୍ବପ୍ରଥମ ଘୋଷଣା କରନ୍ତି । ଏହି ଦ୍ୱିତୀୟଥର ପାଇଁ ମୁଁ ପୁନର୍ବାର ଶୁଣିବାକୁ ପାଇଲି ଜଣେ ପ୍ରେସିଡେଣ୍ଟ କଂଗ୍ରେସକୁ ଜଣାଉଛନ୍ତି ଯେ ଜାତିକୁ ପୁନର୍ବାର ଯୁଦ୍ଧରେ ଲିପ୍ତ ହେବାକୁ ପଡ଼ିଲା । ମୁଁ ଖୁବ୍ ଦୁଃଖିତ ହୁଏ । ମୋସ୍ୱାମୀ ଓ ଭାଇଙ୍କ ପାଇଁ ପ୍ରଥମ ବିଶ୍ୱ ମହାଯୁଦ୍ଧର ପ୍ରାରମ୍ଭରେ କେତେଯେ ଭାବନା ହୋଇଥିଲି, ସେ କଥା ଗୋଟି ଗୋଟି ହୋଇ ମନେ ପଡିଲା । ଏବେ ମୋ ପୁଅମାନେ ସୈନ୍ୟ ବାହିନୀରେ ଯୋଗ ଦେବାପାଇଁ ପୂର୍ଣ୍ଣ ଉପଯୁକ୍ତ ।

ପୌନେ ପାଞ୍ଚଟାରେ ଘରକୁ ଫେରିଆସେ । ୭ଟା ୧୦ମିନଟରେ ମୁଁ ଓ ମିସ୍ ଟମ୍ପସନ୍ ଓ୍ୟାଶିଂଟନ ବିମାନ ଘାଟିରେ ଯାଇଁ ହାଜର ହେଉ । ଆମେ ସବୁ ମେୟରଲା ଗାର୍ଡ଼ିଆଙ୍କ ସହିତ ପଶ୍ଚିମ ଉପକୂଳକୁ ଯିବାପାଇଁ ସେତେବେଳକୁ

ପ୍ରସ୍ତୁତ । ମୁଁ ଯେତେବେଳେ ଘରୁ ବାହାରୁଥିଲି, ସେତେବେଳେ ଏଲିୟଟ୍ ଅଦ୍ଭୁତ ଥରେ ସାକ୍ଷାତ୍ ହୁଏ । ସେ ହ୍ୱାଇଟ୍ ହାଉସରେ ଗୋଟିଏ ଗୀତ ଗାଇବା ପାଇଁ ଆସିଥିଲି । ସେ ସେତେବେଳକୁ ଉଡ଼ା ଜାହାଜ ପରିଚାଳନା ଶିଖୁଥାଏ । ଉପାଧି ପାଇବା ଆଗରୁ ଶେଷଥର ପାଇଁ ତାଙ୍କୁ ବୁଲି ହେଉଥିଲା । ଯୁଦ୍ଧ ପାଇଁ ଶୀଘ୍ର ଶିକ୍ଷାର ପରିସମାପ୍ତି କରିବାକୁ ପଡ଼ିଲା । ସେମାନେ ନିର୍ଦ୍ଦିଷ୍ଟ ସମୟର ଦୁଇ ସପ୍ତାହ ଆଗରୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆସନ୍ତି । ପରେ ଏଲିୟଟ୍‌କୁ ପଶ୍ଚିମ ଉପକୂଳକୁ ଟହଲ ଦେବାପାଇଁ ପଠାଯାଏ ।

ଏଥର ଶଙ୍କରଙ୍କୁ ବାହାରିଯିବା ଆଗରୁ ମୁଁ ମିସେସ୍ ନେସ୍‌ବିଟ୍‌ଙ୍କୁ ହ୍ୱାଇଟ ହାଉସ ପାଇଁ ବ୍ଲାକ ଆଉଟର ଉପଯୁକ୍ତ ପର୍ଦ୍ଦା ଫର୍ମାସୀ ଦେବାକୁ କହେ । କୋଷାଗାରର ତଳତଳିରେ ସଙ୍ଗେ ସଙ୍ଗେ ଗୋଟିଏ ବୋମା ପ୍ରତିରୋଧକାରୀ ଆଶ୍ରୟ ନିର୍ମାଣ ଆରମ୍ଭ ହୁଏ । ସମସ୍ତଙ୍କୁ ଗ୍ୟାସ ମୁଖୋସ ଦିଆହୁଏ । ବିମାନ ହାମ୍‌ଲାରଡ଼୍ରିଲର ଆରମ୍ଭ ହୁଏ । ଏ ସବୁରୁ ପରିତ୍ରାଣ ପାଇଲି ବୋଲି ମୁଁ ଖୁସିହିଁ ହେଲି । ମୋ ସ୍ୱାମୀ ମିଷ୍ଟାର ମର୍ଗାନ ଥାଉଙ୍କୁ ଏହି ସେନାବିମାନ ଆଶ୍ରୟ ସମ୍ବନ୍ଧରେ ପ୍ରାୟ ଥଟ୍ଟାକରି କହୁଥିଲେ, "ହେନ୍‌ରି, ତୁମ କୋଷାଗାରର ସମସ୍ତ ସ୍ୱର୍ଣ୍ଣ ବାଜି ରଖି ଜୁଆ ଖେଳିବାକୁ ଯଦି ନଦିଅ, ମୁଁ କେବେହେଲେ ବିମାନ ପ୍ରତିରୋଧର ଏହି ଆଶ୍ରୟକୁ ମୋଟେ ଯିବନାହିଁ ।" ସେପ୍‌ଟେମ୍ବର ମାସ ତା ୧୫ ରିଖ ଦିନ ମୁଁ ଓ୍ୱାଶିଂଟନକୁ ଫେରିଆସେ । ମୁଁ ସାତଦିନ ପାଇଁ ବାହାରିକୁ ଯାଇଥିଲି । ଇତିମଧ୍ୟରେ ବହୁତ ବୁଲିଛି ଓ ଅବିଶ୍ରାନ୍ତ କାମ ମଧ୍ୟ କରିଛି ।

ନାଇଜିରିଆର ସାମାଜିକ ଉଦ୍ଦେଶ୍ୟରୁ ଯେଉଁ ଅନୁପ୍ରେରଣା ଜାଗିଥିଲା, ତଦ୍ୱାରା ଯୁଦ୍ଧ କରିବା ଆମ୍ଭମାନଙ୍କ ଦ୍ୱାରା ଯେ ସମ୍ଭବପର ହୋଇଛି, ଏକଥା ନଭାବି ରହି ପାରୁନାହିଁ । ମୋର ଏହି ବିଶ୍ୱାସ ହେଲା ଯେ, ଆମେମାନେ ଯୁଦ୍ଧରେ ସେହିସବୁ ଆଦର୍ଶ ପାଇଁ ଲଢ଼ିଛୁ । ଏହି ଅନୁଭୂତିକୁ ଜନସାଧାରଣଙ୍କ ମଧ୍ୟରେ ଦେବାଟା ହେଲା ଖୁବ ବଡ଼କଥା । ଏହା ସେତେବେଳକୁ ସ୍ପଷ୍ଟ ହୋଇ ଉଠିଥିଲା ଯେ ହିଟଲର ଯେବେ ପୃଥିବୀକୁ ଶାସନ କରେ, ସେଠାରେ

ସ୍ୱାଧୀନତା ଓ ଗଣତନ୍ତ୍ର ଏକାବେଳେ ଲୋପ ପାଇଯିବ । ଯୁଦ୍ଧ ଚଳାଇବା ଓ ଯୁଦ୍ଧର ପରବର୍ତ୍ତୀ ସମୟରେ ସଂଖ୍ୟା ଲଘୁମାନଙ୍କ ପାଇଁ ଯୁଦ୍ଧ ଚଳାଇବାକୁ ହେବ, ଏହାହିଁ ଥିଲ ଖୁବ ଜରୁରୀ ବିଷୟ । ଯୁଦ୍ଧ କ୍ଷେତ୍ରରେ କେବଳ ଚିକିତ୍ସା ସମସ୍ୟା ସମ୍ବନ୍ଧୀୟ କାମକଲେ ଚଳିବ ନାହିଁ । ସମଗ୍ର ଅଞ୍ଚଳରେ ଶିଶୁ ଓ ତରୁଣ ତରୁଣୀମାନଙ୍କର ଚିକିତ୍ସା କରିବାକୁ ପଡ଼ିବ । ମନେହେଲା, ଯୁଦ୍ଧପରେ ଗୋଟିଏ ବିରାଟ ସ୍ୱାସ୍ଥ୍ୟରକ୍ଷାର କର୍ମସୂଚୀ ଗଢ଼ିବାକୁ ପଡ଼ିବ ।

ପାର୍ଲ ହାରବାର ଆକ୍ରମଣ ପରେ ହ୍ୱାଇଟ ହାଉସର ସମଗ୍ର କର୍ମ ତତ୍ପରତା ଯୁଦ୍ଧର ପ୍ରସ୍ତୁତିକୁ କେନ୍ଦ୍ରକରି ଦେଖାଦେଲା । ଆଗଠୁ ସେ ତତ୍ପରତା ଖୁବ ବେଶୀ । ଫ୍ରାଂକଲିନ ଅହରହ ଯୁଦ୍ଧ ବିଭାଗର ଲୋକମାନଙ୍କ ସହିତ ଦେଖା କରିବାକୁ ଲାଗନ୍ତି । ମିସେସ୍ ଆନା, ବେସନ୍ ବର୍ଗଙ୍କଭଳି ଲୋକଙ୍କ ସହିତ ଘନ ଘନ ଦେଖା କରିବାକୁ ଲାଗିଲେ । ଶ୍ରମିକମାନଙ୍କ ସହିତ ଯୋଗାଯୋଗର ପ୍ରଧାନ ସୂତ୍ରଥିଲେ ଏହି ଭଦ୍ରଲୋକ । ଆମ୍ଭମାନଙ୍କର ଯୁଦ୍ଧ ପ୍ରସ୍ତୁତି କାମରେ ସାମରିକ ପ୍ରସ୍ତୁତି ପରେ ଶ୍ରମିକ ପ୍ରସ୍ତୁତିକୁ ସ୍ଥାନ ଦିଆ ହେଉଥିଲା ।

ଯେତେବେଳେ ଶୁଣିବାକୁ ପାଇଲି ଡିସେମ୍ବର ମାସ ତା ୨୨ ରିଖରେ ମିଷ୍ଟାର ଚର୍ଚ୍ଚିଲ ଆସୁଛନ୍ତି, ସମସ୍ତେ ମିଳିମିଶି ଯୋଗାଡ଼ଯନ୍ତ କରୁଁ । ତା୨୨-ରିଖ ଡିସେମ୍ବର ମାସ, ସେହି ସ୍ମରଣୀୟ ଦିବସରେ ମୋ ସ୍ୱାମୀ ରୁଷ ଓ ଚୀନାର ରାଷ୍ଟ୍ରଦୂତ ଓ ଓଲନ୍ଦାଜ ମନ୍ତ୍ରୀଙ୍କ ସହିତ ସାକ୍ଷାତ୍ କରନ୍ତି । ଏତଦ୍-ବ୍ୟତୀତ ଆହୁରି ବହୁ ଦେଖା ସାକ୍ଷାତ୍‌ର ବ୍ୟବସ୍ଥା ମଧ୍ୟ ଥିଲା । ସନ୍ଧ୍ୟା ୬ଟା ବାଜିବାର କିଛି ଆଗରୁ ସେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀଙ୍କ ସହିତ ଦେଖା କରିବାକୁ ଯାଆନ୍ତି । ସାଢ଼େ ଛଅଟାରେ ସେମାନେ ସମସ୍ତେ ହ୍ୱାଇଟ୍ ହାଉସକୁ ଫେରି ଆସନ୍ତି ।

ମୁଁ ସେହିଦିନ ସିଧା ଗାଡ଼ିରେ ନ୍ୟୁଇୟର୍କ ସହରରୁ ଆସି ଭୋରରେ ଓ୍ୟାଶିଂଟନରେ ପହଞ୍ଚେ । ଦିନଓଳିର ବେଶୀ ସମୟ କାଟିଯାଏ ସିଭିଲୟାନ ଡିଫେନ୍‌ସ ଅଫିସରେ । ଅଫିସର ଏତେ କାମ ଭିଡ଼ ମଧ୍ୟରେ ମୁଁ ମୁକ୍ତିଫୌଜ

ଓ କ୍ୟାଥଲିକ ସାହାଯ୍ୟ ଭଣ୍ଡାରକୁ ବଡ଼ଦିନ ଉତ୍ସବରେ ଯାଏ । ଏଲିର ଖ୍ରୀଷ୍ଟମାସ ଟ୍ରୀ ଉତ୍ସବକୁ ମଧ୍ୟ ଯିବାକୁ ପଡ଼େ ।

ଏବେ ମୋର ସେ ଦିନର କଥା ମନେ ପଡ଼ୁଛି । ସେଦିନ ସନ୍ଧ୍ୟାରେ ଯେତେବେଳେ ବେଶୀ ହେଉଥିଲା, ଅତିଥିମାନଙ୍କ ସହିତ ଟେବୁଲରେ ବସି ହେତେ କଥା କହିବାକୁ ଚେଷ୍ଟା କରୁଛି । ହେଲେ ମନରେ ଆଖି ତାଙ୍କି ପକାଉଥାଏ ।

ଶାଶୁଙ୍କ ବ୍ୟତୀତ ଏହି ପ୍ରଥମ ଥର ବଡ଼ଦିନ ଅତିବାହିତ କରିବାକୁ ହୁଏ । ସେଇଥିପାଇଁ ସ୍ୱାମୀଙ୍କଲାଗି ମୋର ଭୟ ହେଉଥାଏ । ହେଲେ ସହମ୍ରା ଏବେ ଅତିଥିଙ୍କ ଆଗମନରେ ଓ କାର୍ଯ୍ୟର ମାତ୍ରା ବୃଦ୍ଧି ପାଇଥିବାରୁ, ମୋର ମନର ଦୁଃଖକଥା ଭାବିବା ପାଇଁ ସେ ସମୟ ପାଇଲେ ନାହିଁ ।

ବଡ଼ଦିନର ଆଗଦିନ ହେଁଲଓ୍ୱେଲ ଦରିଦ୍ର ବାଳକ ବାଳିକାଙ୍କ ଉତ୍ସବକୁ ଯେପରି ପ୍ରତିଥର ଯାଉଥିଲି ସେପରି ଗଲି । ତାପରେ କେଇଘଣ୍ଟା ପରେ ଓ, ସି, ଡି, ତାପରେ ଆମେରିକା ସ୍ୱେଚ୍ଛାସେବକ ସଂଘକୁ, ପରେ ଅପରାହ୍ଣ ୪ଟା ସମୟରେ ସ୍ୱାମୀ ଓ ମୁଁ ପୂର୍ବପଟ ହଲ୍‌ରେ ଘରର ଲୋକ ଓ ସେମାନଙ୍କ ପରିବାରକୁ ଅଭ୍ୟର୍ଥନା କରୁ । ନରଓ୍ୱେର ଯୁବରାଜ, ଯୁବରାଣୀ, ସେମାନଙ୍କର ପିଲାକବିଲା, ସେମାନଙ୍କର ଘରର ମିଷ୍ଟାର ଓ ମିସେସ୍ ଅସ୍ୱିଟାର୍ଡ ଓ ମିଷ୍ଟାର ଓ୍ୱେଟେଲଫ୍ ଆମର ଅତିଥି ହୁଅନ୍ତି । ଘରର ଉତ୍ସବ ସମାପ୍ତ ହୁଅନ୍ତେ ଆମେସବୁ ହ୍ୱାଇଟ ହାଉସର ଦକ୍ଷିଣ ପ୍ରାଙ୍ଗଣରେ ପୌର ପ୍ରତିଷ୍ଠାନର ବଡ଼ଦିନ ଗଛର ଆଲୁଅ ଜଳାଇବା ଉତ୍ସବ ଦେଖିବାକୁ ଯାଉଁ । ଫ୍ରାଂକଲିନ ଡାହାଣପଟ ବାରଣ୍ଡାରୁ ବକ୍ତୃତା ଦିଅନ୍ତି । ଯଥାରୀତି ପ୍ରାର୍ଥନା ଓ ବଡ଼ଦିନର ଗାଥା ଗୀତହୁଏ, ହେଲେ ମନରେ ସେତେବେଳକୁ ଆଦୌ ଆନନ୍ଦ ନଥାଏ । ଏଡ଼େ ପ୍ରଚଣ୍ଡ ଥଣ୍ଡା ଲାଗୁଥିଲା ଯେ ହ୍ୱାଇଟ ହାଉସକୁ ଫେରି କାପେ ଚା ପାନକରି ପରମ ପରିତୃପ୍ତି ଲାଭ କରେ ।

ନୈଶ ଭୋଜନକୁ ଗୋଷ୍ଠୀର କାରୁକ୍ ଆସନ୍ତି । ଏଥିଲେ ମିଷ୍ଟାର ଗ୍ରଚ୍ଚିଲଙ୍କର ପ୍ରବଚନ ବନ୍ଦ । ନୈଶ ଭୋଜନ ପରେ ଭଦ୍ରଲୋକ ଦ୍ୱୟ

ପୁନର୍ବାର ଯାଇ କାମରେ ବସନ୍ତି । ସେତେବେଳକୁ ମୋର ମୋଜାଗୁଡ଼ିକୁ ଉପହାର ଦ୍ୱାରା ଭର୍ତ୍ତି କରିବା କାମ ବାକି ପଡ଼ିଥାଏ । ହେଲେ ମୋଜା ମାତ୍ର କେତୋଟି । ଅମ ନାତି ନାତୁଣୀ ସବୁ ସେତେବେଳକୁ ଅମ ପାଖରେ ନଥାନ୍ତି । ମିସ ଟମାସ ଓ ମୁଁ ଏଥର ଆଗଭଳି ସେଣ୍ଟ ଟମାସ ଗୀର୍ଜାକୁ ମଧ୍ୟ ରାତିରେ ଉପାସନାକୁ ଯୋଗ ଦେବାକୁ ଯାଉଁ, ଏହି ଦଳର ସରକାରୀ ଅତିଥିଗଣ ହ୍ୟାରି ହପ୍‌ସକିନ୍ ଓଜାୟନା ଓ ମିସେସ ଜ, ଆର, ରୁଜଭେଲଟ୍ ଓ ହ୍ୟାରି ହୁକାର ଥିଲେ । ଦୁଇ ପ୍ରହର ଲଞ୍ଚ ସମୟରେ ଆମେ ୧୯ଜଣ ଥିଲୁ । ଅପରାହ୍ନ ସମୟରେ ସାମରିକ କର୍ମଚାରୀଗଣ ସେମାନଙ୍କ ଅଧ୍ୟକ୍ଷଙ୍କ ସହିତ ସାକ୍ଷାତ୍ କରନ୍ତି । ଆମ୍ଭମାନଙ୍କ ବଡ଼ଦିନ ଉତ୍ସବ ଉପଲକ୍ଷରେ ଆଲୋକ ପ୍ରଜ୍ୱଳିତ ହୁଏ ଦିବା ୪ ଘଟିକାରେ । ନରଓ୍ୱେର ରାଜପରିବାର ଆମ୍ଭମାନଙ୍କ ସହିତ ଯୋଗ ଦିଅନ୍ତି । ପିଲାପିଲିଙ୍କ ସଂଖ୍ୟା ମଧ୍ୟ ସେମାନେ ବଢ଼ାଇ ଦିଅନ୍ତି । ସେଦିନ ବଡ଼ଦିନ ଉପଲକ୍ଷରେ ମଧ୍ୟାହ୍ନ ଭୋଜନ ଭଳି ଏତେବଡ଼ ଭୋଜି ଅମଘରେ ଆଉ କେବେହେଲେ ହୋଇନାହିଁ । ୬୦ଜଣ ଲୋକ ଟେବୁଲରେ ଖାଇ ବସନ୍ତି । ମଧ୍ୟାହ୍ନ ଭୋଜନ ପରେ ଖଣ୍ଡିଏ ଚିତ୍ର ପ୍ରଦର୍ଶିତ ହୁଏ । ଗାୟକଦଳ ଗୀତ ଗାଇବାକୁ ଆସିଥିଲେ । ସେମାନେ ବଡ଼ଦିନର ଗାଥା ଗାଆନ୍ତି । ହେଲେ ପୁରୁଷଗଣ ପୁନର୍ବାର କାମରେ ବସି ଯାଆନ୍ତି । ରାତି ଗୋଟାକ ଯାଏ କାମଲାଗେ ।

୧୯୪୨ ମସିହାରେ ଆମ୍ଭମାନଙ୍କ ଅତିଥି ମଧ୍ୟରେ ଥିଲେ ପ୍ରଧାନ ମନ୍ତ୍ରୀ ମ୍ୟାକେନ୍‌ଜିକିଂ, ଫିଲିପାଇନର ପ୍ରେସିଡେଣ୍ଟ ଓ ମାଦାମ କୋଏଜନ୍ । ମେ ମାସରେ ଆସନ୍ତି ପରରାଷ୍ଟ୍ର ସଚିବ ମଲଟୋଭ । ତାଙ୍କ ସହିତ ତାଙ୍କର ଦୋଭାଷୀ ମିଷ୍ଟର ପାଭ୍‌ଲଭ୍ ମଧ୍ୟ ଆସିଥିଲେ । ସେମାନେ ଯେତେବେଳେ ଆସିଥିଲେ ମୁଁ ସେତେବେଳକୁ ଘରେ ନଥିଲି । ସେମାନଙ୍କୁ ଭୋଜି ଦିଆହୁଏ । ଭୋଜି ସମୟରେ କେବଳମାତ୍ର ପୁରୁଷଗଣ ଉପସ୍ଥିତ ଥିଲେ । ପରଦିନ ସକାଳେ ମିଷ୍ଟର ମଲଟୋଭ ମୋ ବସିବା ଘରକୁ ମିଷ୍ଟର ପାଭ୍‌ଲୋଭଙ୍କୁ ସଙ୍ଗରେ ଆଣି ଉପସ୍ଥିତ ହୁଅନ୍ତି । ମୋ ସାଙ୍ଗରେ ସେମାନେ ଆଲାପ

କରିବାକୁ ଆସନ୍ତି । ଆମ ଦେଶ ଓ ସେମାନଙ୍କ ଦେଶର ସମାଜ ସଂସ୍କାରର ନାନାକଥା କହିଲେ । ତାପରେ ଜଣାଇଲେ ଯେ ସେ ଆଶା କରନ୍ତି ମୁଁ ଇଉ, ଏସ, ଏସ, ଆର, କୁ ଖୁବ ଶୀଘ୍ର ପରିଭ୍ରମଣ କରିବାକୁ ଯିବି । ଏହା ମଧ୍ୟରେ ଗୋଟିଏ କଥାଶୁଣି ମୋତେ ଭାରି ଭଲ ଲାଗୁଥିଲା । ହ୍ୱାଇଟ ହାଉସର ଜନୈକ ପରିଦର୍ଶକ ମଲଟୋଭଙ୍କ ବ୍ୟାଗ ଖୋଲି ଅବାକ ହୋଇ-ଯାଏ । ତା ଭିତରୁ ସେ ଖଣ୍ଡେ ବଡ଼ କଳା ରୁଟି ଗୋଟିଏ ସସେଜର ରୋଲ ଓ ପିସ୍ତଲ ପାଏ । ଗୋଏନ୍ଦା ବିଭାଗର କର୍ମଚାରୀଗଣ ପିସ୍ତଲ ସଙ୍ଗରେ ଥିବା ଅତିଥିମାନଙ୍କୁ ପସନ୍ଦ କରନ୍ତି ନାହିଁ । ହେଲେ, ଏ କ୍ଷେତ୍ରରେ ସେମାନେ କିଛି କହି ପାରିଲେ ନାହିଁ । ମିଷ୍ଟାର ମଲଟୋଭ ଭାବିଥିଲେ, ବୋଧହୁଏ ଆତ୍ମରକ୍ଷା କରିବାକୁ ପଡ଼ିପାରେ । ପୁଣି ଭୋକ ବି ହୋଇପାରେ ।

ଜୁନ ୧୦ ତାରିଖରେ ଗ୍ରୀସ ଦେଶର ରାଜା ଆମ ସାଙ୍ଗରେ ଥିଲେ । ୧୪ ତାରିଖ ଦିନ ହ୍ୱାଇଟ ହାଉସର ଷ୍ଟେଟ ଡାଇନିଂ ରୁମରେ ପତାକା ଉତ୍ତୋଳନ ଉତ୍ସବ ମହା ସମାରୋହରେ ପାଳିତ ହୁଏ । ସେଠାରେ ସେକ୍ରେ-ଟାରୀ ଅଫ୍ ଷ୍ଟେଟ ଓ ୨୭ଟି ଦେଶର କୂଟନୈତିକ ପ୍ରତିନିଧିଗଣ ଉପସ୍ଥିତ ଥିଲେ ।

ସେଥର ବସନ୍ତ କାଳରେ ନିଉୟର୍କରେ ଆମ୍ଭମାନଙ୍କର ଓ ମିସେସ୍ ଜେମସ ରୁଜଭେଲଟଙ୍କର ଘର ଖୋଲିବା ବ୍ୟାପାରରେ ମୋତେ ବହୁ ସମୟ କଟାଇବାକୁ ହୋଇଥିଲା । ୧୯୦୮ ମସିହାରୁ ଆମେସବୁ ସେହିଘରେ ଥିଲୁ । ଏତେ ଦିନର ସଞ୍ଚିତ ଦ୍ରବ୍ୟ କଥା ଭାବନ୍ତୁ ତ । ମୋ ଶାଶୁ କୌଣସି ଜିନିଷକୁ ଫୋପାଡ଼ି ଦିଅନ୍ତି ନାହିଁ । ସେଇଥିଯୋଗୁଁ ଘର ଖୋଲିବାଟା ଥିଲା ଗୋଟାଏ ବିରାଟ ବ୍ୟାପାର ।

ମୋ ସ୍ୱାମୀ ଏହି ଦୁଇଟି ଘର ମଧ୍ୟରୁ କୌଣସିଟିରେ ହେଲେ ୧୯୩୨ ମସିହା ପରେ ରହି ନାହାନ୍ତି । ତଥାପି ସେ କଣ ଗୃହାନ୍ତି, କେଉଁଠାରେ ମିଳିବ, ସେ ଠିକ ଠିକ କହିଦେଇ ପାରୁଥିଲେ । ସେଥର ବସନ୍ତ କାଳରେ ସେ ଘଣ୍ଟା ଦୁଇ ପାଇଁ ଉକ୍ତ ଘରକୁ ଆସନ୍ତି । ଯେଉଁସବୁ ଜିନିଷ ସବୁ

ହୋଇଥିଲା, ସେ ସବୁକୁ ଲକ୍ଷ୍ୟ ବି କରିଥିଲେ । ସେ ସହସା ପଚାରିଲେ, ତାଙ୍କ ମା'ଙ୍କ ଲାଇବ୍ରେରି ଘରେଥିବା ଯେଉଁ ଛବି ଖଣ୍ଡିକୁ ମୋ ଛୁଆପୁଅ ଗ୍ରେଟ ଫ୍ରାଙ୍କ୍‌ଲିନଙ୍କୁ ଦେଇଥିଲି ତାହା କ'ଣହେଲା ବୋଲି ଅନୁସନ୍ଧାନ କରନ୍ତୁ ।

ମିଷ୍ଟାର ଚର୍ଚ୍ଚିଲ ପୁନର୍ବାର ୨୯ ତାରିଖରୁ ୨୫ ତାରିଖ ଜୁନ ଯାଏ ଆମଘରେ ରହନ୍ତି । ପ୍ରତ୍ୟେକଥର ମିଷ୍ଟାର ଚର୍ଚ୍ଚିଲ ଓ ମୋ ସ୍ୱାମୀଙ୍କ ସହିତ ବନ୍ଧୁତ୍ୱ ଓ ସ୍ନେହ ବୃଦ୍ଧି ପାଉଥିଲା । ସରକାରୀ କଥାବାର୍ତ୍ତା ଆଦାନ ପ୍ରଦାନ ଠାରୁ ସେ ଥିଲା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଥିଲା ଯେ, ଯାହା ହେଉନା କାହିଁକି, ଗ୍ରେଟ ବ୍ରିଟେନ ଓ ଯୁକ୍ତରାଷ୍ଟ୍ର ପରସ୍ପର ମଧ୍ୟରେ ସହଯୋଗୀତା ସ୍ଥାପନ କରିବାକୁ ପଡ଼ିବ । ଯୁଦ୍ଧ ପ୍ରଚେଷ୍ଟା ଭଲକରି କରାଯିବ, ଯେବେ ମୋ ସ୍ୱାମୀ ଓ ମିଷ୍ଟାର ଚର୍ଚ୍ଚିଲଙ୍କର ବ୍ୟକ୍ତିଗତ ବନ୍ଧୁତ୍ୱ ମାଧ୍ୟମରେ ଏ ଦୁଇ ଜାତିଙ୍କର ମିଳନ ହୁଏ । ଯୁଦ୍ଧର ପ୍ରଧାନ ପ୍ରଧାନ ବିଷୟ ସମୂହ ଥିଲା । ଏତଦ୍‌ବ୍ୟତୀତ ବହୁ ବ୍ୟାପାରରେ ଏ ଦୁଇଜଣଙ୍କର ମେଳଥିଲା । ସେ ଦୁଇଜଣଯାକ ସମୁଦ୍ର ଓ ନୌ-ବିଭାଗକୁ ଭଲ ପାଉଥିଲେ । ଦୁହେଁଯାକ ଇତିହାସରେ ଯେପରି ବଡ଼ ପଣ୍ଡିତଥିଲେ, ସେପରି ସାହିତ୍ୟ ପ୍ରତି ଦୁଇଜଣଙ୍କର ଶ୍ରଦ୍ଧା ମଧ୍ୟ ଥିଲା । ମିଷ୍ଟାର ଚର୍ଚ୍ଚିଲ ଯେତେବେଳେ ଲିୟାରର ନନ୍‌ସେନ୍‌ସ ରାଇମରୁ ସଠିକ ଭାବରେ ଆବୃତ୍ତି କରନ୍ତି, ସେତେବେଳେ ମୋ ସ୍ୱାମୀଙ୍କର ଆନନ୍ଦ ହେଉଥିଲା । ଏହି ଢଗ ଗୁଡ଼ିକ ତାଙ୍କ ପାଖରେ ଖୁବ ପ୍ରିୟଥିଲା । ଦୁହେଁଯାକ ବହୁ ଜୀବନୀ ପଢ଼ି-ଥିଲେ । ମୋ ସ୍ୱାମୀଙ୍କର ଶିଳ୍ପ ପ୍ରତି ସେପରି ନିଷ୍ଠା ନଥିଲା । ହେଲେ, ଦୁହେଁଯାକ ବାହାରକୁ ଯିବାକୁ ଭଲ ପାଉଥିଲେ । ସେମାନେ ଗ୍ରାମା-ଞ୍ଚଳରେ ବା ନଗରରେ ସମାନ ଭାବରେ ଉପଭୋଗ କରୁଥିଲେ । ପରସ୍ପର କ୍ଷମତା ଉପରେ ସେମାନଙ୍କର ଶ୍ରଦ୍ଧାଥିଲା । ଏଥିରୁ ସେମାନଙ୍କର ବନ୍ଧୁତ୍ୱ ଜନ୍ମେ । ସବୁ ବ୍ୟାପାରରେ ସେମାନେ ଏକମତ ନଥିଲେ । ସ୍ୱାମୀ ମଝିରେ ମଝିରେ ଝାରନ୍ତି ହୋଇ ମନ୍ତବ୍ୟ କରୁଥିଲେ, କେତେବେଳେ ବା ବାସ୍ତବ ଦୃଷ୍ଟିଭଙ୍ଗୀରୁ ମନ୍ତବ୍ୟ କରି ହେଉଥିଲା । ଚର୍ଚ୍ଚିଲକର ଯେଉଁଦିନ

ଘଟନ ହୁଏ, ସେସବୁ କଥା ବେଶ୍ ମନେପଡ଼େ । ଖବର ଆସିଲା ବେଳକୁ ଚର୍ଚ୍ଚିଲ ଆମ ସାଙ୍ଗରେ ଥାଆନ୍ତି । ସେ ଆଘାତ ପାଇଲେ ସତ, କିନ୍ତୁ ପ୍ରତିକ୍ରିୟା ସାଙ୍ଗେ ସାଙ୍ଗେ ଦେଖାଦେଲା । ସେ କହିଲେ, "ଏବେ ଆମେ କ'ଣ କରିବୁ ।" ନୂତନ ପରିସ୍ଥିତିର ସମ୍ମୁଖୀନ ସେମାନେ ହୋଇ ପାରି ନାହାନ୍ତି । ସେ ଦୁଇଜଣଙ୍କର ଏପରି ଅବସ୍ଥା କେବେହେଲେ ହୋଇ ନାହିଁ । ଆମେ ଯେ ଶେଷରେ ଯୁଦ୍ଧରେ ଜୟଲାଭ କରି ପାରିବୁ ନାହିଁ, ଏକଥା ସେମାନଙ୍କ ଠାରୁ କେବେହେଲେ ଶୁଣିନାହିଁ । ଏହି ମନୋଭାବ ଥିଲା ସଂକ୍ରାମକ । ସେଇଥିପାଇଁ ତାଙ୍କ ସନ୍ନିକଟସ୍ଥ ମନୁଷ୍ୟଗଣ କେବେ-ହେଲେ କହିବାକୁ ସାହାସ ପାଆନ୍ତି ନାହିଁ ଯେ "ଆମେସବୁ ହାରି ଯାଉଛୁ" ମୁଁ ଏକଥା କହୁନାହିଁ ଯେ ସେମାନେ ଦୁଶ୍ଚିନ୍ତା କରି ନାହାନ୍ତି । ବିଶେଷ କରି 'ଡିଡେର' କଥା ବେଶ ମନେଅଛି । ଫ୍ରାଂକଲିନ ସେତେବେଳକୁ ଖବର କାଗଜ ପରୀକ୍ଷାରେ ଅସ୍ଥିର ହୋଇ ଉଠିଥାନ୍ତି ।

• ଅଗଷ୍ଟ ମାସରେ ନେଦରଲ୍ୟାଣ୍ଡର ରାଣୀ ଉଇଲହେଲମିନା ପ୍ରଥମରେ ଦେଖା କରିବାକୁ ଆସନ୍ତି । ମୋର ସାମ୍ବାଦିକ ବୈଠକର ମହିଳାଗଣ ତାଙ୍କ ସାଙ୍ଗରେ ଦେଖା କରିବା ପାଇଁ ଉଦ୍‌ବେଗ ହୋଇ ଉଠନ୍ତି । ସେ ବ୍ୟବସ୍ଥା କରାଯାଇ ପାରିବ କି ନା, ଏ ସମ୍ପର୍କରେ ମୋର ବେଶ ସନ୍ଦେହ ଥାଏ । ସେ ପହଞ୍ଚିବା ସଙ୍ଗେ ସଙ୍ଗେ ସାମ୍ବାଦିକ ବୈଠକରେ ଯୋଗ ଦିଅନ୍ତି । ବୈଠକରେ ନାତ୍‌ସୀ ଅଧିକୃତ ହୋଲଣ୍ଡରେ ଯକ୍ଷ୍ମାରୋଗ ବୃଦ୍ଧିକଥା କହନ୍ତି । ସେ ସାଙ୍ଗେ ସାଙ୍ଗେ ଅନୁଶୋଚନା କରିବାକୁ ଲାଗନ୍ତି । ତାଙ୍କର ଭୟ ହୁଏ, ନାତ୍‌ସୀଗଣ ଖୁବସମ୍ଭବ ତାଙ୍କ ଦେଶର ମନୁଷ୍ୟଙ୍କ ଉପରେ ଏହାର ପ୍ରତିଶୋଧ ନେବେ । ମୁଁ ମହିଳାମାନଙ୍କ ପଶ୍ଚାଦନୁସରଣ କରି ଧରାଧରି କରିବାକୁ ଲାଗିଲି, କାରଣ ହୋଲଣ୍ଡର ରାଣୀ ଯକ୍ଷ୍ମାରୋଗ ସମ୍ବନ୍ଧରେ ଯାହା କହିଛନ୍ତି, ତାହା ଯେପରି ସମ୍ବାଦପତ୍ର ବିବରଣୀରେ ନ ବାହାରେ । ବୈଠକ ପରେ ମୁଁ ତାଙ୍କ ସହିତ କଂଗ୍ରେସ ଭବନକୁ ଯାଏ । ସେଠାରେ ମୋ ସ୍ୱାମୀ ସହିତ ଦେଖାହୁଏ । ନେଦରଲାଣ୍ଡର ନୌ-ବହରର ଯେଉଁ ମାର୍କିଣ

ସାବମେଶନ ଅନୁସରଣକାରୀ ଜାହାଜ ଖଣ୍ଡିକୁ ଉପହାର ଦଆହୁଏ, ସେହି ଉତ୍ସବକୁ ଆମେସବୁ ଯାଉ । ବେତାରରେ ପ୍ରେସିଡେଣ୍ଟ ଓ ରାଣୀ ବକ୍ତୃତା ଦଅନ୍ତି । ଜାହାଜଟିକୁ ସେତେବେଳକୁ ଓଲନ୍ଦାଜ ନାବିକରଗଣ ଦଖଲ କରି ସାରଥିଲେ । ଏଥର ରାଣୀ ଜାହାଜକୁ ଉଠି ସେମାନଙ୍କୁ କିଛି କହନ୍ତି । ତାପରେ ଆମେସବୁ ଭୋଜନ କରିବାକୁ ପୋଟୋମ୍ୟାକ ଜାହାଜକୁ ଯାଉଁ । ପରେ ନଦୀ ପଥରେ ମାଉଣ୍ଟ ଭରନନ୍‌କୁ ଯାଉଁ ।

ନେଦାରଲାଣ୍ଡ ରାଣୀଙ୍କ ସହିତ ଫ୍ରାଙ୍କଲିନଙ୍କର ଏହି ଦ୍ୱିତୀୟଥର ପାଇଁ ଦେଖାହୁଏ । ପ୍ରଥମଥର ପାଇଁ ଦେଖାହୁଏ, ଯେତେବେଳେ ରାଣୀ ମାସାଚ୍ୟୁ-ସେଟ୍‌ସରେ ରାଜକୁମାରୀ ଜୁଲିଆନାଙ୍କ ନିକଟରେ, ହାଇଡ ପାର୍କରୁ ମାତ୍ର କେତେ ମାଇଲ ଦୂରରେ ଅବସ୍ଥାନ କରନ୍ତି, ଯୁବରାଣୀ ମାର୍ଥା ସେତେବେଳକୁ ଆମ ସାଙ୍ଗରେ ଥାନ୍ତି । ସେ ବି ମୋ ସ୍ୱାମୀଙ୍କ ସହିତ ଯାଇଥିଲେ । ସେ ବେଶ ମଜାରେ କହୁଥିଲେ. ଫ୍ରାଂକଲିନ ରାଣୀଙ୍କୁ କହିଥିଲେ, ତାଙ୍କ ସହିତ ଦେଖାହେବା ଆଗରୁ ସେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଥିଲେ । ସେ ଶୁଣିଥିଲେ ରାଣୀ କୁଆଡେ ମୁକୁଟ ଧାରୀ ରାଜା ରାଣୀଙ୍କ ମଧ୍ୟରେ ଖୁବ ଶ୍ରଦ୍ଧା-ପ୍ରଦ । ପ୍ରଥମଥର ସାକ୍ଷାତ କରିବା ପରେ ରାଣୀଙ୍କ ଉପରେ ତାଙ୍କର ଶ୍ରଦ୍ଧା ବଢ଼ି ଯାଉଥିଲା । ମୁଁ ଓ ସ୍ୱାମୀ ଦୁହେଁ, ତାଙ୍କୁ ଖୁବ ସ୍ନେହ କରୁଥିଲୁ ।

ଗ୍ରୀଷ୍ମ ସମୟରେ ଇଣ୍ଟାରନ୍ୟାସନାଲ ଷ୍ଟୁଡେଣ୍ଟ ସାର୍ଭିସ କନ୍‌ଫରେନ୍ସ ବସିଲା । ଓ୍ୟାଶିଂଟନରେ ଏହି ସମ୍ମିଳନୀକୁ ବହୁଲୋକ ଆସିଲେ । ସେମାନେ ସେତେବେଳକୁ ବହୁଦିନ ସେନାଦଳରେ କଟାଇଥାନ୍ତି । ଇଂରାଜ ଓ ରୁଷ ତରୁଣମାନଙ୍କ ସହିତ ପରିଚୟ ହୁଏ । ସେ ସମସ୍ତଙ୍କୁ ମୋତେ ଖୁବ ଭଲ ଲାଗିଲା । ଯୁଦ୍ଧ ସମୟରେ ଯୁକ୍ତରାଷ୍ଟ୍ରରେ ଯେତେବେଳେ ସେମାନଙ୍କୁ ରକ୍ଷା ହୁଏ, ସେତେବେଳେ ବହୁ ତରୁଣମାନଙ୍କ ସହିତ ମୋର ପୁଣି ଦେଖାହୁଏ । ଇଂଲଣ୍ଡରେ ବୁଲିଲାବେଳେ ସେମାନଙ୍କ ଭିତରୁ କେଇଜଣଙ୍କ ସାଙ୍ଗରେ ମୋର ଦେଖାହୁଏ । ଇଉ, ଏସ, ଏସ, ଆର,ର ତରୁଣମାନଙ୍କର ଆଉ କୌଣସି ଖବର ପାଇନାହିଁ । ଏମାନଙ୍କ ଭିତରୁ କେଇଟିଙ୍କ ନାମ ବେଶ ମନେ

ପଡ଼ୁଛୁ—ଲେଫ୍‌ଟେନ୍ୟାଣ୍ଟ ଲୁଡ଼୍‌ମିଲ୍ ପାଭ୍‌ଲିଙ୍କୋ, ନିକୋଲାଇ ଗ୍ର୍ୟାସଡସେଙ୍କ ଓଭ୍‌ଲାଦମିର, ପେଲନଭ୍‌ସେଭ ।

ପରବର୍ତ୍ତୀ ବାସ୍ତବ ଗୁରୁତ୍ୱପୂର୍ଣ୍ଣ ଘଟଣାଟି ହେଲା:—ମୋ ସ୍ୱାମୀ ଠିକ୍‌କରନ୍ତି ଇଂଲଣ୍ଡର ରାଣୀ ଏଲିଜାବେଥ୍‌ଙ୍କ ନିମନ୍ତ୍ରଣ ମଧ୍ୟ ମୋର ରକ୍ଷାକରିବା ଉଚିତ୍ । ସେଠାକୁ ଯାଇଁ ସେଠାକାର ସ୍ତ୍ରୀଲୋକଗଣ କିପରିଭାବରେ ଯୁଦ୍ଧ ପ୍ରଚେଷ୍ଟାରେ ସାହାଯ୍ୟ କରୁଛନ୍ତି, ତାହା ଦେଖିବାକୁ ପାଇବ । ସେଠାରେ ସୈନିକମାନଙ୍କ ସହିତ ମୋର ସାକ୍ଷାତ୍ ମଧ୍ୟ ହେବ । ଉତ୍ତର ଆଫ୍ରିକା ଅଭିଯାନରେ ଏମାନେ ଶୀଘ୍ର ଯାତ୍ରାକରିବେ ବୋଲି ସ୍ୱାମୀ ମୋତେ ପଠାଇବାପାଇଁ ବ୍ୟଗ୍ର ହୋଇ ଉଠନ୍ତି । ଏକଥା ମୁଁ ମୂଳରୁ ଜାଣିନଥିଲି ।

ମିଷ୍ଟାର ଚାର୍ଚ୍ଚିଲ୍ ଯେତେବେଳେ ହ୍ୱାଇଟ୍ ହାଉସକୁ ଆସୁଥିଲେ, ମୋ ସ୍ୱାମୀ ଗ୍ରେଟ୍‌ବ୍ରିଟେନ୍‌କୁ କେବେ ଯିବେ ସେକଥା ବରାବର କହୁଥିଲେ । ହେଲେ, ସେ କଦାପି ଯୁଦ୍ଧ ସମୟରେ ଗ୍ରେଟ୍‌ବ୍ରିଟେନ୍‌କୁ ଯିବ ଏହିକଥାହିଁ ଭାବୁଥିଲେ ।

କିନ୍ତୁ ମୁଁ ଇଂଲଣ୍ଡକୁ ଯାଇ ଯୁଦ୍ଧରେ ଇଂରାଜନାରୀଗଣ ଯେଉଁକାମ କରୁଛନ୍ତି, ତାହା ଦେଖିବା ପାଇଁ ଉତ୍ସୁକ କି ନା, ସେ ସମ୍ବନ୍ଧରେ ବହୁ ତଦନ୍ତ ସ୍ୱାମୀଙ୍କ ପାଖୁ ଆସୁଥିଲା । ସେଇଥି ଯୋଗୁଁ ରାଣୀ ଏଲିଜାବେଥ୍‌ଙ୍କ ନିମନ୍ତ୍ରଣକଥା ମନେ ହୋଇଥିଲା ।

ସ୍ୱାମୀ ଯେତେବେଳେ ମୋର ଯିବା ସମ୍ବନ୍ଧରେ ମୋ ଅଭିମତ ପଚାରନ୍ତି, ମୁଁ ତାଙ୍କୁ ଉତ୍ତର ପ୍ରସଙ୍ଗରେ କହେ, ତାଙ୍କର ଆଦେଶ ପାଇଲେ ମୁଁ ସାନନ୍ଦରେ ଯିବି । ଉତ୍ତର ଆଫ୍ରିକା ଅଭିଯାନ ଯେ ଶୀଘ୍ର ଆରମ୍ଭ ହେବ, ସେକଥା ସେ ଜାଣିଥିଲେ । ସେଇଥିଯୋଗୁଁ ବ୍ରିଟିଶ ନାରୀମାନଙ୍କର କାର୍ଯ୍ୟ ପର୍ଯ୍ୟବେକ୍ଷଣ ସଙ୍ଗେ ସଙ୍ଗେ ଆମେରିକା ସୈନ୍ୟ ମାନଙ୍କ ନିକଟରେ ତାଙ୍କର ବାଣୀ ଜଣାଇବା ପାଇଁ କହନ୍ତି । ସିଭିଲିୟାନ୍ ଡ଼ିଫେନ୍ସ ଅଫିସରେ ମୋର ସଦ୍ୟ ଯେଉଁ ଅଭିଜ୍ଞତା ଲାଭ ହୋଇଥିଲା, ସେଥିରେ କେବଳ ଏତିକି ବୁଝିଥିଲେ, ହ୍ୱାଇଟ୍ ହାଉସ୍‌ରେ ରହିବା ଠାରୁ ଦ୍ୱିତୀୟ ବିଶ୍ୱ ମହା-

ଯୁଦ୍ଧର କୌଣସି କାର୍ଯ୍ୟର ଗୋଟିଏ ମସ୍ତବଡ଼ ପ୍ରତିବନ୍ଧକ ହୋଇ ଠିଆହେବ। ଏଥର ଗ୍ରେଟ୍ ବ୍ରିଟେନ୍ ଭ୍ରମଣ ପ୍ରସ୍ତାବରେ କିଛି ଭଲକାମ କରିବାର ସୁଯୋଗ ଆସିଥିଲି ବୋଲି ମନେହୁଏ।

ମୋ ସ୍ୱାମୀ ହ୍ୟାରି ହପକିନସ୍‌ଙ୍କୁ ଜଣାନ୍ତି ମୁଁ ଯିବାପାଇଁ ପ୍ରସ୍ତୁତ ଅଛି। (ମୋମନେ ହୁଏ ହପକିନ୍‌ସ୍ ଏହି ପ୍ରସ୍ତାବ ପ୍ରଥମରେ କହିଥିଲେ)। ଏଥର ମୁଁ ଯଥାରୀତି ନିମନ୍ତ୍ରଣ ପାଏ। ଯିବାର ଆୟୋଜନ ଖୁବ୍ ଭଲ-ଭାବରେ କରିବାକୁ ଲାଗିଲି। ଗୋଟିଏ ବାଣିଜ୍ୟ ବିମାନରେ ଯିବାକଥା ସ୍ଥିର ହୁଏ। ଭଡ଼ା ଦେଇ କିପରିମାଣରେ ଜିନିଷ ପତ୍ର ସାଙ୍ଗରେ ନେଇ ପାରିବ, ତାହାର ନିର୍ଦ୍ଦେଶ ମଧ୍ୟ ପାଇଥିଲି। ଆବଶ୍ୟକୀୟ ଇଞ୍ଜେକ୍‌ସନ୍ ମଧ୍ୟ ନେବାକୁ ପଡ଼ିଲି। ପରେ ଅକ୍ଟୋବର ତା ୨୧ରେ ଲଂ ଆଇଲଣ୍ଡ ବିମାନ ବନ୍ଦରରେ ଠିକ୍ ସମୟରେ ଯାଇ ଉପସ୍ଥିତ ହୁଏ।

ବାକିଂହାମ ପ୍ରାସାଦକୁ ଯିବାକୁ ହେବ, ଏହିକଥା ଭାବି ମୁଁ ଅସ୍ଥିର ହୋଇ ପଡ଼ିଥିଲି। କିନ୍ତୁ ଶେଷରେ ନିଜକୁ ଏହାଭାବି ସାନ୍ତ୍ୱନା ଦିଏ ଯେ ଅଳ୍ପ ସମୟ ପାଇଁ ମନୁଷ୍ୟ ଯେ କୌଣସି ଅଦ୍ଭୁତ ପରିସ୍ଥିତିକୁ ସମ୍ଭାଳି ନେଇ-ପାରେ। ଠିକ୍ କଲି, ଯଦିଓ ଆନନ୍ଦ ପାଇଁ ମୋତେ ଏଠାକୁ ଅଣାହୋଇ-ନାହିଁ, ତଥାପି ପ୍ରତିମୂହୂର୍ତ୍ତିରେ ଏହି ଭ୍ରମଣର ବିଶେଷ ଆକର୍ଷଣ ସମୂହ ସମ୍ବନ୍ଧରେ ସଜାଗ ରହିବା ଲାଗି ଚେଷ୍ଟା କରିବ। କୌଣସି କୌଣସି ସ୍ଥାନରେ ପରିସ୍ଥିତି ଅପରିଚିତ ଭାବରେ ଦେଖାଦେବ, ମୋର ଅଯୋଗ୍ୟତା ସମ୍ବନ୍ଧରେ ଧରି ପକାଇ ଦେବ, ଏପରି ହୋଇପାରେ, ଯଥାଯଥ ଭାବରେ ଚଳିବ ନ ପାରେ, ଏହାସତ୍ତ୍ୱେ ମୁଁ ଯଥାଯଥ ଭାବରେ ଚାଲିବାପାଇଁ ଚେଷ୍ଟା-କରିବ। ଉଦ୍‌ବିଗ୍ନ ହେବି ନାହିଁ। ତଥାପି ଇଂଲଣ୍ଡକୁ ଯେତେବେଳେ ଆସେ, ମୁଁ ତ ହତଭମ୍ଭ ହୋଇ ପଡ଼ିଲି। କେବଳ ଭାବୁଥିଲି କାହିଁକି ମୁଁ ଏ ଭ୍ରମଣରେ ଆସିବାପାଇଁ ପ୍ରଲୁବ୍ଧ ହେଲି। ମୋତେତ "ଯାତାଲୋକ"। ବୋଲି ଭାବିବେ, କାହିଁକି ନା, ମୋ ସ୍ୱାମୀ ଯେ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ।

ଗାଡ଼ିଆସି ଷ୍ଟେସନରେ ପହଞ୍ଚେ। ସେଠାରେ ରାଜା, ରାଣୀ ଓ ଆମର

ସାମରିକ ଉଚ୍ଚପଦସ୍ଥ କର୍ମଚାରୀଗଣ ଠିଆ ହୋଇଥିଲେ । ମୁଁ ଖୁବ୍ ସମ୍ଭବ ମୋର ଅସ୍ଥିରତା ଦମନକରି ପାରିଥିଲି । କାରଣ ପରେ ଟମି (ମିସ୍ଟମ୍ସନ୍) କହିଥିଲେ ମୋର ସାମ୍ୟ ଓ ଶାନ୍ତଭାବ ଦେଖି ସେ ଆଶ୍ଚର୍ଯ୍ୟ ହୋଇଥିଲେ ।

ମାମୁଲି ସମ୍ଭାଷଣପରେ ରାଜା ଓ ରାଣୀ ମୋତେ ତାଙ୍କ ଗାଡ଼ିରେ ଉଠାଇ ନେଲେ । ସେମାନେ ମୋ ସାଙ୍ଗରେ ଖୁବ୍ ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର କରନ୍ତି । ଯୁକ୍ତରାଷ୍ଟ୍ରକୁ ସେମାନେ ଯେତେବେଳେ ଆସିଥିଲେ, ସେତେବେଳେହିଁ ସେମାନଙ୍କ ସମ୍ବନ୍ଧରେ ମୋର ଧାରଣା ହୋଇଥିଲାଯେ ଏହି ସୁନ୍ଦର ଦମ୍ପତିଙ୍କୁ ଅନେକ କଷ୍ଟ ସହିବାକୁ ପଡ଼ିବ । ଏହି ଅନୁଭୂତି ପୁନର୍ବାର ଫେରି ଆସିଥିଲା । ବର୍ତ୍ତମାନକୁ ତାହା ଦ୍ୱିଗୁଣିତ ହୋଇ ଉଠିଲା । ସେମାନେ ଏଥିମଧ୍ୟରେ ଅନେକ କଷ୍ଟ ସହିଛନ୍ତି ଓ ମୋ ପାଖରେ ସେ ସବୁର ପୁନରାବୃତ୍ତି କରିବାପାଇଁ ଉଦ୍‌ଗ୍ରୀବ । ସେମାନଙ୍କ ସହିତମିଶି ସେମାନଙ୍କୁ ଖୁବ୍ ଶ୍ରଦ୍ଧାକଲି । ପ୍ରାସାଦରେ ପହଞ୍ଚିଲାକ୍ଷଣି ସେମାନେ ମୋ ରହିବା ଘରକୁ ଦେଖାଇ ଦେଲେ ଓ ଜଣାଇଲେ ଯେ ମୁଁ ଯେଉଁଠାରେ ବସିବି ଓ ଯେଉଁଠାରେ ଅପେକ୍ଷା କରିବି, ସେ ସବୁ ସ୍ଥାନରେ ଗୋଟିଏ ଲେଖା ନିଆଁ ପୋଇବା ପାତ୍ରର ବ୍ୟବସ୍ଥା ଅଛି । ସେମାନେ ଭାବିଥିଲେ, ଏଇଥି ପାଇଁ ମୋତେ ଆଉ ଶୀତରେ କଷ୍ଟ ସହିବାକୁ ହେବନାହିଁ । ବୋମାପଡ଼ି ହୋଇଥିବା ଗର୍ତ୍ତ ସମୂହକୁ ଝରକା ଦେଇ ଦେଖାଇ ଦେଲେ । ମୋ ଘରେ ଥିବା ସାସୀଗୁଡ଼ିକ ଭଙ୍ଗା ହୋଇଥିବାର ଦେଖିଲି । ତା ବଦଳରେ କାଠ ଓ କାଚପରି ଧଳାଓ ସ୍ୱଚ୍ଛ ଜିଲଟିନ ଦିଆହୋଇଛି । ଠାଏ ଠାଏ ଖଣ୍ଡେ ଦିଖଣ୍ଡ ସାସୀ ଯେ ନାହିଁ ଏମନ୍ତ ନୁହେଁ । ଗୋଟିଏ ବୋମା ରଜାଙ୍କ ଘରେ ପଡ଼ି ସେମାନଙ୍କର ଦୁଇଜଣଙ୍କ ଘର ଉପରି ଧ୍ୱଂସ କରି ଦେଇଛି ତାହା ରାଣୀ ନିଜେ ଦେଖାଇ ଦିଅନ୍ତି । ସେମାନେ ମୋତେ ବୁଝାଇ ଦେଲେ ଯେ ଘର ଭିତରେ ଆଲୁଅ ଜାଳିବା ବେଳେ କେତେ ଗୁଡ଼ିଏ ପର୍ଦ୍ଦା ଝରକାରେ ପକାଇବାକୁ ହୁଏ । ମୋ ଦରଜା ବାହାରେ ଫାଇ ଫରମାସ ଶୁଣିବା ପାଇଁ ସବୁବେଳେ ଗୋଟିଏ ଲୋକ ଥାଏ । ସେ

ମୋତେ ଡ଼ିନାର ବେଳେ ବସିବା ଘରକୁ ନେଇଯିବ । ସେକଥା ବି ସେ ଜଣାଇ ଦେଲେ । ଏଥର ମୋତେ ନିଜ ଇଚ୍ଛାରେ ଗୋଛ ଗୋଛୁ କରିବା ପାଇଁ ନିର୍ଦ୍ଦେଶ ଦେଇ ଘରଖଣ୍ଡି ଚାଲିଯାଆନ୍ତି ।

ବାକିଂହାମ ପ୍ରାସାଦ ମୋ ପାଖରେ ଖୁବ ବିରାଟ ବୋଲି ମନେ ହେଲା । ପୋଷାକ ରଖିବା ଆଲମାରି ଗୁଡ଼ିକ ଭାରି ସୁନ୍ଦର—ଠିକ ନିଜ ଘର ଆଲମାରି ଭଳି । ଇଉରୋପ୍ଲେନରେ କେବଳ ମାତ୍ର ୫୫ ପାଉଣ୍ଡ ଜିନିଷ ନେବାର ନିୟମ ଥିବାରୁ ମୁଁ ସାମାନ୍ୟ ମାତ୍ର ପୋଷାକ ନେଇଥିଲି । ତେଣୁ ଏ ସବୁ ବଡ଼ ଆଲମାରିରେ ଏହି ଅଳ୍ପ ପୋଷାକ ଗୋଟାଏ କଣରେ ପଡ଼ିରହିଲା । ପରିଚାରିକା ସେ ସବୁକୁ ସଜାସଜି କରି ରଖିଲା ବେଳେ କ'ଣ ଭାବିଥିଲା ସେହି ଏକା ଜାଣେ ।

ପ୍ରଥମ ରାତିରେ ଡ଼ିନାରର ପ୍ରଧାନ ଅତିଥି ହେଲେ ପ୍ରଧାନ ମନ୍ତ୍ରୀ ଓ ମିସେସ୍ ଚର୍ଚ୍ଚିଲ ଓ ଜେନେରାଲ ସ୍ମାଟସ୍ ଓ ତାଙ୍କ ପୁତ୍ର କ୍ୟାପଟେନ୍ ଜେକ୍‌ବାସ୍ ସ୍ମାଟସ୍, ସାର ପାମ୍ୱାର୍ଡସଲେ, ଲର୍ଡ ଓ ଲେଡ଼ୀ ମାଉଣ୍ଟ ବେଟନ, ରାଷ୍ଟ୍ରଦୂତ ଇଉନାଣ୍ଟ, କାଉଣ୍ଟେସ୍ ଟ୍ରେନସାର, ଇଲୟୃଟ ଓ ମିସ୍ ଟମସନ୍ ।

ଯେପରି ଭାବିଥିଲି, ଠିକ ସେପରି ବ୍ୟବସ୍ଥା ଗ୍ରେଟବ୍ରିଟେନରେ ହୋଇ ଥିଲା । ତାପ, ଜଳ, ଖାଦ୍ୟ ସଙ୍କୋଚନ ନୀତି ଇଂଲଣ୍ଡରେ ସାଧାରଣ ଘର ଭଳି ରାଜକୀୟ ଗୃହସ୍ଥାଳୀରେ ମଧ୍ୟ ପ୍ରତିପାଳିତ ହେଉଥିଲା । ମୋ ସ୍ନାନ ଟବରେ ଗୋଟିଏ କଳା ଦାଗ ଟଣା ହୋଇଥାଏ । ନିୟମ ଥିଲା, ଏଥିରୁ ବେଶୀ ପାଣି ମୁଁ ଖର୍ଚ୍ଚ କରି ପାରିବି ନାହିଁ । ଆମ୍ଭମାନଙ୍କୁ ଖାଦ୍ୟ ପରିବେଷଣ କରା ହେଉଥିଲା ସୁନା ଓ ରୁପା ଥାଳୀରେ ସତ, ହେଲେ ଅନ୍ୟାନ ମାନେ ଯେଉଁ ରୁଟି ଖାଉଥିଲେ, ଆମ୍ଭମାନଙ୍କ ପାଇଁ ସେହି ରୁଟିର ବ୍ୟବସ୍ଥା ହୋଇଥିଲା । ମଝିରେ ମଝିରେ ରାଜକୀୟ ସଂରକ୍ଷିତ ବନ୍ୟଜନ୍ତୁ ଶିକାର ବ୍ୟତୀତ ଟେବୁଲରେ ଅନ୍ୟ କିଛି ଦେଖାଯାଉ ନଥିଲା ଯାହା ଓ୍ୟାର କ୍ୟାଣ୍ଟିନରେ ନମିଳୁଥିଲା ।

ରାଜା ଓ ରାଣୀ ସହିତ ପ୍ରଥମଥର ପାଇଁ ମୁଁ ପ୍ରକୃତ ଧ୍ୱଂସସ୍ତୂପ ଦେଖେ— କେବଳ ଇଟା ଓ କାଠର କାଣ୍ଡି । ଆମେ ସବୁ ପ୍ରଥମରେ ସେଣ୍ଟପଲ ଗୀର୍ଜ୍ଜାକୁ ଯାଉ । ଏହାର କାରଣ ମଧ୍ୟ ଥିଲା । ରାଜା ଓ ରାଣୀ ଏହି ସମୟରେ ଯେଉଁ ସବୁ ବିଶିଷ୍ଟ ରକ୍ଷୀ ଗୀର୍ଜ୍ଜାକୁ ରକ୍ଷା କରିଥିଲେ, ସେମାନଙ୍କ ସହିତ ଦେଖା କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ଆହୁରି ମଧ୍ୟ ଚାହିଁ-ଥିଲେ, ମୁଁ ଯେପରି ଗୀର୍ଜ୍ଜା ସିଡ଼ି ଉପରେ ଠିଆହୋଇ ଦେଖେ ଆଧୁନିକ ଯୁଦ୍ଧର ପରିଣାମ । ଏହା କିପରି ଭାବରେ ବିରାଟ ନଗରୀକୁ ଧ୍ୱଂସ କରି ଦେଇପାରେ । ଆମେ ସବୁ ନଗରର ଦରିଦ୍ର ପଲ୍ଲୀ ଅଞ୍ଚଳ ଦେଇ ବହୁ ମାଇଲ ଯାଉ । ଏଠାରୁ ସମସ୍ତେ ଘୁଞ୍ଚି ପଳାଇ ଯାଇଛନ୍ତି । ରାସ୍ତାରେ ବହୁ ବୋମାଗର୍ତ୍ତ ଦେଖିବାକୁ ମିଳିଲା । ଯେଉଁ ଆଡ଼କୁ ଦେଖୁ, କେବଳ ଧ୍ୱଂସ ସ୍ତୂପ ଓ ଧ୍ୱଂସ ସ୍ତୂପ । ଆମେ ସବୁ ନଗରରେ ପ୍ରବେଶ କଲାକ୍ଷଣି ପ୍ରାଚୀନ ରୀତି ମାଧ୍ୟମରେ ଲର୍ଡ ମେୟର ରାଜାଙ୍କୁ ସହରକୁ ପ୍ରବେଶ କରିବାର ଅନୁମତି ଦିଅନ୍ତି । ଯୁଦ୍ଧ ମଧ୍ୟରେ ବି ଏହି ପ୍ରାଚୀନ ପ୍ରଥା ଅଦ୍ୟାପି ରହିଛି । ଏହି ନଗରର ଧ୍ୱଂସର ପରିମାଣ ଦେଖି ଅବାକ ହୋଇଗଲି । କିନ୍ତୁ, ଚାରିଆଡ଼େ ବୋମାର ସାକ୍ଷ୍ୟ ଥିଲେହେଁ, ଆମେ ସବୁ ଖାଣ୍ଟି ବ୍ରିଟିଶ ଆଦବ କାଇଦାରେ ଲର୍ଡ ମେୟରଙ୍କ ସହିତ ଚା ଖାଉଁ ।

ନିରାପତ୍ତା ପାଇଁ ମୋର ଗୋଟିଏ ଛଦ୍ମ ନାମର ପ୍ରୟୋଜନ ଥିଲା । କୌଣସି ରସିକ ମୋହର ସନ୍ଦେହହୁଏ, ମୋ ସ୍ୱାମୀ ଭାବିଥିଲେ, "ରେଭର" ନାମଟି ବେଶ ମନାଣସହ ହେବ । ଟମି ହେଲେ ସହକାରୀ ରେଭର । "ରେଭରସ, ରେଷ୍ଟାରସ" ନାମକ ଗୋଟିଏ ପ୍ରତିଷ୍ଠାନ ମଧ୍ୟ ଇଂଲଣ୍ଡରେ ଯୁକ୍ତରାଷ୍ଟ୍ରର ଦୂତାବାସର ଲୋକମାନେ ମିଳି ପ୍ରତିଷ୍ଠିତ କରିଥିଲେ । ମୋ ସ୍ୱାମୀ ଥିଲେ ଏହି ଦଳର ସଙ୍କୀର୍ତ୍ତନକାରୀ ।

ଲଞ୍ଚପରେ ଆମ୍ଭମାନଙ୍କ ପୁଅ ଏଲିୟଟର ଇଉନିଟ ଦେଖିବା ପାଇଁ ଯିବାକଥା ଥାଏ । ସେମାନେ ସେତେବେଳକୁ ଷ୍ଟୀପଲମେର୍ଡ୍ଡେନରେ ଥାଆନ୍ତି । ହେଲେ, ମୋ ରକ୍ଷଣାବେକ୍ଷଣ ପାଇଁ ସ୍କଟଲାଣ୍ଡ ଇୟାର୍ଡ ଯାହାକୁ ଗାର୍ଡ

ଚଳାଇବା କାମରେ ନିଯୁକ୍ତ କରାହୋଇଥିଲା, ସେ ପ୍ରକୃତ ପକ୍ଷରେ ମୋଟର ଡ୍ରାଇଭର ନୁହେଁ । ତେଣୁ ସେ ବାଟ ଭୁଲିଗଲା । ଆମେସବୁ ଶିବିର ଖୋଜି ପାଇଲୁ ନାହିଁ । ଯାହାକୁ ପଚାରିଲୁ ସେ କମିଢ ସିବିବୋଲି ରାଜି ହେଲାନାହିଁ । ଏହା କେବଳ ନିରାପତ୍ତା ପାଇଁ । ଅବଶେଷରେ ଜଣେ ଯୁକ୍ତ-ରାଷ୍ଟ୍ରର ଦୂତାବାସକୁ ଫୋନ କରିଦେଲେ:—ବୋଷର ତା' ଛୁଆକୁ ହଜାଇଛୁ, ସେ ତାର ଠିକଣା ଚାହେଁ ।

ମଝିରେ ମଝିରେ ସବୁ ଧରଣର ରେଡକ୍ରସ କ୍ଲାବ୍ ସମୂହକୁ ମୁଁ ଯାଉଥିଲି । କେତେବେଳେ କୌଣସି କୌଣସି କ୍ଲାବ୍‌କୁ ପିଓକପ୍ସିର ବା ଯୁକ୍ତରାଷ୍ଟ୍ରର ଅନ୍ୟ କୌଣସି ସ୍ଥାନର ଯେଉଁସବୁ ପିଲାପିଲି ମୋ ପାଖକୁ ଆସୁଥିଲେ, ସେମାନଙ୍କ ଭିତରୁ କାହାରି କାହାରି ସଙ୍ଗରେ ଦେଖା ହୋଇ-ଯାଏ । ଆମେ ଦୁଇଜଣ ସେତେବେଳକୁ ବିଦେଶରେ ଓ ଯୁଦ୍ଧ ସୀମାନ୍ତ ନିକଟରେ । ତେଣୁ ଆମ୍ଭମାନଙ୍କ ଭିତରେ ଯେଉଁ ଆନ୍ତରିକତା ଦେଖା ଦେଉଥିଲା ସେପରି ଆନ୍ତରିକତା ଯୁକ୍ତରାଷ୍ଟ୍ରରେ ଦେଖାହେଲେ କେତେ-ହେଲେ ସମ୍ଭବପର ହୋଇ ନଥାନ୍ତା ।

ଇଂଲଣ୍ଡରେ ଏହି ଭ୍ରମଣ ସମୟରେ ଆମେସବୁ ଯେଉଁ ପୁଅ ଝିଅଙ୍କ ସହିତ ଆଳାପ ଆଲୋଚନା କରୁଥିଲୁ, ସେମାନଙ୍କ ପାଖରୁ ସେମାନଙ୍କ ପରିବାରର ନାମ ଓ ଠିକଣା ଯୋଗାଡ଼ କରୁଥିଲି । ଯଦ୍ୱାରା ଯୁକ୍ତରାଷ୍ଟ୍ରକୁ ଫେରି ଯାଇ ସେମାନଙ୍କ ନିକଟକୁ ପତ୍ର ଲେଖିପାରେ । ମୋର ପରବର୍ତ୍ତୀ ଭ୍ରମଣ ସମୟରେ ଏହି ଅଭ୍ୟାସ ଥିଲା । ଯେତେଦିନ ଏହି ଅଭ୍ୟାସ ଥିଲା, ବହୁ ନାମ ଠିକଣା ମଧ୍ୟ ଯୋଗାଡ଼ କରିଥିଲି ।

ଆମ୍ଭମାନଙ୍କ ଦିନ ଆରମ୍ଭ ହୁଏ ସକାଳ ଆଠଟାରୁ ଓ ଶେଷ ହେଉଥିଲା ରାତି ଦିପହର ସମୟରେ । ମୁଁ କିନ୍ତୁ ଏତେ ଉତ୍ସାହ ପାଉଥିଲି ଯେ, କ୍ଳାନ୍ତ ହୋଇ ପଡ଼ୁଥିଲେ ବି ବୁଝିପାରୁ ନଥିଲି ।

ଗୋଟିଏ ଦିନ ଆଉ ଗୋଟିଏ ଦିନଭଳି ଅତିବାହିତ ହେଉଥିଲା । ଗତିଟି ଠିକ ଗୋଟିଏ ପ୍ରକାରର ହେଲେହେଁ, ଟିକିଏ ସେଥିରେ ବିଶେଷତ୍ୱ

ଯେ ନଥିଲା ଏମନ୍ତ ନୁହେଁ । ତାଏସ୍ତ ଆଲୋଚନା କଲେ ଆମ୍ଭମାନଙ୍କର ଦୈନନ୍ଦିନ କାର୍ଯ୍ୟସୂଚିର ପରିମାଣ ମିଳିବ । ନଭେମ୍ବର ୧୧ ତାରିଖ ଦିନଟି ଆଉ ସବୁଦିନର ପରିଚୟ ଦେବ । କୌତୂହଳ ବା ନୂତନତ୍ୱ ଦିଗରୁ ଦେଖିଲେ ଏହା ଗୋଟିଏ ଧରଣ ବୋଲି ଧରି ନଆହୁଏ ।

ଲଣ୍ଡନ ଡେରିରେ ସକାଳ ୮।୫ ଟାରେ ନାସ୍ତି ସାମରିକ ସଙ୍ଘର କେଇଜଣ ସଦସ୍ୟଙ୍କ ସହିତ ପ୍ରାତଃ ଭୋଜନ କରେ । ୯।ଟାରେ ନୌ-ଘାଟି ଦେଖିବାକୁ ଯାଉଁ । ଗୋଟିଏ ମରାମତି ଦୋକାନର ଜନସାଧାରଣ ମୋତେ ଦୁଇଟି ସ୍ମାରକୀ ଉପହାର ଦିଅନ୍ତି । ଗୋଟିଏ ପ୍ରେସିଡେଣ୍ଟଙ୍କ ପାଇଁ । ସେଥିରେ ଲେଖାଥିଲି "କର୍ତ୍ତାଙ୍କୁ" ଅନ୍ୟଟିରେ ଲେଖାଥିଲି "ଗ୍ରେଭରଙ୍କୁ" । ଦିବା ୧୧ ଘଟିକାରେ ଯୁଦ୍ଧ ବିରତି ଉତ୍ସବରେ ଯୋଗ ଦେବାପାଇଁ ଲଣ୍ଡନ ସ୍କୋୟାରକୁ ଯାଏ । ଆମେରିକାନ ଫୌଜ ପ୍ରଦତ୍ତ ମାଳା ସ୍ମୃତି ସ୍ତମ୍ଭରେ ନେଇ ଦିଏ । ପରେ ବହୁଲୋକ ଏହି ଅନୁଷ୍ଠାନରେ ଯୋଗ ଦିଅନ୍ତି । ଏହା ମଧ୍ୟରେ ଲେଡ଼ି ମଣ୍ଟେଗୋମାରୀ ମଧ୍ୟ ଥିଲେ । ତାଙ୍କ ସହିତ ସାକ୍ଷାତ୍ କରି ମୁଁ ନିଜକୁ ସମ୍ମାନିତ ମନେକରେ । ସେ ତାଙ୍କର ବିଖ୍ୟାତ ପୁତ୍ର (ମଣ୍ଟିଙ୍କର)ପରି ଦେଖିବାକୁ । ତାଙ୍କ ମୁଖର ପ୍ରତି ରେଖାରେ ଚରିତ୍ର ଦୃଢ଼ତା ସ୍ପଷ୍ଟତର ହୋଇ ଉଠୁଥିଲା ।

ଲର୍ଡମେୟର ତାଙ୍କ ଖାତାରେ ମୋତେ ସହି କରିବାକୁ କହନ୍ତି । ଏଥର ନୌ-ବନ୍ଦରର ହାସପାତାଳ ଦେଖିବାକୁ ଯାଏ । ଏଠାକାର ଅନୁଷ୍ଠାନ, ପ୍ରେସିଡେଣ୍ଟଙ୍କ ବ୍ୟବହାର ପାଇଁ ଆୟର୍ଲାଣ୍ଡରେ ବ୍ୟବହୃତ, ଓକ କାଠ ଓ ବେତଛଡ଼ି ମୋତେ ଉପହାର ଦିଆହୁଏ ।

ଆୟର୍ଲାଣ୍ଡର ଏହି ଅଂଶର ଅଧିବାସୀଗଣ ଇଂଲଣ୍ଡ ଲୋକଙ୍କ ଭଳି ଖୁବ ବେଶୀ ପରିମାଣରେ ସୁସଂଯତ ନୁହନ୍ତି । ଜନତାର ଭିଡ଼ ଆୟତ୍ତର ବାହାରକୁ ଚାଲିଯାଏ । ଆମ ଗାଡ଼ିର ପାଖରେ ଯେତେବେଳେ ସେମାନେ ଭିଡ଼ କରୁଥିଲେ, ପୁଲିସ ସେମାନଙ୍କୁ ଆୟତ୍ତରେ ରଖି ପାରୁ ନଥିଲେ । ଇଂଲଣ୍ଡ ହେଲେ ପୋଲିସର ଅନୁରୋଧ ଓ ବିନତି ଛଡ଼ା ମୋର କିଛି କରିବାର ନଥିଲା ।

କସେନ୍ କୁଟୀର ସମୂହରେ ଏଠାକାର ନୌ ବନ୍ଦରର ହାସପାତାଳ ଅବସ୍ଥିତ । ଉଚ୍ଚପଦସ୍ଥ କର୍ମଚାରୀ ଓ ଉତ୍କୃଷ୍ଟ ବ୍ୟାଧିଗ୍ରସ୍ତ ଲୋକଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଅଛି । ଏହି ଘର ସମୂହ ଗଞ୍ଜାର ଦୁଇ ପାଖରେ ଅବସ୍ଥିତ । କସେନ୍ ଘରେ ଯେ ଏତେ ସୁନ୍ଦର ସୁନ୍ଦର ରୋଷେଇ ଘର ହୋଇପାରେ ଏକଥା ମୁଁ ଭାବିନଥିଲି । ଖୁବ୍ ବେଶୀ ସ୍ଥାନ ନଥିଲେହେଁ ସ୍ଥାନର ସେପରି ଆବଶ୍ୟକତା ବି ନାହିଁ । ଅସ୍ତ୍ର ଚିକିତ୍ସା ଘର ସମ୍ବନ୍ଧରେ ମଧ୍ୟ ଏହା ପ୍ରଯୁଜ୍ୟ ହୋଇପାରେ ।

ଡାକ୍ତର କ୍ୟାପ୍ଟେନ ଡେଭିସ୍ ମୋତେ ସ୍ୟାଣ୍ଡିମିଶନ ମ୍ୟାକଇନଟାୟାରଙ୍କୁ କହିବାକୁ କହନ୍ତି, ସେ ଯେପରି ତାଙ୍କ କାମରେ ବାଧା ନ ଦିଅନ୍ତି । ତାଙ୍କ କାମଟି ବେଶ ମନ ମାଫିକ ହୋଇଛି । ସେ ଏ କାମରେ ଖୁବ୍ ଭଲ ଭାବରେ ଅଗ୍ରସର ହେଉଛନ୍ତି । ତାଙ୍କ ଦଳର ଲୋକବାକ ଖୁବ ଭଲ । ହେଲେ, ନୌ ବନ୍ଦରର ନାର୍ସମାନଙ୍କ ସମ୍ବନ୍ଧରେ ତାଙ୍କର ଖୁବ୍ ବେଶୀ ଆପତ୍ତି । ସେ କହିଲେ, ଏ ବନ୍ଦରରେ ସ୍ତ୍ରୀ ଲୋକଙ୍କର ସ୍ଥାନ ନାହିଁ । ଲଣ୍ଡନ ଡେସ୍କ କଥା ନକହିଲେ ଚଳେ । ଏଠାରେ ସେ ବାସସ୍ଥାନ ଖୋଜି ପାଉ ନଥିଲେ । ତାଙ୍କ କଥାବାର୍ତ୍ତାରୁ ମନେ ହୁଏ, ସେ ସ୍ତ୍ରୀ ଲୋକମାନଙ୍କୁ ପସନ୍ଦ କରନ୍ତି ନାହିଁ ।

ଲଞ୍ଚରେ ମୁଁ ଡେସ୍କର ବନ୍ଧୁଙ୍କ ପାଖରେ ବସେ । ଏଥର ଆମେ ବିମାନ ସାହାଯ୍ୟରେ ସ୍କଟଲ୍ୟାଣ୍ଡସ୍ଥ ପ୍ରେଷ୍ଟୱିକକୁ ଯାଉ । ସେଠାରେ ଯାଇଁ ୩।୪୫ ମିନିଟରେ ଅବତରଣ କରୁ । ଏ ସମୟଟି ଚା ଖାଇବା ସମୟ । ତାପରେ ଗ୍ଲାସ୍‌ଗୋ ଆଡ଼କୁ ଯାତ୍ରା କରୁ । ପଥରେ କେତେଗୁଡ଼ିଏ ମହିଳା ପ୍ରତିଷ୍ଠାନ ପରିଦର୍ଶନ କରୁ । ଗୋଟିଏ ଜାଗାରେ ସ୍ତ୍ରୀ ଲୋକଗଣ ମୋ ସ୍ୱାମୀଙ୍କ ପାଇଁ କେତେଖଣ୍ଡ ଲହୁଣୀ ବୋଲା କେକ୍ ଉପହାର ଦିଅନ୍ତି । କେତେଗୁଡ଼ିଏ ଦୁଷ୍ପ୍ରାପ୍ୟ ଜିନିଷ ସାହାଯ୍ୟରେ ସେମାନେ ଏହାକୁ ପ୍ରସ୍ତୁତ କରିଥିଲେ । ମୋ ସ୍ୱାମୀଙ୍କୁ ଯେତେବେଳେ ସେ ସବୁ ଦିଏ, ସେମାନଙ୍କର ଏହି ଉପହାର ପାଇ ଖୁବ ଅଭିଭୂତ ହୋଇ ପଡ଼ନ୍ତି ।

ଗ୍ଲାସଗୋକୁ ଆମ୍ଭେମାନେ ପ୍ରଥମରେ ଯାଉ ଆମେରିକାନ୍ ରେଡକ୍ରସ ଦେଖିବାକୁ । ବେଶ୍ ଭଲକରି ସେ ସବୁ ଦେଖୁ । ତାପରେ ବିଶ୍ରାମ ପାଇଁ ଖୁବ ସମୟ ପାଉଁ । ସମ୍ବାଦ ସ୍ତମ୍ଭର ଲେଖାଟି ଶେଷ କରିଦେଇ ଡିନାର ଖାଇବାକୁ ଯାଏ । ଏଥର କେତେଜଣ ସୈନକଙ୍କ ସହିତ କଫି ଖାଉ । ସେ ଘର ଆନନ୍ଦର ବ୍ୟାପାରହିଁ ହୋଇଥିଲା । ଏଥର ଆମେ ମାର୍ଚ୍ଚେଣ୍ଟ ନେମରନ୍ ହୋଷ୍ଟେଲର ଉଦ୍‌ବୋଧନ ଉତ୍ସବକୁ ଆସୁ । ମୁଁ ଓପରୁ ତଳଯାଏ ବୁଲି ବୁଲି ଦେଖେ । ତାପରେ ବେତାରରେ କେତେ-ଗୁଡ଼ିଏ କଥା କହେ । ବକ୍ସ୍ ଟାଉନର ଦୁଇଜଣ ନାବିକଙ୍କ ସହିତ ବେତାରରେ ଆଳାପ କରିବାର କଥାଥାଏ । କିନ୍ତୁ ଅନ୍ୟ ବକ୍ତୃତାଗୁଡ଼ି ଖୁବ ବଡ଼ ହୋଇ ଯିବାରୁ ଏହାକୁ ବାଦ ଦେବାକୁ ପଡ଼େ । ଏଥିରେ ମୋର ଖୁବ ବେଶୀ ଦୁଃଖ ହୁଏ ।

ସାଢେ ନଅଟାରେ ଆମେସବୁ ସି, ଏଣ୍ଡ ଜେ ଓୟାର କମ୍ପାନୀଙ୍କ କାରଖାନାରେ ଆସି ପହଞ୍ଚୁ । ଘଣ୍ଟାଏ ଖଣ୍ଡେ ବୁଲି ବୁଲି ଦେଖି, ଘନ ବ୍ଲାକ୍‌ଆଉଟ ଭିତର ଦେଇ ବେଲ୍‌ଟ୍ କାରଖାନା ଦେଖିବାକୁ ଯାଏ । ୧୧ଟା ସିଫ୍‌ଟରେ ସ୍ତ୍ରୀ ଲୋକଗଣ ଏଠାରେ କାମ କରୁଥିଲେ । ଗୋଟିଏ ଘରରେ ପ୍ରାୟ ୭୫୦ ମହିଳା କର୍ମୀ ଥିଲେ । କାରଖାନା ଦେଖା ଶେଷ କରି ଛୋଟ ଗୋଟିଏ ବକ୍ତୃତା ଦିଏ । ପରେ ସଭାମଞ୍ଚରେ ଉପବିଷ୍ଟ ଥିବା ସଦସ୍ୟଗଣ ସମସ୍ତଙ୍କୁ ପ୍ରଶଂସା କରିବାକୁ ଲାଗନ୍ତି । ଘରେ ଫେରି ଯେ ବିଛଣାରେ ଶୋଇ ପାରିବି ଏକଥା ମନେ ହେଉ ନଥିଲା । ବସି ରହି ୫ଟି ବକ୍ତୃତା ଶୁଣିବାକୁ ବାଧ୍ୟ ହୋଇଥିଲି । ପରେ ବାରଟା ସମୟରେ ଲର୍ଡ ଓଡ୍‌ଷ୍ଟ୍ରୀଥାରଙ୍କ ଘରେ ପହଞ୍ଚେ । ସେଠାରେ ତାଙ୍କ ପରିବାରର କେଇଜଣଙ୍କ ସହିତ ପରିଚୟ ହୁଏ । ସେମାନେ ଆମ୍ଭମାନଙ୍କୁ ଖାଇବାକୁ ମଧ୍ୟ ଦେଇଥିଲେ । ଯତ୍‌ ସାମାନ୍ୟ ଆଳାପ କରି ଶୋଇବାକୁ ଯାଏ । ଷେରୁ ଉଠି ପାରିବି ବୋଲି ଆଶାକରି ପାରୁ ନଥିଲି । ଖୁବ କ୍ଳାନ୍ତ ହୋଇ ପଡ଼ିଥିଲି । ମନେ ହେଉଥିଲା ପାଦ ଦୁଇଖଣ୍ଡି ସତେ ଯେପରି ଛିଣ୍ଡି ଯାଉଛି ।

ହେଲେ ଭୟହେବା ସତ୍ତ୍ୱେ ଖେରକୁ ଉଠି ଗୋଲନ୍ଦାଜ ସୈନ୍ୟମାନଙ୍କୁ ଦେଖିବାକୁ ଯାଏ । ସେଠାରୁ ଖଣ୍ଡିଏ ବୋଟ୍ ନେଇ କ୍ଲାଇଡ୍ ନଦୀ ଦେଇ ଗଲି । ଏହି ନଦୀଟି କୃତ୍ରିମ । ସେଇଥି ପାଇଁ ଖୁବ ଅପ୍ରଶସ୍ତ । ନଦୀର ଦୁଇକୂଳରେ ଥିବା ଜାହାଜ କାରଖାନାରେ ଖୁବ କର୍ମତତ୍ପରତା ଦେଖିବାକୁ ପାଏ । ମୁଁ ଭ୍ରମଣକୁ ଆସିଛି ବୋଲି ଶ୍ରମିକଗଣ ଜାଣିଥିଲେ । ସେଇଥି ଯୋଗୁଁ ସେମାନେ ଆମ୍ଭମାନଙ୍କ ପଛପାଖରେ ବସି ରହୁଥାନ୍ତି । ପ୍ରଚଣ୍ଡ ଶୀତରେ ମୋତେ ଡେକ୍‌ରେ ଯାଇଁ ଠିଆ ହେବାକୁ ହୁଏ । ପରେ ଥରେ ଏପାଖ ଓ ଥରେ ସେପାଖ ଫେରି ଠିଆ ହେବାକୁ ପଡ଼ିଲା । ଏପରି ଥଣ୍ଡା ଜୀବନରେ କେବେ ହେଲେ ଭୋଗ କରିନାହିଁ । ଅବଶେଷରେ ବ୍ରାଉନଙ୍କର ଜାହାଜ କାରଖାନାକୁ ଆସେ । ଏଠାରେ "କୁଇନ୍ ମେରି" ଓ "କୁଇନ୍ ଏଲିଜାବେଥ" ଜାହାଜ ଦୁଇଖଣ୍ଡି ତିଆରି ହୋଇ ଯାଇଛି । ଗୋଟିଏ ବିରାଟ ବିମାନ ବହନକାରୀ ଜାହାଜ ପ୍ରସ୍ତୁତ ହେଉଥିଲା । ତା'ଭିତରେ ଯାଇଁ ଦେଖେ । ନଦୀ ଦୁଇ କୂଳରେ ବୋମା ବର୍ଷୁଛି । କାମର ଅବସର ନାହିଁ । ବିଖ୍ୟାତ ହାସ୍ୟ ରସିକ ସାର ହ୍ୟାରି ଲଡର ମୋତେ ସଙ୍ଗୀତ ଶୁଣାନ୍ତି । ଏଥିରେ ମୋର ଖୁବ୍ ଆନନ୍ଦ ହୁଏ । ଶ୍ରମିକଗଣ ବକ୍ତୃତା ଶୁଣିବା ପାଇଁ ଘେରି ଠିଆ ହୋଇଥିଲେ । ସେମାନେ ବି ତାଙ୍କ ସାଙ୍ଗରେ ଗୀତ ଗାଆନ୍ତି ।

ଏହା ଗୋଟିଏ ଯୁଦ୍ଧକ୍ରମାନ ଜାତିର ପରିଚୟ । ସେ ସେତେବେଳକୁ ବିରାଟ ଅନିଶ୍ଚୟତା ମଧ୍ୟରେ ଦିନ କଟାଉ ଥାଏ । ଦୁଃଶ୍ଚିନ୍ତାର ସୀମା ନ ଥାଏ । ହେଲେ ମୁଁ ସେମାନଙ୍କର ବିଶ୍ୱସ୍ତତା ଓ କ୍ଷମତା ଦେଖି ଅବାକ୍ ହୋଇଛି । ସେମାନେ ମୃତ୍ୟୁ ପରେ ବି କାମ ଚଳାଇ ଥାନ୍ତି । ଜୀବନର ଦୁଃଖ ଦାରିଦ୍ର୍ୟକୁ ସ୍ୱୀକାର କରି ନେଇଛନ୍ତି । ହେଲେ ଅବାକ୍ ହେବା ଅନୁଚିତ । ମୁଁ ସେମାନଙ୍କ ସହିତ ଆଲାପ କରି ବୁଝିଥିଲି ଯେ ସେମାନେ ଆଜୀବନ ତାଙ୍କ ଦେଶପାଇଁ ବଞ୍ଚି ରହିବେ ଓ କାମ କରିଯିବେ । ସ୍କଚ୍ ଓ ଇଂରାଜ ଜନତାଙ୍କ ଭିଡ଼ ମଧ୍ୟରେ ସେମାନଙ୍କ ମୁଖ ମଧ୍ୟରେ ଏପରି ବହୁ ପ୍ରଶ୍ନର ଉତ୍ତର ପରିସ୍ଫୁଟ ହୋଇଥିବାର ଦେଖିଲି ।

ଏଥର ମୁଁ ଗୋଟିଏ କେନ୍ଦ୍ରକୁ ଯାଏ। ସେଠାରେ ବୋମା ବିଧ୍ୱସ୍ତ ଲୋକମାନଙ୍କୁ ଜାମା, ଲୁଗା, ଓ ଅନ୍ୟାନ୍ୟ ଆସବାବ ପତ୍ର ଦିଆ ହେଉଥାଏ। ଗୋଟିଏ ଅଳ୍ପ ବୟସ୍କା ସ୍ତ୍ରୀଲୋକ କୋଳରେ ଗୋଟିଏ ଛୁଆକୁ ଧରି ସେଠି ଠିଆ ହୋଇଥିଲେ। ଆଉ ଗୋଟିଏ ଶିଶୁ ତାଙ୍କର ପଣତ ଧରି ଠିଆ ହୋଇଥାଏ। ସେ ମୋତେ ହସି ହସି କହେ "ଏଥରକୁ ନେଇ ଆମେ ସବୁ ତିନିଥର ବୋମା ମାଡ଼ ଖାଇଛୁ, ସରକାର ମଧ୍ୟ କିଛି ସାହାଯ୍ୟ କରିଛନ୍ତି, ଆମେରିକାର ଅଧିବାସୀଗଣ କିଛି ଲୁଗା ଜାମା ପଠାଉଛନ୍ତି, ଆମେସବୁ କୌଣସି ରକମ ବଞ୍ଚି ରହିଛୁ। କେହି ଆଘାତ ପ୍ରାପ୍ତ ହୋଇ-ନାହୁଁ, ଏହାହିଁ ଆମର ସୌଭାଗ୍ୟ।

ଘରକୁ ଫେରିବା ଆଗରୁ ମୋ ପିଉସୀ ମର୍ତ୍ତରେ, ଟମି ଓ ମୁଁ ଦିନେ ଇଉଣ୍ଡସର ପ୍ରାସାଦକୁ ଯାଉ। ରାଣୀ ଏଲିଜାବେଥଙ୍କୁ ମୋ ଭ୍ରମଣ କଥା ଜଣାଇବା ଥିଲା ମୋର ଉଦ୍ଦେଶ୍ୟ। ତାଙ୍କ ବସିବା ଘରେ ଯେତେବେଳେ କଥା କହୁଥିଲି, ରାଜା ପିଲାପିଲିଙ୍କୁ ଧରି ସେଠାକୁ ଆସନ୍ତି। ସାରାଦିନ ଧରି ବିମାନ ବାହିନୀ ପରିଦର୍ଶନ କରୁ କରୁ ମୋତେ ଓ ରାଜାଙ୍କୁ ସର୍ଦ୍ଦି ଧରି ପକାଇଥିଲା। ସେଇଥି ପାଇଁ ଦୁଇଜଣଙ୍କୁ ପ୍ରତିଥର ନାକଆଡ଼କୁ ବିଶେଷ ନଜର ରଖିବାକୁ ପଡ଼ୁଥିଲା। ଉଇଣ୍ଡସର ପ୍ରାସାଦରୁ ଫେରୁଥାଏ, ମୋ ପିଉସୀ କହିଲେ, ଦେମ ମୃଳତାଙ୍କର ଟାକୁର ଉଠିଥାଏ "ଜାଣିଲୁ ଝିଅ, ଏପରି ଅପମାନିତ ମୁଁ ଜୀବନରେ କେବେହେଲେ ହୋଇନାହିଁ" ତୁ ଗ୍ରେଟ ଗ୍ରେଟ ଟିସୁର ରୁମାଲ ଗୁଡ଼ିକ ବ୍ୟବହାର କରୁଥାଉ, ସେ ଗୁଡ଼ିକ ପୁଣି ମୋଡ଼ାମୋଡ଼ି କରି ହାତରେ ଧରିଥାଉ, ଏଣେ ରାଜା କେତେ ସୁନ୍ଦର ଲିନେନ୍‌ର ରୁମାଲ ବ୍ୟବହାର କରୁଥିଲେ। ସେମାନେ କଅଣ ଭାବିଲେ ଭାବି ଦେଖିଛୁ ?

ଏଲିଏଟ୍ ତାଙ୍କଦଳ ସହିତ ଆଫ୍ରିକା ଯିବା ଆଗରୁ ତାକୁ ବିଦାୟ ଦିଏ। ବିଦାୟ ବେଳେ ମୋ ମନ ଦୁଃଖରେ ଭରି ଉଠିଥିଲା। ଅବଶେଷରେ ନଭେମ୍ବର ତା ୧୫ ରିଖରେ ଆମେସବୁ ପ୍ରେଷ୍ଟଉଇକୁ ଯାତ୍ରାକରୁ। ।ତ ପରଦିନ ବିମାନରେ ଉଠିଲୁ।

ବିମାନରେ ଅନ୍ୟ ଯାତ୍ରୀମାନଙ୍କ ମଧ୍ୟରେ ଥିଲେ ଦଳେ ଫେରି ବିମାନ ଚାଳକ। ସେମାନେ ଖଣ୍ଡିଏ ବୋମାରୁ ବିମାନ ପହଞ୍ଚାଇ ଦେଇ ଯୁକ୍ତରାଷ୍ଟ୍ରକୁ ଫେରୁଥିଲେ। ବିମାନରେ ଥିବା ତାପଯନ୍ତ୍ରଟି ବିଗିଡ଼ି ଯାଏ। କମ୍ବଳ ରାଶି ଆମ୍ଭମାନଙ୍କ ଉପରେ ପଡ଼ିଲେ ହେଁ, ଶୀତରେ କାତର ଯାଉଁ। ପ୍ରେସ୍‌ଟଉଇକରେ ଲଞ୍ଚପରେ ପରଦିନ ଗ୍ୟାଣ୍ଡାର୍ ଲେକ୍‌ରେ ନ ପହଞ୍ଚିବା ଯାଏ ଆମେ ସବୁ କିଛି ଖାଇବାକୁ ପାଇଲୁ ନାହିଁ। ତଳେ ଯଥେଷ୍ଟ ବରଫ ପଡୁଥିଲେ ହେଁ, ବିମାନରେ ଆମ୍ଭମାନଙ୍କୁ ବେଶ୍ ଭଲ ଲାଗେ। ଆମେ ସବୁ ଖାଇ ଟିକିଏ ତାଜା ହେଉଁ। ଇଉରୋପ୍ଲାନ୍ ପଙ୍ଖାରେ ବରଫ ଜମି ଯିବାରୁ ଯିବାକୁ କିଛି ସମୟ ଲାଗେ। ପୁନର୍ବାର ଯାତ୍ରା କରୁ। ଯାହାହେଉ, ପରଦିନ ଭୋରରେ ଓ୍ୟାଶିଂଟନସ୍ଥ ବିମାନ ବନ୍ଦରରେ ଆସି ନିରାପଦରେ ପହଞ୍ଚୁ। ମୋ ସ୍ୱାମୀ ଆମ୍ଭମାନଙ୍କ ସହିତ ଦେଖା କରନ୍ତି।

ଯୁଦ୍ଧକାଳୀନ ପ୍ରଥମ ଭ୍ରମଣର ପରିସମାପ୍ତି ଘଟିଲା। ଯେଉଁଦିନ ଘରେ ଯାଇଁ ପହଞ୍ଚେ ସେଦିନ ଇକ୍ୱାଡରର ପ୍ରେସିଡେଣ୍ଟଙ୍କ ସମ୍ବର୍ଦ୍ଧନା ଉପଲକ୍ଷରେ ଗୋଟିଏ ବିରାଟ ଭୋଜି ହୁଏ। ସେ ଉକ୍ତ ରାତିରେ ଆମମାନଙ୍କର ଅତିଥି ହୋଇଥିଲେ। ମୁଁ ଅନ୍ତତଃ ଗୋଟିଏ ସନ୍ଧ୍ୟା ନିର୍ଜ୍ଜନରେ ପରିବାର ବର୍ଗଙ୍କ ସଙ୍ଗରେ କଟାଇବାକୁ ଚାହୁଁଥିଲି। କେତେ ସପ୍ତାହ ତ ପଦାରେ କାଟିଥିଲି। ହେଲେ, ଜନସାଧାରଣଙ୍କ କାମରେ ଯେ ଅବତରଣ କରିଛନ୍ତି, ସେ ଏ ଆନନ୍ଦର କଥା ସବୁବେଳେ କଳ୍ପନା କରି ପାରନ୍ତି ନାହିଁ। ଫ୍ରାଙ୍କଲିନ କେଇ ସପ୍ତାହ ଆଗରୁ ନିର୍ଦ୍ଦିଷ୍ଟ ନିମନ୍ତ୍ରଣ ସବୁକୁ ପ୍ରତ୍ୟାଖ୍ୟାନ କରି ନ ପାରନ୍ତି, କିଛିଦିନ ପରେ ବୁଝି ପାରିଲି ପୁଣି ଯିବାର ଆୟୋଜନ ହେଉଛି ବୋଲି। ସେଥିରେ ମୋର କୌଣସି ଭୂମିକାରେ ରହିବ ନାହିଁ ଅଂଶ ଗ୍ରହଣ କରିବାକୁ। ଏ ବିଷୟରେ ଯେତେ କମ୍ ଜାଣେ, ସେତେ ଭଲ। ବଡ଼ଦିନ ଓ ନୂଆ ବର୍ଷର ଛୁଟି ପରେ ଯାତ୍ରାଦିନ ଆସେ। ୧୯୪୩ ମସିହା ଜାନୁଆରୀ ୯ ତାରିଖ ଦିନ ଫ୍ରାଙ୍କଲିନ ଫ୍ଲୋରିଡାର ମିଆମୀକୁ ଯାତ୍ରା କରନ୍ତି। ୧୨ ତାରିଖ ଦିନ ବିମାନ ସାହାଯ୍ୟରେ କ୍ୟାସାବ୍ଲାଙ୍କାକୁ ଗଲେ। ସମୁଦ୍ର

ଉପରେ ବିମାନରେ ଏହି ହେଲା ତାଙ୍କର ସୁଦୀର୍ଘ ଭ୍ରମଣ । ମୁଁ ଭାବିଥିଲି ସେ ଏଥର ବିମାନରେ ଚଢି ଖୁବ୍ ଉତ୍ସାହ ପାଇବେ । ସେ କିନ୍ତୁ ଆଗଠାରୁ ଏଥର ବିମାନ ଚଢିବାକୁ ମୋଟେ ପସନ୍ଦ କଲେ ନାହିଁ ।

ଏହା ସ୍ୱୀକାର କରିବାକୁ ହେବ ଯେ, ଯୁଦ୍ଧ ସମୟରେ ଏପରି ଭାବରେ ଭ୍ରମଣ କରିବା ଯେ ବିପଜ୍ଜନକ, ଏହା ଅସ୍ୱୀକାର କରିବାର ଉପାୟ ନାହିଁ । ଫ୍ରାଙ୍କଲିନ ସେ ଦିଗରୁ କେବେହେଲେ ଭାବି ନାହାନ୍ତି । ପ୍ରେସିଡେଣ୍ଟଙ୍କ ପକ୍ଷରେ ସବୁବେଳେ ସେ ଭୟର ସମ୍ଭାବନା ରହିଛି । ସେ ଯାହା କରନ୍ତୁନା କାହିଁକି, ବହୁଦିନ ଆଗରୁ ଯେତେବେଳେ ମେୟର କାରୁମାର୍କ ଇଡ଼ରେ-ପ୍ଲେନ୍ ଦୁର୍ଘଟଣାରେ ନିହତ ହୁଅନ୍ତି, ମୁଁ ଓ ଫ୍ରାଙ୍କଲିନ ଏହି ଆଲୋଚନା କରି ସିଦ୍ଧାନ୍ତ କରିଥିଲୁ ଯେ ଏପରି ବିପଦ ହାତରୁ ମୁକ୍ତ ପାଇବାର କୌଣସି ଉପାୟ ନାହିଁ । ଯେତେବେଳେ କୌଣସି ଲୋକ ଧୃତ ହେବାକୁ ଖାତିର କରେ ନାହିଁ, ସେପରି କ୍ଷେତ୍ରରେ ତା କବଳରୁ ନିଜକୁ ରକ୍ଷା କରାଯାଏନାହିଁ । ସୁତରାଂ ଯେତେବେଳେ ଆପଣ ସବୁବେଳେ ଭୟରେ କାଲାତିପାତ କରି ପାରିବେ ନାହିଁ, ସୁତରାଂ ବିପଦର ଯେ କୌଣସି ଭାବନାକୁ ମନରୁ ଦୂରକରି କର୍ତ୍ତବ୍ୟ କାର୍ଯ୍ୟ କରିବା ଏକମାତ୍ର ଉପାୟ । ପଦ ମର୍ଯ୍ୟାଦାରେ ଯେଉଁ ବିପଦଅଛି, ତାକୁ ଉପେକ୍ଷା କରିବା ଏକାନ୍ତ କର୍ତ୍ତବ୍ୟ । ଫ୍ରାଙ୍କଲିନ ଓ୍ୱାଶିଂଟନରୁ ଚାଲିଗଲା ପରେ, ଦିନେ ସକାଳୁ ଷ୍ଟେସନକୁ ଯାଏ । ଗୋଟିଏ ଗାଡ଼ିରେ ଜଣକର ଆସିବାର କଥା ଥିଲା । ଗାଡ଼ି ଆସିବାରେ ବିଳମ୍ବ ହୁଏ । ମୁଁ ସେଇଠୁ ଷ୍ଟେସନରେ ଥିବା ପ୍ରେସିଡେଣ୍ଟ କାମରାକୁ ଯାଏ । କାମରାଟିରେ ସେତେବେଳକୁ ସାମରିକ ଇନଫରମେସନ ବ୍ୟୁରୋ ବସିଥାଏ । ବହୁ ଅଟୋଗ୍ରାଫରେ ସ୍ୱାକ୍ଷରକରି, ଯେତେ ବେଶୀସମ୍ଭବ, ସେତେ ଲୋକଙ୍କ ସହିତ ଆଳାପକରି ଜାଣିପାରିଲି ଯେ ଗାଡ଼ି ସେଦିନ ଖୁବ୍ ବିଳମ୍ବରେ ଆସିବ । ମୁଁ ସେହି ଝରାପ ପାଗ ମଧ୍ୟରେ ପଦଯାତ୍ରାରେ ଘରକୁ ଆସିଲି । ଜଣେ ପ୍ରଥମ ଶ୍ରେଣୀର ଯୁବକକୁ ପଚାରିଲି ସେ ମୋ ସହିତ ଯାଇ ପାରିବେ କି ନା ? ପେନସେଲଭିନିୟା ଆଭିନ୍ୟୁ ଦେଇ ଯାଉଁ ଯାଉଁ ମୁଁ ତାକୁ

ପଶୁଗଲି, କେତେବେଳେ ତାର ଗାଡ଼ି ଗ୍ଭଲି ଯାଉଛି । ତାର ଅପସାରଣ ପର୍ଯ୍ୟନ୍ତ କୌଣସି କାମ ନ ଥିବା କଥା ତାଙ୍କ ଠାରୁ ଜାଣି ପାରିଲି । ମୁଁ ତାଙ୍କୁ ଘରକୁ ଲଞ୍ଚ ପାଇଁ ନିମନ୍ତ୍ରଣ କରେ । ମୁଁ ଭାବି ପାରିଲି ନାହିଁ ଯେ ପୋଷାକ ପରିହିତ କୌଣସି ଲୋକଙ୍କୁ ନିମନ୍ତ୍ରଣ କରିବା ମଧ୍ୟରେ କୌଣସି ଅସ୍ୱାଭାବିକତା ଅଛି ବୋଲି । କିନ୍ତୁ ତାଙ୍କୁ ଡେକି ଆସିଲି, ଲଞ୍ଚରେ ଅତିଥି ହେବାକୁ । ଏ କଥା ଜଣା ଗଲାରୁ ରକ୍ଷୀ ଓ ଅନ୍ୟାନ୍ୟ କର୍ମଗୃହ ମାନଙ୍କର ମୁଖମଣ୍ଡଳ ବିବ୍ରତ ହୋଇ ପଡ଼ିଲା । ସେ ଭାବ ଭଙ୍ଗୀରୁ ଏ କଥା ସ୍ପଷ୍ଟ ଜଣା ପଡୁଥିଲା ଯେ ସେମାନେ ଏହାକୁ ମୋଟେ ଅନୁମୋଦନ କରୁ ନାହାନ୍ତି । ଏହାକୁ ନ ଚିହ୍ନିବା କଥା ସେମାନେ ଜାଣିଥିଲେ । ତେଣୁ ଏଥିରେ ବିପଦର ସମ୍ଭାବନା ମଧ୍ୟ ଖୁବ୍ ବେଶୀ । ହେଲେ ମୁଁ ଏଥିରେ କୌଣସି ବିପଦ ଅଛି ବୋଲି ଭାବି ବି ପାରିଲି ନାହିଁ । ଫ୍ରାଙ୍କଲିନ ଏଠାରେ ନାହାନ୍ତି । ତେଣୁ ତାଙ୍କୁ କୌଣସି ମୂଲ୍ୟବାନ ଖବର ଦେବାର ଆବଶ୍ୟକତା ବୋଧ କଲିନାହିଁ । ମୁଁ କୌଣସି ଧ୍ୱଂସାତ୍ମକ କାର୍ଯ୍ୟର ଲକ୍ଷ୍ୟସ୍ଥଳ କଦାପି ହୋଇ ନପାରେ ।

ଫ୍ରାଙ୍କଲିନ ଫେରିଲା ବେଳକୁ, ତାଙ୍କ ଷ୍ଟକରେ ବହୁ ଗପ ଜମା ହୋଇ ଥାଏ । ସେ ଗପ କରିବାକୁ ଖୁବ୍ ଭଲ ପାଉଥିଲେ । ସେ ଜୀପରେ ଚଢି ସୈନ୍ୟ ଦଳ ପରିଦର୍ଶନ କରୁଥାନ୍ତି । ସୈନ୍ୟମାନଙ୍କ ମନରେ ବିହ୍ୱଳ୍ପ । ସେ ଖୁବ୍ ଖୁସିହିଁ ହୋଇଥିଲେ । ଯେତେବେଳେ ପଛ ଧାଡ଼ିରୁ ଖୁବ୍ ଚିତ୍କାର କରି ଜଣେ କହି ଉଠିଲେ "ପ୍ରେସିଡେଣ୍ଟ ଏ ଆଡକୁ ଗ୍ଭହାନ୍ତୁ ।" ସେନାଧ୍ୟକ୍ଷ ମୁଖ ବିକୃତ କଲେ । ତାଙ୍କର ମନେ ହେଲା ଶୃଙ୍ଖଳା ଭଙ୍ଗ କରା ହୋଇଛି ବୋଲି ।

ଆଉ ଗୋଟିଏ କଥା ଫ୍ରାଙ୍କଲିନ ବେଶୀକରି ହିଁ କହୁଥିଲେ । ସେ ହେଉଛି, ସେ ଯେଉଁସବୁ ସ୍ଥାନକୁ ଯାଉଥିଲେ, ସେଠାକାର ଲୋକଙ୍କର ଶୋଚନୀୟ ଅବସ୍ଥା । ଲାଇବେରିଆ ସମ୍ବନ୍ଧରେ ଆମ୍ଭମାନଙ୍କର ଯେଉଁ ଗୁରୁ ଦାୟିତ୍ୱ ଅଛି, ତାହା ଆମ୍ଭେ କେବେହେଲେ ପାଳନ କରିନାହୁଁ । ଏଥିରେ ସେ ମୋ

ସହିତ ଏକମତ ଥିଲେ । ମୁଁ ଖୁବ ଖୁସୀ ହୋଇଛି ଯେ ଏଡ୍‌ୱାର୍ଡ ଷ୍ଟୀଟେନିୟାସ ଫ୍ରାଙ୍କଲିନଙ୍କ ସହିତ ଲିବେରିୟା ସମ୍ପର୍କରେ ଯେଉଁ ପରିକଳ୍ପନା ବିଷୟରେ ଆଲୋଚନା କରୁଥିଲେ, ଏବେ ସେହି ସମ୍ବନ୍ଧରେ କାର୍ଯ୍ୟରେ ଅଗ୍ରସର ହୋଇଛନ୍ତି । ସେ ଗୋଟିଏ ପ୍ରତିଷ୍ଠାନ ଗଠନ କରି ଦେଶର ପ୍ରାକୃତିକ ସମ୍ପଦ ବଢ଼ାଇବାର ଆୟୋଜନ କରୁଛନ୍ତି । ସ୍ୱାମୀ କ୍ୟାସାବ୍ଲାଙ୍କାରୁ ଫେରିବା ପରଠୁ, ସେ ଯେତେବେଳେ ଏ ବିଷୟରେ ତାଙ୍କ ସହିତ କଥା-ବାର୍ତ୍ତା କରୁଥିଲେ ତାହା କେବଳ ଏକ ସ୍ୱପ୍ନ ମଧ୍ୟରେ ସୀମାବଦ୍ଧ ହୋଇ ରହିଥିଲା । ଫ୍ରାଙ୍କଲିନଙ୍କର ଏଥରକାର ଜନ୍ମଦିନ ଉତ୍ସବ ବାଦ ପଡ଼େ । କାରଣ ସେ ଜାନୁୟାରି ୩୦ ତାରିଖ ଆଗରୁ କ୍ୟାସାବ୍ଲାଙ୍କାରୁ ଘରକୁ ଫେରି ପାରିଲେ ନାହିଁ । ତାପରେ ପରରାଷ୍ଟ୍ରସମିତିର ସଦସ୍ୟ, ଭାଇସ୍ ପ୍ରେସିଡେଣ୍ଟ ଓ କଂଗ୍ରେସ ସ୍ପୀକାର, ସେନେଟ ଓ ହାଉସ ନେତାଙ୍କ ନିକଟରେ ସେ ତାଙ୍କର ଭ୍ରମଣ ବିବରଣୀ ଦିଅନ୍ତି । ତାଙ୍କ ଜୀବନ ସେତେବେଳକୁ କର୍ମ ତତ୍ପରତାରେ ପରିପୂର୍ଣ୍ଣ । ତଥାପି, ଇତିମଧ୍ୟରେ ସେ, ସପ୍ତାହ ଶେଷ ଆଡକୁ ମଝିରେ ମଝିରେ ହାଇଡ ପାର୍କରେ ଯାଇ ବସବାସ କରନ୍ତି । ଫେବୃୟାରି ପ୍ରଥମ ଆଡକୁ ମୁଁ ମେଇନର ପୋର୍ଟଲାଣ୍ଡକୁ ଯାଏ । ମାସ ଶେଷ ଆଡକୁ ବିମାନ ସାହାଯ୍ୟରେ କର୍ଣ୍ଣେଲ ଓଭେଟା ହୋବିରଙ୍କ ସାଙ୍ଗରେ ଡେସ ମଇନେସ, ଅଇଓ୍ୱାକୁ ଯାଏ । ସେମାନଙ୍କର ଶିକ୍ଷାକେନ୍ଦ୍ର ଗୁଡ଼ିକ ପରିଦର୍ଶନ କରେ । ସେଠାରେ ଥିଲାବେଳେ ମୁଁ ଅବସର ସମୟରେ କଲୋମ୍ବିୟାର ଓ ମିସୌରି କଲେଜରେ ବକ୍ତୃତା ମଧ୍ୟ ଦିଏ । ମାଦାମ୍ ଚିୟାଂ କାଇଜେକ୍‌କୁ ସମ୍ବର୍ଦ୍ଧନା କରିବା ଲାଗି ବହୁ ପୂର୍ବରୁ ହ୍ୱାଇଟ ହାଉସକୁ ଫେରିଆସେ । ସେ ଫେବୃୟାରି ୧୭ତାରିଖରେ ଆମ୍ଭମାନଙ୍କ ସହିତ ବସବାସ କରିବାକୁ ଆସନ୍ତି ।

ମାଦାମ ଚିୟାଂ ଆମ୍ଭମାନଙ୍କ ପାଖରୁ ବିଦାୟ ନେଇ ସ୍ପେଶ୍ୟାଲ ଟ୍ରେନରେ ବହୁଦିନ ଧରି ଭ୍ରମଣ କରନ୍ତି । ସେ ପଶ୍ଚିମ ଉପକୂଳକୁ ଯାଇ ଫେରି ଆସନ୍ତି । ଏହି କଷ୍ଟସାଧ୍ୟ ଭ୍ରମଣରେ ସେ ଶ୍ରାନ୍ତ ହୋଇ ପଡ଼ିଥିଲେ ।

ଫେରିଆସି ଝମିଙ୍କୁ ଖୁବ ସବୁଧନତାର ସହିତ ପ୍ରଶ୍ନ କରିବାକୁ ଲଗନ୍ତି । ଝମି ଓ ମୁଁ କିଛିଦିନ ପରେ ଏହି ପଥରେ ଭ୍ରମଣକୁ ବାହାରିପଡ଼ୁ । ସବୁ ସ୍ଥାନରେ ତାଙ୍କ କଥା ଶୁଣିବାକୁ ପାଉ । ମାଦମ ଅବାକ ହୋଇ ଯାଆନ୍ତି ଆମ୍ଭ-ମାନଙ୍କ ଏକୁଟିଆ ଭ୍ରମଣ କଥା ଶୁଣି । ତାଙ୍କ ସଙ୍ଗରେ ୪୦ ଜଣ ଲୋକ ଥାଆନ୍ତି । ଯାହା କରିବାର କଥା, ତାଙ୍କ ପକ୍ଷରେ ତାହା ଯଥେଷ୍ଟ ନଥିଲା । ଆମ ବ୍ୟାଗ ସବୁକୁ କିଏ ସଜାଗୋଜା କରେବୋଲି ଝମିଙ୍କୁ ପଚାରନ୍ତି । ଝମି କହିଲେ, ସେ ତାଙ୍କ ବ୍ୟାଗ ସଜାନ୍ତି, ମୁଁ ମୋ ବ୍ୟାଗ ସଜାଏ । ସେ ପୁନର୍ବାର ପଚାରନ୍ତି, ଟେଲିଫୋନ କିଏ ଧରୁଥିଲେ । ଝମି କହିଲେ, ଆମେସବୁ ଯେ ଯେତେବେଳେ ପାଖରେ ଥିଲୁ, ସେ ସବୁ ଧରୁ । ମୁଁ ବହୁ ସମୟରେ ଝମିର ହୋଇ ଜବାବ ଦିଏ । କିଏ ଡାକ ବା ତାର ସବୁର ବ୍ୟବସ୍ଥା କରେ ବୋଲି ପ୍ରଶ୍ନ ହେବାରୁ ଦୁହେଁଯାକ କରୁ ବୋଲି ଉତ୍ତର ମିଳିଲା । ତାପରେ ପ୍ରଶ୍ନହେଲା, ଆମ୍ଭମାନଙ୍କ ପୋଷାକ ପରିଚ୍ଛେଦର ତତ୍ତ୍ୱା-ବଧାନ କିଏ ନିଏ ? ଝମି କହିଲେ ଯଦି କୌଣସି ପୋଷାକକୁ ଇସ୍ତ୍ରୀ କରିବାର ଆବଶ୍ୟକତା ପଡ଼େ ଆମେ ହୋଟେଲର ପରିଚାରକଙ୍କୁ ଡାକି ତାହା କରିବାକୁ ଦେଉ । ଶେଷରେ ସେ ଆମର ନିରାପତ୍ତା ସମ୍ବନ୍ଧରେ କଥା ପକାନ୍ତି । ଝମି ତାହାଙ୍କୁ ନିଜ ରକ୍ଷାର ଆବଶ୍ୟକତା ନାହିଁ ବୋଲି କହନ୍ତି । ସମସ୍ତେ ଆମ ସାଙ୍ଗରେ ଆନ୍ତରିକ ବ୍ୟବହାର ଖୁବ ଭଲହିଁ କରିଥିଲେ । କିନ୍ତୁ ସହରରୁ ବହୁ ଟ୍ରେନ ଆସି ପହଞ୍ଚିଲେ ଆମ ସାଙ୍ଗରେ ଦେଖା ସାକ୍ଷାତ୍ କରିବା ପାଇଁ ଲୋକ ରଖା ହେଉଥିଲା । ଆମ୍ଭଙ୍କୁ ବିଦାୟ ଦେବା ପାଇଁ ଲୋକ ମଧ୍ୟ ମଜେସ୍ଥାନ୍ ରହୁଥିଲେ । ବେଳେ ବେଳେ ଖୁବ ଭିଡ଼ ଭିତର ଦେଇ ଯିବାକୁ ହେଲେ ସେମାନେ ଆମ ମଝିରେ ରହୁଥିଲେ । ହେଲେ, ସ୍ଥାନୀୟ କର୍ତ୍ତୃପକ୍ଷଙ୍କ ବିବେଚନା ଉପରେ ସେ ସବୁ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରୁଥିଲା ।

ମୁଁ ଯେତେମାଇଲ ବୁଲିଛି, ଯେଉଁସବୁ ସ୍ଥାନକୁ ଯାଇଛି, କେଉଁ-ଠିହେଲେ ରକ୍ଷା ବ୍ୟବସ୍ଥା ପାଇଁ ଅନୁରୋଧ କରିନାହିଁ କି ମାଗିନାହିଁ । କେଉଁ-

ହେଲେ କୌଣସି ଅପ୍ରୀତିକର ଘଟଣା ମଧ୍ୟ ଘଟିନାହିଁ । କେଉଁଠି ବା ଜନସାଧାରଣଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଦେଖା ଦେଇଛି । ସେଇଟା ହୋଇଛି କେବଳ ସେମାନଙ୍କ ସୌହାର୍ଦ୍ଦ୍ୟତା ହେତୁ । ସେମାନେ ମୋ ସ୍ୱାମୀଙ୍କୁ ଭଲ ପାଆନ୍ତି ବୋଲି ଏପରି ଘଟିଛି । ଥରେ ଆମର ଫାରର ସ୍କାର୍ଫର ପଛପଟକୁ କିଏ କାଟିନିଏ ସ୍ମାରକ ଚିହ୍ନ ହିସାବରେ । ତା ଠାରୁ ବେଶୀ କିଛି ଘଟିନାହିଁ ।

ଆମ ମାନଙ୍କ ରକ୍ଷାର ପ୍ରୟୋଜନୀୟତା ନାହିଁ ବୋଲି ମାଦାମ୍ କାଇଜାକଙ୍କ ପକ୍ଷରେ ବୁଝିବା ଖୁବ୍ ଶକ୍ତ ହୋଇ ଉଠିଥିଲା । ଚୀନର ବିଶୃଙ୍ଖଳ ଅବସ୍ଥା ଓ ଦୀର୍ଘ ସ୍ଥାୟୀ ଯୁଦ୍ଧକଥା ଭାବିଲେ ସେ କାହିଁକି ଆମ ଦେଶର ନିରାପତ୍ତା କଥା ବୁଝି ପାରିନାହାନ୍ତି, ତାହା ସହଜ ହୋଇଉଠିବ ।

ଏପ୍ରିଲ ମାସରେ ମୁଁ ଫ୍ରାଙ୍କଲିନ୍‌ଙ୍କ ସହିତ ମେକ୍ସିକୋକୁ କେଇଟି ଯୁଦ୍ଧ ସରଞ୍ଜାମ ଦେଖିବାକୁ ଓ ସେଠା ପ୍ରେସିଡେଣ୍ଟଙ୍କ ସହିତ ଦେଖା କରିବାକୁ-ଯାଏ । ଏହି ଭ୍ରମଣ ଆମ ପକ୍ଷରେ ଖୁବ୍ କୌତୁହଳୀ ହୋଇଥିଲା । ଯେ ହେତୁ ପ୍ରଥମ ଥର ପାଇଁ ମୁଁ ସେ ଦେଶକୁ ଯାଏ ।

ମେକ୍ସିକୋ ବାସୀଙ୍କର ଆତିଥେୟତା ସେମାନଙ୍କ ଭୋଜିମଧ୍ୟରେ ଆତ୍ମ-ପ୍ରକାଶ କରିଥିଲା । ଯେଉଁମାନଙ୍କ ସଂସ୍ପର୍ଶରେ ଆମେସବୁ ସେଠାକୁ ଆସି-ଥିଲୁ, ସେମାନେ ଆମ ମନଉପରେ ଗଭୀର ଛାପ ରଖିଥିଲେ । ମୁଁ ଏହି ଅନୁମତି ଘେନି ଫେରି ଆସେ ଯେ, ମେକ୍ସିକୋ ଆମର ଖୁବ୍ ନିକଟସ୍ଥ ପ୍ରତିବେଶୀ । ମୋ ସ୍ୱାମୀ ଆଗରୁ ମେକ୍ସିକୋ ବାସୀଙ୍କ ପ୍ରତି ବନ୍ଧୁଭାବାଭାବା-ପନ୍ନ ଥିଲେ । ହେଲେ, ଆମଭଳି ମନୁଷ୍ୟଙ୍କ ପକ୍ଷରେ ଏ ହେଲା ଗୋଟିଏ ନୂଆ ଅଭିଜ୍ଞତା ।

ଦେଶରେ ପ୍ରତ୍ୟେକ ପରିବାର ଭଳି ଆମେ ସବୁ ପିଲା ପିଲାଙ୍କ ପତ୍ର ଅପେକ୍ଷାରେ ଉଦ୍‌ବିଗ୍ନ ହୋଇ ରହିଥିଲୁ । ଯେଉଁମାନେ ନୌବିଭାଗରେ ଥିଲେ, ସେମାନେ ସମୟ ସମୟରେ ବନ୍ଦରକୁ ଆସୁଥିଲେ । କେଇ ମୁହୂର୍ତ୍ତି ପାଇଁ ଦେଖା ହୁଏ । ଏଲିୟଟଙ୍କ ସହିତ ଦେଖା କରିବାର ଆଶା ଖୁବ୍

କମ୍ବି ଥିଲା । ତାଙ୍କର ସେ ତା୬୩ରିଖରେ ଲେଖା ଖଣ୍ଡିଏ ଚିଠି ଏଠାରେ ଅବିକଳ ଉଦ୍ଧୃତ କଲି । କାରଣ ଅନ୍ୟ ପରିବାରବର୍ଗ ଯେଉଁସବୁ ଚିଠି ପତ୍ର ପାଉଥିଲେ, ଏ ହେଲା ତାହାର ପ୍ରତୀକ । ଅନ୍ୟାନ୍ୟ ତରୁଣ ମାନଙ୍କ ଭଳି, ସେ ଯେ ତାଙ୍କର ଗୁରୁଜନ ମାନଙ୍କଠାରୁ ବେଶୀ ଭଲ ବୁଝନ୍ତି, ସେ କଥାସେ ମନେକରୁଥିଲେ ।

ପରମାରାଧ୍ୟା ମାତୃଦେବୀ ମହୋଦୟା ଶ୍ରୀଚରଣେଷୁ,

ମୋଜା ପାଇଛି, ଖୁବ ଚମତ୍କାର, ଗୋଡ଼କୁ ଠିକ ହୋଇଛି । ଝିମିକୁ ଧନ୍ୟବାଦ ଜଣାଇବେ । ମୋ ପକ୍ଷରୁ ପ୍ରୀତି ଅଭିବାଦନ ମଧ୍ୟ ଜଣାଇବେ ।

ଜାଣେ, ପୃଥିବୀର ବିଭିନ୍ନ ଦେଶରେ ତୁମ୍ଭମାନଙ୍କର ଯେଉଁସବୁ ସନ୍ତାନ ସନ୍ତତି ଘରଆଡ଼େ ଦୂରେ ରହିଛନ୍ତି, ସେମାନଙ୍କପାଇଁ ତୁମର ଉଦ୍‌ବେଗ ରହିଥିବ । ମୁଁ ଭଲ ଖବରେ ସମସ୍ତ ଅତିବାହିତ କରୁଛି । ସେଦିନ ଗୋଟାଏ ଭଲ ରକମ ଗଣ୍ଡଗୋଳ ଘଟିଥିଲା । କୌଣସି ରକମରେ ପଳାଇ ଆସିଛି । ହେଲେ ବିମାନ ଖଣ୍ଡି ଭାଙ୍ଗି ଚୂରମାର ହୋଇ ଯାଇଛି । ଆଉ ଖଣ୍ଡିଏ ବିମାନର ଲାଞ୍ଜ ଭାଙ୍ଗି ଯାଇଛି । ଇଂଲଣ୍ଡରେ ଆସି ପହଞ୍ଚିବା ଟିମିନଟ ପରେ ଏପରି ଘଟଣା ଘଟିଲା । ଯେବେ କିଛି ଆକସ୍ମିକ ଘଟିଯାଏ, ତାହେଲେ ମନେ ରଖିବେ, ଏହାଠାରୁ ଭଲ ମୃତ୍ୟୁ କେହି ପ୍ରତ୍ୟାଶା କରନ୍ତି ନାହିଁ । ଆମେ ଜାର୍ମାନୀମାନଙ୍କୁ ହଟେଇ ଦେଇଛୁ । ଆଉ ଦେଢ଼ବର୍ଷ ମଧ୍ୟରେ କାମ ଖତମ ହୋଇଯିବ । ତାପରେ ଜାପାନକୁ ହଟାଇବାକୁ ଜମାରୁ ବର୍ଷେ ଲାଗିବ । ଆମ ବିମାନ ସେନାବାହିନୀ ଖୁବ ସୁନ୍ଦର । କେବଳ ଗୋଟିଏ ଜିନିଷ ଏମାନଙ୍କୁ ଦବେଇ ରଖିଛି । ଆମ ବାହିନୀ ସ୍ୱତନ୍ତ୍ର ନୁହେଁ । ମୁଁ ଜାଣେ ବାବା ଏହା ପସନ୍ଦ କରନ୍ତି ନାହିଁ । କିନ୍ତୁ ଏଇଟା ତାଙ୍କର ମସ୍ତବଡ଼ ଭୁଲ । ଆର, ଏ, ଏଫ, ଓ ବ୍ରିଟିଶ ବାହିନୀ ଦୁଇଟି ସ୍ୱତନ୍ତ୍ର ସତ୍ତ୍ୱା ନେଇସୁଦ୍ଧା ଭଲ କାମ କରୁଛନ୍ତି । ଯାହା ଆମ୍ଭ-ମାନଙ୍କର ଗୋଟିଏ ସେନା ଦଳରେ ରହି କାମ କରିବା ସୁବିଧାଜନକ ହେଉନାହିଁ, ଜେନେରାଲ ସ୍ପାର୍କ ଖୁବ ଭଲ କାମହିଁ କରୁଛନ୍ତି । ପଦାତିକ

ସର୍ବାଧିନାୟକଙ୍କର ସାହାଯ୍ୟ ପାଇଲେ ବା କ'ଣ, ନ ପାଇଲେ ବା କ'ଣ ସବୁ କ୍ଷେତ୍ରରେ ସମ୍ମାନ ତାଙ୍କରହିଁ ପ୍ରାପ୍ୟ । ସେ ବାସ୍ତବିକ ପକ୍ଷରେ ଜଣେ ଧୂରନ୍ଧର ସେନାପତି ।

ମନେହୁଏ, ଅନେକ ଦିନ ଘରକୁ ଯାଇ ପାରିବି ନାହିଁ । ତେଣୁ ଚିଠି ଲେଖିବେ । ତୁମ ଚିଠିରେ ଖବର ଥାଏ ବୋଲି ମୋତେ ଭାରି ଭଲଲାଗେ ।

ତୁମର ସ୍ନେହର—
ଇଲ୍‌ସ୍ୱେର୍ଥ୍ ।

ଆଉ ଖଣ୍ଡିଏ ଗ୍ରେଟ ଫ୍ରାଂକଲିନ୍‌ଙ୍କର:—
ଇଭ, ଏସ, ଏସ, ଭିଲଭାର୍ଟ, ଏମ, ମୁର ।

ଶ୍ରୀଚରଣେଷୁ,
ମା !

ସମୁଦ୍ରରେ ରହି ଯୁଦ୍ଧ କରୁକରୁ ଆଜକୁ ୬୧ଦିନ ଅତିବାହିତ ହେଲା । ଏହାର କ୍ଳାନ୍ତି ଆମ ସୈନିକମାନଙ୍କ ମଧ୍ୟରେ ଖୁବ ଦେଖା ଦେଉଛି— ବୋଧହୁଏ, ଏହି "କୁଠାର" ବି କ୍ଳାନ୍ତ ଆସି ଯାଇଛି । ଯେବେ ପାଞ୍ଚ ଘଣ୍ଟାକାଳ ନିର୍ବିଘ୍ନରେ ଶୋଇବାକୁ ପାଏ, ତା ବଦଳରେ ମୁଁ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ । ମୋର ଦୃଷ୍ଟିଶକ୍ତି କ୍ରମେ କମି ଯାଉଛି । ଯେତେସବୁ ଶ୍ରେଷ୍ଠ ଶ୍ରେଷ୍ଠ କଳକବ୍ଜା ମରାମତି ଓ ରକ୍ଷା ଅଭାବରୁ ନଷ୍ଟ ହୋଇ ଯାଉଛି । (ଖାଦ୍ୟର ଅବସ୍ଥା ମଧ୍ୟ ସଙ୍କଟଜନକ) ଡିମ୍ବ, ମାଂସ ସ୍ୱପ୍ନ କହିଲେ ଚଳେ । ତୁମେ ବେଶ ବୁଝି ପାରୁଥିବ, ଖଣ୍ଡେ ଡେଷ୍ଟ୍ରୟରକୁ ସମୁଦ୍ରରେ ଏତେଦିନ ରଖିବା କେଡ଼େ ଶକ୍ତ । କିନ୍ତୁ ଏବେ ଆଶା ଦେଖା ଯାଉଛି ଯେ ଦୁଇ ତିନି ସପ୍ତାହ ମଧ୍ୟରେ ଆମେ ନିକଟସ୍ଥ କୌଣସି ଗୋଟିଏ ଘାଟିକୁ ବିଶ୍ରାମ ଓ ମରାମତି ପାଇଁ ଯାଇ ପାରିବୁ । ଆମ୍ଭମାନଙ୍କ ବିଭାଗର ଶେଷ ଜାହାଜରେ ଆମେ ଥିବୁ । ମୋ ମନେହୁଏ, "ମୁର" ଏତେଦିନଯାଏ ସମୁଦ୍ର ମଧ୍ୟରେ ରହିଥିବାରୁ ପୃଥିବୀରେ ଶ୍ରେଷ୍ଠ ରେକର୍ଡ ରଖି ପାରିବ ।

ଡେନ୍ମାର୍କର ଜାହାଜ ଏତେଦିନକାଳ କେଉଁଠିହେଲେ ସମୁଦ୍ରରେ ରହିନାହିଁ । ୮୫ଦିନ ଧରି "ହର୍ଣ୍ଣିଅନ୍ତୁମ୍ବ ଦ୍ବୀପ ପାଖରେ" ରହିବାଟା କଣ ପୁରୁଣା କାଳର ସେହି ରୂପକଥା ପରିନୁହେଁ... । କିନ୍ତୁ ଏଥିରେ ଏତିକି ପ୍ରଭେଦ ଯେ ସେମାନଙ୍କର "କ୍ୟାକ୍ଟି କ୍ୟାଟସ୍‌ମାନଙ୍କ" ସମ୍ବନ୍ଧରେ ଦୁଶ୍ଚିନ୍ତା ନଥିଲା । ଆମେ ଜାପାନୀମାନଙ୍କର ଆତ୍ମଘାତି କାମନା ଯେଉଁ ବିମାନ ବନ୍ଦରର ନାମ ଉପରୋକ୍ତ ପ୍ରକାରେ ରଖିଛୁ । ଯେଉଁମାନେ ମନୁଷ୍ୟ ଜୀବନର ମୂଲ୍ୟକୁ ଖୁବ ଶସ୍ତାବୋଲି ମନେ କରନ୍ତି, ମନୁଷ୍ୟ ସମାଜରେ ସେମାନଙ୍କର ମୂଲ୍ୟ ଯେ କେତେକମ, ତାହା ଭାବିଲେ ବିସ୍ମୟଲାଗେ ।

ମୋର ସ୍ନେହ ଓ ଭକ୍ତି ଗ୍ରହଣ କରିବ

ଗ୍ରେଟ ଫ୍ରାଂକ୍ଲିନ୍ ।

ମୋ ମନେହୁଏ ପ୍ରତି ଜନନୀ ସନ୍ତାନ ସନ୍ତତି ମାନଙ୍କୁ ଯୁଦ୍ଧ ସମୟରେ ବିଦାୟ ଦେଲାବେଳେ ମୋ ଭଳି ଅନୁଭବ କରିଥିବେ । ମୋ ମନେ ହୋଇଥିଲା, ଏହା ବୋଧହୁଏ ଶେଷ ବିଦାୟ । ନିଜର ସନ୍ତାନ ନିହତ ହେଲେ କିମ୍ବା ନ ଫେରିଲେ ଯାହାହୁଏ, ଏ ଯେପରି ତାହାରି ସୂଚନା, ୧୯୪୩ ମସିହାର ମେ ମାସ ଆସିଲା ବ୍ୟବସ୍ଥା ଯେଉଁ । ବଲିଭିଆର ପ୍ରେସିଡେଣ୍ଟ ଓ ତାର ପରରାଷ୍ଟ୍ର ସଚିବ ଦୁଇଜଣ ଯାକ ଅଲଗା ଭାବରେ କିଛିଦିନ ପାଇଁ ହ୍ୱାଇଟ୍ ହାଉସରେ ରହି ଯାଆନ୍ତି । ଯୁଗୋସ୍ଲୋଭିକିଆର ପ୍ରେସିଡେଣ୍ଟ ବେନେସ୍ ଏବଂ ପ୍ରଧାନମନ୍ତ୍ରୀ ମ୍ୟାକେନଜିଙ୍କ ଦୁହେଁଯାକ ଏକୁଟିଆ ହୋଇ ଗୃହ ଅତିବାହିତ କରିଥିଲେ । ତାପରେ ଆସନ୍ତି ଲାଇବେରିଆର ପ୍ରେସିଡେଣ୍ଟ ଓ ପରବର୍ତ୍ତୀ ନିର୍ବାଚିତ ପ୍ରେସିଡେଣ୍ଟ । କ୍ୟାସାବ୍ଲାଙ୍କାରୁ ଫେରିବା ବାଟରେ ସ୍ୱାମୀ ଲାଇବେରିଆକୁ ଯାଇଥିଲେ । ସେଇଥି ପାଇଁ ଏହି ପ୍ରତ୍ୟାଗମନ ।

ଜୁଲାଇ ମାସର ପ୍ରଥମାଂଶରେ ଦିନେ ପ୍ରତ୍ୟୁଷରେ ମୋତେ ହଠାତ୍ ଫୋନ୍‌ରେ ଡାକି ବାର୍ତ୍ତା ଦେଇ କୁହା ହୁଏ ଯେ ମୋ ପୁଅ ଗ୍ରେଟ ଫ୍ରାଙ୍କ୍ଲିନ୍ ଯେଉଁ ଜାହାଜରେ ଥିଲା, ସେଥିରେ ବୋମା ପଡ଼ିଛି । ସେମାନେ ମନେ

କରନ୍ତି ପାଲ୍ମର ମୋର ଘାଟିରେ ଜାହାଜଖଣ୍ଡି ନିରାପଦରେ ପହଞ୍ଚିଛି । କେବଳ ଏତିକି, ଅନ୍ୟ କିଛି ନୁହେଁ । ମୁଁ ସ୍ୱାମୀଙ୍କ ଘରେ ପଶି ପଚାରିଲି ସେ ଏହାଠାରୁ ଆଉ ଅଧିକ କିଛି ଜାଣନ୍ତି କି ନା ? ସେ କହିଲେ, ତାଙ୍କୁ ଏହି କଥା ଏହିମାତ୍ର କୁହା ହୋଇଛି । ସେ ଏ ସମ୍ବନ୍ଧରେ ଅନୁସନ୍ଧାନ କରି ଜାଣିବେ । ବହୁଦିନ ପରେ ସେ ଖଣ୍ଡିକୁ ପାଲ୍ମରମୌଳ୍ପ ଅଣାହୁଏ । ସେଠି ମଝିରେ ମଝିରେ ତାପରେ ବୋମା ପକାଇବାକୁ ଲାଗେ । ଜାହାଜ ଖଣ୍ଡିକୁ ଆଉ ଖଣ୍ଡିଏ ଜାହାଜ ସହିତ ଜୋଡ଼ି ଦିଆହୁଏ । ଦୁଇ ଖଣ୍ଡି ଜାହାଜରେ ଥିବା ମନୁଷ୍ୟଯାକ ଆହତ ହୁଅନ୍ତି । ଗ୍ରେଟ ଫ୍ରାଙ୍କ୍‌ଲିନ୍‌ଙ୍କ ଚରିତ୍ର ଭଲ ଯେ ସେ ଗୋଟିଏ ଶିଶୁକୁ ନେଇ ଡାକ୍ତରଙ୍କ ପାଖକୁ ଯାଏ । ସେ ଲକ୍ଷ କରିନାହିଁ ଯେ ତା ନିଜ କାନ୍ଧରେ ଆଘାତ ଲାଗିଛି ବୋଲି, କିନ୍ତୁ ଏବେ ବି ସାର୍ପନେଲ ଗୋଲାର ଟୁକୁରାଗୁଡ଼ି ମଧ୍ୟ ସେଠାରେ ଅଛି । ତାକୁ ସେମାନେ ସେଦିନର କଥା ଚେତାଇ ଦିଅନ୍ତି ।

କେଇ ସପ୍ତାହ ପରେ ସେ ମୋତେ ଜଣାଏ ଯେ, ସେ ପିଲାଟିକୁ ରକ୍ଷା କରିଛି । ତାର ଗୋଟିଏ ଗୋଡ଼ ଉଡ଼ି ଯାଇଛି । ପିଲାଟି ଏବେ ଅଛି ବେଥେସଡ୍ସ ନୌ-ହସପାତାଲରେ । ମୁଁ ତାକୁ ଦିନେ ଲାଞ୍ଚକୁ ଡାକେ । ପିଲାଟି ଯେପରି ସତ୍ ସେପରି ସାହାସୀ ମଧ୍ୟ ।

ମୋ ସ୍ୱାମୀ କେତେବେଳେ ପ୍ରଥମରେ କହିଥିଲେ ଯେ, ମୋ ପକ୍ଷରେ ପ୍ରଶାନ୍ତ ମହାସାଗରର ଦେଶ ସମୂହକୁ ଶୁଭେଚ୍ଛା ଭ୍ରମଣରେ ଗଲେ ଭଲହିଁ ହେବ—ତା ଠିକ ମୋ ମନରେ ପଡୁନାହିଁ । ହେଲେ ଏଇଟି ବେଶ ମନରେ ଅଛି ଯେ ସେ ଅଷ୍ଟ୍ରେଲିଆ ଓ ନିଉଜିଲାଣ୍ଡକୁ ବହୁ ଦୂରରେ ଅବସ୍ଥିତ ଓ ଭ୍ରମଣକାରୀଙ୍କ ଦ୍ୱାରା ଅବହେଳିତ ବୋଲି ସେ ମୋତେ ଏହି ପରାମର୍ଶ ଦେଇଥିଲେ । ଏହି ଦୁଇଦେଶ ସେତେବେଳକୁ ଆକ୍ରାନ୍ତ ହେବାର ଖୁବ ସମ୍ଭାବନା ଥାଏ । ସେଠାକାର ଲୋକେ ମଧ୍ୟ ଖୁବ ଉତ୍କଣ୍ଠାରେ ଦିନାତିପାତ କରୁଥିଲେ । ଆମ ଦେଶରୁ ବହୁ ସୈନ୍ୟ ସେଠାକୁ ପଠାହୁଏ । ହେଲେ, ଏହି ପ୍ରେରଣ ଦ୍ୱାରା ଉଦ୍‌ବିଗ୍ନ ବଢି ଯିବାକୁ ଲାଗେ । କାରଣ, ଏଠାକାର

ଅଧିବାସୀ ସେତେବେଳକୁ ଆଫ୍ରିକା ଓ ଇଟାଲିରେ ଯୁଦ୍ଧ କରିବାରେ ବ୍ୟସ୍ତ । ସେମାନଙ୍କ ନିକଟରେ ଏହି ସୈନ୍ୟ ଆଗମନ, ଆଶାର ବିଷୟ ହେଲେହେଁ ଭିତରେ ଭିତରେ ଯେପରି ସେସବୁ ପଣ୍ଡ ହୋଇ ଯାଉଥାଏ । ଏଆଡ଼େ ଭ୍ରମଣ କରିବାର ମୋରଆଉ ଗୋଟିଏ କାରଣ ମଧ୍ୟ ଥିଲା । ମୁଁ ନିଉଜିଲାଣ୍ଡ ଓ ଅଷ୍ଟ୍ରେ-ଲିଆର ସ୍ତ୍ରୀ ଲୋକମାନଙ୍କ ନିକଟରୁ ଏହି ମର୍ମରେ କେତେ ଗୁଡ଼ିଏ ଚିଠି ପାଇଥିଲି ଯେ, ଗ୍ରେଟବ୍ରିଟେନରେ ସ୍ତ୍ରୀ ଲୋକମାନେ କ'ଣ କରିଛନ୍ତି, ମୁଁ ତାହା ଦେଖିଛି । ସେଠାରୁ ଆସି ଏ ସୁଦୂର ଦେଶରେ ସେମାନେ ଯାହା କରୁଛନ୍ତି, ତାହା ଦେଖିବା ପାଇଁ ଖୁବ କୌତୁହଳୀ ହୁଏ ।

ମୁଁ ଏପରି ଗୋଟିଏ ବଡ଼ ବାହାନା ଖୋଜି ବାହାରକରେ । ମୁଁ ଦାବୀକରେ ମୋତେ ଗୁଆଡାଲକ୍ୟାନାଲ ଓ ଅନ୍ୟ ଦ୍ୱୀପ ସମୂହରେ ଆମ୍ଭ-ମାନଙ୍କ ସୈନ୍ୟଙ୍କୁ ଦେଖାଇବାକୁ ହେବ । ପଶ୍ଚିମ ଉପକୂଳସ୍ଥ ହସପାତାଲକୁ ମୁଁ ଅନେକଥର ଯାଏ । ସେଠାରେ ଗୋଆଡାଲ କ୍ୟାନାଲରେ ଓ ମେଲ୍ସନ୍‌ରେଡାର ଗ୍ରୁପର ( ଏହିଦଳ ଥିଲା ପ୍ରଥମ ) ଆହତମାନଙ୍କ ମଧ୍ୟରୁ ଅନେକଙ୍କୁ ଅଣା ହୋଇଥିଲା । ମୁଁ ମୋର ସ୍ୱାମୀଙ୍କୁ ପରିଷ୍କାର ଭାବରେ କହେ, ପ୍ରଶାନ୍ତ ମହାସାଗରର ଅଞ୍ଚଳ ସବୁକୁ ଯାଇ, ଆମ୍ଭମାନଙ୍କ ସୈନ୍ୟବର୍ଗ ଯେଉଁଠାରେ ଆହତ ହୋଇଛନ୍ତି, ସେ ସବୁ ସ୍ଥାନକୁ ଯେବେ ମୋତେ ନ ଦେଖାହୁଏ, ତାହେଲେ ମୁଁ ଖୁବ ମର୍ମାହତ ହେବି । ଅବଶେଷରେ ସେ ଅନନ୍ୟୋନ୍ୟପାୟ ହୋଇ ସେଠାକାର ଭାରପ୍ରାପ୍ତ ଜେନାରେଲ ଓ ଆଡ୍-ମିରାଲ ହେଲସଙ୍କ ନାମରେ ଖଣ୍ଡିଏ ଚିଠି ମୋତେ ଦିଅନ୍ତି । ସେ ମୋତେ ଗୋଆଡାଲ କେନାଲକୁ ଯିବାରେ ସମ୍ମତ ଦିଅନ୍ତି । ମୁଁ ଯଦି ଯୁଦ୍ଧ ପରିଚାଳନାରେ ବାଧା ନଦିଏ, ତେବେଯାଇଁ ତାହା ସମ୍ଭବପର ହେବ ।

କର୍ଣ୍ଣେଲ ହଜ୍‌ସନ୍ ମୋର ଅଷ୍ଟ୍ରେଲିଆ ଭ୍ରମଣରେ ବନ୍ଦୋବସ୍ତ କରି-ଥିଲେ । ସେ ପରେ ମୋ ସହିତ ଇଉନାଇଟେଡ ନେସାନ୍‌ରେ କାମ କରିଛନ୍ତି । ତାଙ୍କ ପାଖରୁ ଶୁଣିଛି, ଫ୍ରାଂକଲିନ ଅଷ୍ଟ୍ରେଲିଆର ପ୍ରଧାନ ମନ୍ତ୍ରୀ ଓ ଆଡ଼ମିରାଲ ହେଲସଙ୍କୁ ଜଣାଇଥିଲେ ଯେ, ସେ ଯାହା କହନ୍ତୁ ବା

ଲେଖନ୍ତୁ ନା କାହିଁକି, ମୋତେ ଗୋଷ୍ଠାଡାଲ କେନାଲକୁ ଯିବାପାଇଁ ଅନୁମତି ମିଳିବ ନାହିଁ। କାରଣ, ସେ ଏହି ଭ୍ରମଣକୁ ବିପଜ୍ଜନକ ବୋଲି ମନେ କରନ୍ତି।

ଏହି ଦୁଇଟି ପରସ୍ପର ବିରୋଧୀ ନିର୍ଦ୍ଦେଶ ପାଇ ଭଦ୍ରଲୋକ ଦୁଇଜଣ ମୋ ସମ୍ବନ୍ଧରେ ଯେ କ'ଣ ଭାବୁଥିଲେ, ତାହା ମୁଁ ଜାଣେନା, କିନ୍ତୁ ମୁଁ ମୋର ଚିଠି ଠିକ ଠିକ ଭାବରେହିଁ ଦେଇଥିଲି।

ଫ୍ରାଂକଲିନ ୧୭ ତାରିଖ ଦିନ କୋୟେମ୍ବକଙ୍କ ସମ୍ମିଳନୀକୁ ଯାଇଥାନ୍ତି। ସେହି ଦିନହିଁ ମୋର ସାନ୍ ଫ୍ରାନ୍ସିସ୍କୋକୁ ଯିବାର କଥା। ହେଲେ, ହ୍ୱାଇଟ ପାର୍କରେ ଦୁଇଜଣ ଦୁଇଜଣଙ୍କୁ ନିରୋଳାରେ ଖୁବ କମ୍ ସମୟ ପାଇ ପାରୁ। ଆଗରୁ ଠିକ କରି ହୋଇଥିଲା ମୋର ଏହି ଭ୍ରମଣ ଗୋପନରେ ରଖାଯିବ। ତେଣୁ ମୁଁ ଦୈନନ୍ଦିନ କାମରେ ଲାଗିଯାଏ। ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ସେତେବେଳକୁ ଆମର ଏଠି ବାସ କରୁଥିଲେ। ସେ ଏବେ ମଝିରେ ମଝିରେ କହନ୍ତି ଯେ ରାତ୍ରି ଆହାର ସମୟରେ ମୁଁ ଯେତେବେଳେ ତାଙ୍କୁ କଥା ପ୍ରସଙ୍ଗରେ କହେଁ ଯେ ଦକ୍ଷିଣ ପ୍ରଶାନ୍ତ ମହାସାଗର ଅଭିମୁଖରେ କାଲି ଯାତ୍ରା କରୁଛି ବୋଲି, ସେ ଏଥିରେ ଖୁବ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ। ସେ ଚମକି ପଡ଼ି ପଚାରିଲେ, "କ'ଣ ବ୍ୟବସ୍ଥା କଲେ କହନ୍ତୁ ତ?" ମୁଁ ତାଙ୍କୁ ଜଣାଏ ଯେ, ସବୁ ପ୍ରକାରର ଯୋଗାଡ଼ ଯନ୍ତ୍ର କରି ହୋଇଛି। ଭ୍ରମଣର ସୂଚି ମଧ୍ୟ ପ୍ରସ୍ତୁତ।

ମୋର ଭ୍ରମଣ ବ୍ୟାପାର ଠିକ ହେଲାଛଣି ଆମେରିକାନ ରେଡକ୍ରସ୍‌ର ଚେୟାରମ୍ୟାନ ନରମ୍ୟାନ ଡେଭିସ୍‌ଙ୍କ ସହିତ ଦେଖା କରିବାକୁ ଯାଏ। ଯଦି ସେଠାକାର ରେଡକ୍ରସ୍ ପ୍ରତିଷ୍ଠାନ ନା ବିପଦର ସ୍ଥାନ ସମୂହ ଦେଖି ଅସେ ତଦ୍ୱାରା ତାଙ୍କର କିଛି କାର୍ଯ୍ୟ ହୋଇପାରେ କି ନା, ସେ ବିଷୟ ତାଙ୍କୁ ପଚାରେ। ମୋର ଆଶାଥିଲା, ଏପରି କରି ପ୍ରମାଣ କରିଦେବି ମୁଁ ଅନବରତ କାର୍ଯ୍ୟ କରି ଯାଉଛି। କେବଳମାତ୍ର ଯୁଦ୍ଧାଞ୍ଚଳରେ ବୁଲି ବିପଦର ସୃଷ୍ଟି କରୁନାହିଁ। ସେ ହାଙ୍ଗେ ସାଙ୍ଗେ ଜାଣନ୍ତି ଯେ, ମୋ ଦ୍ୱାରା

ତାଙ୍କର ଅନେକ କାମଦେବ । ସେ ନିଜେ ବି ଲୋକ ପଠାଇ ରେଡ଼କ୍ରସ କାର୍ଯ୍ୟ ପଦ୍ଧତି ଅନୁସନ୍ଧାନ କରିବେ ବୋଲି ସ୍ଥିର କରିଥିଲେ । ମୁଁ ମଧ୍ୟ ବିବେକ ବୁଦ୍ଧିରେ ପ୍ରଣୋଦିତ ହୋଇ ଯେଉଁସବୁ ଅଞ୍ଚଳକୁ ଯାଉଥିଲି, ସେଠା-କାର ରେଡ଼କ୍ରସର କାମ ମଧ୍ୟ ଦେଖୁଥିଲି ।

ମୁଁ ବିମାନ ସାହାଯ୍ୟରେ ସାନ ଫ୍ରାନ୍‌ସିସକୋକୁ ଆସେ । ସେଠାରେ ଦିନେ ରହି ପୁଣି ହାଓସ୍ୱାଇ ଦ୍ୱୀପକୁ ଯାଏ ।

ଭୋର ସମୟରେ ପ୍ରଥମରେ ହାଓସ୍ୱାଇକୁ ଦେଖେ । ଥରେ ଦେଖିଲା ପରେ, ହାଓସ୍ୱାଇ ପରେ ଆମେସବୁ ଗଲୁ ସେହି ଦ୍ୱୀପ ଦେଖିବାକୁ ଯେଉଁ ଦ୍ୱୀପକୁ ମୋ ସ୍ୱାମୀ "ସରବରାହର ପଥ ରକ୍ଷାକାରୀ ଦ୍ୱୀପ" ବୋଲି କହୁ-ଥିଲେ । ଏଠାରେ ଦିନରାତି ସଜାଗ ହୋଇ ରହିବାକୁ ରକ୍ଷୀ ମାନଙ୍କୁ ପଡ଼ୁ-ଥିଲା । ସେଇଥି ପାଇଁ ମାନସିକ ଶକ୍ତି ଓ କାର୍ଯ୍ୟପ୍ରତି ଆକର୍ଷଣ ବଜାୟ ରଖିବା ସେମାନଙ୍କର ଖୁବ ଦୁଃସାଧ୍ୟ ହୋଇ ଉଠୁଥିଲା ।

ତରୁଣ ସୈନିକଗଣ ନିଜପଦ କାମ ପସନ୍ଦ କରନ୍ତି ନାହିଁ କି ଗ୍ରହାନ୍ତି ନାହିଁ । ଦେଖି ମନେ ହେଉଥିଲା ସେମାନେ ଥକି ପଡ଼ିଛନ୍ତି । ଡାକ୍ତର-ଗଣ ସେମାନଙ୍କ କାମ ଯଥାସାଧ୍ୟ କରିବାକୁ ଚେଷ୍ଟା କରୁଥିଲେ । ସେମାନେ ଭଲଭାବରେ ସ୍ୱାସ୍ଥ୍ୟ ପରୀକ୍ଷା କାର୍ଯ୍ୟ ଚଳାଇ ଥାନ୍ତି । ଯାହାର ଯେଉଁ ଦୋଷ ତ୍ରୁଟି ଥିଲା, ତାହା ସଂଶୋଧନ କରୁଥିଲେ । ରେଡ଼କ୍ରସର ଲୋକଗଣ ଆମୋଦ ପ୍ରମୋଦର ନାନା ଉପାୟ ଉଦ୍ଭାବନ କରିବାକୁ ଲାଗିଲେ । କିନ୍ତୁ, ସେଠାକାର ଜୀବନ ଥିଲା ଅସ୍ୱାଭାବିକ । ମୁଁ ଖ୍ରୀଷ୍ଟମାସ ଦ୍ୱୀପରେ ଅବତରଣ କଲି । ତାଙ୍କୁ ଦେଖି ତାଙ୍କର ଅସ୍ୱାଭାବିକତା ଦେଖି ବେଶ ବୁଝି ପାରିଲି ଯୁବକ ଲେଫଟେନ୍ୟାଣ୍ଟ କର୍ଣ୍ଣେଲ ମୋ ଆଡ଼କୁ ଦେଖି କହିଲେ "ଦଶ ମାସ ଭିତରେ କେବଳ ଶ୍ୱେତାଙ୍ଗ ସ୍ତ୍ରୀ ଲୋକ ଆପଣଙ୍କୁ ଦେଖିବାକୁ ପାଇଲି ।"

ଏହି ଭ୍ରମଣ ସମୟରେ ବାର ବାର ମୋର ଏହା ମନେ ହୋଇଛି ଯେ ମୁଁ ଯେବେ କାଉଁଥି ଘରଣରେ ଏମାନେ ଯେପରି ଦେଖାକୁଛନ୍ତି ସେପରି

ହୋଇ ପାରିଥାନ୍ତି, ଯେବେ ଏମାନଙ୍କର ମା ହୋଇ ପାରିଥାନ୍ତି । ପ୍ରେମିକା, ସ୍ତ୍ରୀ ବା ଭଗ୍ନୀର, ପ୍ରତୀକ ବୋଲି ନିଜକୁ ବୁଝାଇବା ମାନେ ହେଲି ଯେ, ସୈନିକମାନେ ଜାଣି ଖୁସୀ ହେବେ ଯେ ସେମାନଙ୍କର ସର୍ବାଧିନାୟକ ଅର୍ଥାତ୍ (ମୋ ସ୍ୱାମୀଙ୍କ) ଦୃଷ୍ଟି ସେମାନଙ୍କ ଆଡ଼କୁ ଅଛି ବୋଲି ନିଜ ସ୍ତ୍ରୀ ମାରଫତରେ ସେମାନଙ୍କ ପାଖକୁ ବାଣୀ ପଠାଇଛନ୍ତି । ସମ୍ପୂର୍ଣ୍ଣ ସ୍ୱତନ୍ତ୍ର କଥା ହେଉଛି, ଆପଣ ଯେତେବେଳେ ଏହି ତରୁଣଦଳ କ'ଣ ଭାବୁଛନ୍ତି, ତାହା ଜାଣି ସୁଦ୍ଧା, କିଛି କରି ପାରିବାର ଉପାୟ ଆପଣଙ୍କର ନାହିଁ ।

ଖ୍ରୀଷ୍ଟମାସ ଦ୍ୱୀପରେ ପହିଲୁ କରି ଗରମ ଦେଶର ଅସରପୋକଙ୍କ ହାବୁଡ଼ରେ ପଡ଼େ । ଯେଉଁ ଯୁବକ ଅଫିସର ଜଣକ ତାଙ୍କ ଘରଟି ମୋତେ ଛାଡ଼ିଦେଇ ଥିଲେ, ସେ ଜଳର ଅସୁବିଧା କଥା ମଧ୍ୟ ଜଣାଇ ଦେଇ ଥିଲେ । ସେତିକିବେଳେ ତାଙ୍କୁ ପଚାରିବାକୁ ଭୁଲି ଯାଇଥିଲି ଯେ ଦ୍ୱୀପରେ ଅନ୍ୟ କୌଣସି ଜୀବଜନ୍ତୁଙ୍କର ଭୟ ଅଛି କି ନା । ରାତିରେ ଖିଆପିଆ ଶେଷ କରି ଘରେ ଆସି ଆଲୁଅ ଜାଳି ଦେଖେ ମୋ ଘର ଚଟାଣରେ ଛୋଟ ଛୋଟ ରଙ୍ଗ ରଙ୍ଗ ଅସରପୋକରେ ଭର୍ତ୍ତି । ମୁଁ ତ ଚିତ୍କାର କରି ଉଠି ଗୋଟିଏ ଅବାକ୍ ଘଟଣା ଘଟାଏ । ହଠାତ୍ ମୋର ମନେ ପଡ଼ିଲା ଏ ଦ୍ୱୀପରେ ମୁଁ ଏକା ସ୍ତ୍ରୀ ଲୋକ । ପାଟି କଲେ ସାରା ଦ୍ୱୀପଯାକରେ ଚହଲ ପଡ଼ିଯିବ । ତା ବଦଳରେ ଚଟାଣରେ ଗୋଡ଼ ଦେଲାକ୍ଷଣି ସେଗୁଡ଼ିକ ଫାଟ ମଧ୍ୟରେ କୁଆଡ଼େ ଲୁଚିଗଲେ । ଦ୍ୱୀପରେ ସେମାନେ ଯାହା କରୁ-ଥିଲେ ସବୁ ଦେଖେ । ଅନ୍ୟ ଦ୍ୱୀପଗୁଡ଼ିକୁ ଭ୍ରମଣ କରିବାକୁ ଯାଇଁ ସେ ସବୁ ବି ଦେଖିଛି । ମୂଳରୁ ମୁଁ ମୋର ପିଲାମାନଙ୍କୁ ପରାମର୍ଶ ଦେଇଥିଲି, ସେଥିରେ ଖର୍ଚ୍ଚ ହେବ ର କିଛି ନାହିଁ । କାରଣ ସେମାନେ ନିଜେ ମଧ୍ୟ ଅଫିସର । ସେମାନେ କହିଥିଲେ "ମା, ସବୁବେଳେ ବଡ଼ ବଡ଼ଆଙ୍କ ସାଙ୍ଗରେ ଖାଇବେ ନାହିଁ । ନନ୍‌କମିସନଡ୍ ଅଫିସରମାନଙ୍କ ସଙ୍ଗରେ ମଧ୍ୟ ଖାଇବେ । ସେମାନଙ୍କ ଭିତରୁ କାହାକୁ ସାଙ୍ଗରେ ନେଇ ଗାଡ଼ିରେ ବୁଲିବେ । ଯେଉଁମାନେ ନୂଆ କରି ସୈନ୍ୟଦଳରେ ଭର୍ତ୍ତି ହୋଇଛନ୍ତି,

ସେମାନଙ୍କ ସଙ୍ଗରେବ ବଦନେ ଖାଇବେ।" ଏହି ଶେଷ ଅନୁରୋଧ ରକ୍ଷା କରିବାର ଏକମାତ୍ର ଉପାୟ ହେଲା, ଛ'ଟା ଆଗରୁ ଉଠି ଏମାନଙ୍କ ସହିତ ପ୍ରାତଃ ଭୋଜନ କରିବା। ସୁବିଧା ପାଇଲେ ଷଣି ଏହା କରେ। ସେମାନଙ୍କ ସହିତ ଆଳାପ କରି ଖୁବ ଲାଭବାନ ହୋଇଥିଲି। ପ୍ରଥମରେ କିଛି ସମୟ ପାଇଁ କିଛି ଆପତ୍ତି ଲାଗେ ଓ ପରେ ତାହା ଉଭେଇ ଯାଏ। ସେତେବେଳେ ଆଳାପର ଝରଣା ଛୁଟୁଥିଲା। ଏଥିରେ ମୁଁ ଯୁକ୍ତରାଷ୍ଟ୍ର ନାଗ-ରିକମାନଙ୍କ ସମ୍ବନ୍ଧରେ ଅନ୍ତର୍ଦୃଷ୍ଟି ଲାଭକରେ।

ପ୍ରାୟ ସବୁ ଦ୍ୱୀପରେ ଗୋଟିଏ ବନ୍ଧାଧରା ନିୟମ ମଧ୍ୟରେ ନିୟନ୍ତ୍ରିତ ହେଉଥିଲା ଜୀବନ। ପ୍ରତି ରାତିରେ ଛବି ଦେଖା ହେଉଥିଲା। ଗ୍ରୀଷ୍ମ ପ୍ରଧାନ ଦେଶରେ ଯେତେବେଳେ ମୂଷଳ ଧାରରେ ବାରିପାତ ହୁଏ, ସେତେ-ବେଳେ ସେମାନେ ଜାମା ଖୋଲି ବର୍ଷାରେ ଥନ୍ତ ଥନ୍ତ ଛବି ଦେଖନ୍ତି। କେବଳ ଛବିର ଯନ୍ତ୍ରପାତି ଢାଙ୍କାଥିଲେ ସେମାନେ ଖୁସୀ ହେଉଥିଲେ। ଅନ୍ୟାନ୍ୟ ଆମୋଦ ପ୍ରମୋଦର ବ୍ୟବସ୍ଥା, ରେଡକ୍ରସ ଓ ବରିଷ୍ଠ ସେନାନାୟକଙ୍କ ଉଦ୍ଭାବନ କୌଶଳ ଉପରେ ନିର୍ଭର କରୁଥିଲା! ମୁଁ ଯେତେବେଳେ ଘରକୁ ଫେରେ ସେମାନେ ଯନ୍ତ୍ରପାତିଲାଗି ଅନେକ ଅନୁରୋଧ ଜଣାନ୍ତି, ଜାହାଜ ଚଳାଚଳ ସେତେବେଳେ ପ୍ରଶାନ୍ତ ମହାସାଗରରେ ଖୁବ କଠିନ ହୋଇଥାଏ। ରେଡକ୍ରସ ଓ ଅନ୍ୟାନ୍ୟ ପ୍ରତିଷ୍ଠାନ ସମୂହର ବିରୁଦ୍ଧରେ ଅଯୋଗ୍ୟତାର ଅଭିଯୋଗ ଅଣା ହେଉଥାଏ। ଆଉ ସେମାନେ ଚିତ୍କାର କରୁଥାନ୍ତି, ସାମରିକ କର୍ତ୍ତୃପକ୍ଷଙ୍କ ନିକଟରୁ ଜାହାଜରେ ଜିନିଷ ଆଣିବାର ଅନୁମତି ପାଉନାହାଁନ୍ତି ବୋଲି।

ସାନ୍ ଫ୍ରାନ୍‌ସିସ୍‌କୋରୁ ଯେତେବେଳେ ବାହାରେ, ସେତେବେଳକୁ ଜାଣିଥିଲି ଯେଉଁଠି ହେଲେ ଯାଇ ଟିଟେନାସର ଇଞ୍ଜେକ୍‌ସନ୍ ନେବାକୁ ପଡ଼ିବ। ଆଗରୁ ଯେଉଁ ସବୁ ଇଞ୍ଜେକ୍‌ସନ୍ ମୁଁ ନେଇଥିଲି, ସେ ଗୁଡ଼ିକ ଏତେ ସହିକଥିଲା ଯେ ମୁଁ ଏଇଥିପାଇଁ ବରାବର ନୌହାସପାତାଳରେ ହାଜର ହୁଏ। ତାପରେ ଆଉ ତାଙ୍କକଥା ଭାବିନଥିଲି। ଏଥର ପୁଣି ମୋ

ହାତ ଫୁଲି ଉଠିବାକୁ ଲଗିଲା । ଯେଉଁ ଯନ୍ତ୍ରଣା ପାଉଛୁ ତାହା ନ କହିଲେ ଭଲ । ହେଲେ କରିବାର କୌଣସି ଉପାୟ ନାହିଁ । ସେଇଥିଯୋଗୁ ଯେତେଟା‌ରେ ଭୂଲିବାକୁ ଚେଷ୍ଟାକରେ । ମୋ ଭ୍ରମଣର ଗତ ଠିଆସି, ପୁଣି ସେହି ଅନୁସାରେହିଁ ଚଳିବାକୁ ପଡ଼ିବ । ହାତ ବ୍ୟଥା, ଭଲ ହୋଇବା ଆଗରୁ ମୁଁ ୧୭ଟି ଦ୍ୱୀପରୁ ଫେରି ଆସେ । ଏତଦ୍‌ବ୍ୟତୀତ ନିଉଜିଲାଣ୍ଡ ରାଜଧାନୀ, ଅନ୍ୟାନ୍ୟ ସ୍ଥାନ, ଅଷ୍ଟ୍ରେଲିୟା ପୂର୍ବ ଉପକୂଳରେ ଓ ଦକ୍ଷିଣର ବହୁ ଶିବିର ଓ ହାଂସ୍ପାତାଲ ଦେଖେ ।

ନୌମିଆରେ ପହଞ୍ଚି ସ୍ୟାଉମିଲ ହାଲସଙ୍କ ହାତରେ ମୋ ସ୍ୱାମୀଙ୍କ ପତ୍ର ଦିଏ । ସ୍ୟାଉମିଲ କହିଲେ, ମୋ ଆସିବା ବ୍ୟାପାରରେ ସେ ଖୁବ୍ ଖୁସି ହୋଇ ପଡ଼ିଛନ୍ତି । ହେଲେ, ମୋଠାରୁତ ବେଶୀ ଭୟ ସେ ପାଇ-ନାହାନ୍ତି । ଗୁଆଡାଲ କ୍ୟାନାଲରେ ଯିବା ଯଦି ସମ୍ଭବପରହୁଏ ତେବେ ଯିବାପାଇଁ ମୁଁ ପ୍ରସ୍ତୁତ । ସ୍ୟାଉମିଲ ଏସମ୍ବନ୍ଧରେ କ'ଣ ଠିକ୍ କରନ୍ତି, ସେ ବିଷୟ ମୋତେ ଜଣାଇବାକୁ ମୋଟେ ରାଜି ହେଲେ ନାହିଁ । ସେ ସ୍ପଷ୍ଟଭାବରେ ଜଣାଇଲେ ଯେ ମୋତେ ପ୍ରଥମରେ ନିଉଜିଲାଣ୍ଡକୁ ଯିବାକୁ ହେବ । ସେଠାରୁ ଫେରି ଆସିଲେ ସେ କ'ଣ ଠିକ୍ କରିଛନ୍ତି, ତାହା ଜଣାଇବେ । ବୁଲି ଆସିବା ଆଗରୁ ମୋର ମନେହେଲା ତାଙ୍କ ମନର ଟିକିଏ ପରିବର୍ତ୍ତନ ହୋଇଛି । ମୁଁ ଯେଉଁସବୁ ସ୍ଥାନମାନଙ୍କରେ ବୁଲିଥିଲି, ସେ ସବୁ ହାଂସପାତାଲ ସମୂହରୁ ଖୁବ୍ ଭଲଖବର ମୋ ସମ୍ବନ୍ଧରେ ସେ ହୁଏତ ପାଉଥିଲେ ।

ମୁଁ ସଙ୍କଟପୂର୍ଣ୍ଣ ବର୍ଷ ସମୂହରେ ଯୁକ୍ତରାଷ୍ଟ୍ରରେ ବହୁଥର ସଫର କରିଥିଲି । ହାଂସ୍ପାତାଲର ବିଭିନ୍ନ ବିଭାଗ ବୁଲି ଦେଖିଲାବେଳେ ଏହି ଭ୍ରମଣର ଅଭାବନୀୟ ଫଳ ଦେଖିବାକୁ ପାଏ । ଜନୈକ ବେଗାବାନ୍ତ ତରୁଣ ସୈନିକଙ୍କ ସହିତ କଥା କହିଲା ବେଳକୁ ସେ ମୋତେ କୌଣସି ଗୋଟିଏ ବ୍ୟାପାରରେ ଦେଖିଥିଲି ବୋଲିକହେ । ତାପରେ ତାର ନିବାସ ସମ୍ବନ୍ଧରେ କୌଣସି କଥା ମୋର ମନେ ପଡ଼ିଲାକ୍ଷଣି ତା ମୁହଁ ଆନନ୍ଦରେ ଉଦ୍ଭାସିତ

ହୋଇଉଠୁଥିଲି । ମୋ ମନେହେଉଥିଲା ମୁଁ ଯେ ବହୁ ମାଇଲ ପ୍ରତ୍ୟହ ଭ୍ରମଣ କରିପାରିଛି, ତାହା ବୃଥା ଯାଇନାହିଁ ।

ନିଉଜିଲାଣ୍ଡରେ ଯେତେବେଳେ ଥିଲି, ସେତେବେଳେ ମାଉରୀ ମାନ-ଙ୍କର ବାସସ୍ଥାନ ରୋଟରୁଆକୁ ଦେଖିବାକୁ ଯାଏ । ସେମାନେ ଆମ୍ଭମାନଙ୍କ ସୈନ୍ୟବର୍ଗଙ୍କପ୍ରତି ଖୁବ୍ ଆତିଥେୟତା ଦେଖାଇଥିଲେ । ଏମାନଙ୍କର ପ୍ରଧାନ ଗାଇଡ୍ ରଙ୍ଗୀ ବୁଲି ବୁଲି ସବୁ ମୋତେ ଦେଖାନ୍ତି । ଭାରି ଚମତ୍କାର ସେ ସ୍ତ୍ରୀଲୋକ ଜଣକ । ବିଚକ୍ଷଣ ବୁଦ୍ଧି ତାଙ୍କର । ସେ ସମ୍ଭ୍ରାନ୍ତ ମଧ୍ୟ । ଅଞ୍ଚଳଟି ଉଷ୍ଣପ୍ରସ୍ରବଣରେ ପରିପୂର୍ଣ୍ଣ । ଦେଖିଲେ ମନେ ହେଉଥିଲା ସତେ-ଯେପରି ଗୋଟିଏ ଶ୍ରେଷ୍ଠ ସୁବର୍ଣ୍ଣ ପରିବେଷ୍ଟିତ ଉଦ୍ୟାନ । ଏହିସ୍ଥାନରେ ଦେଖିବାକୁ ପାଇଲି ପରିବାରଗଣ ଉଷ୍ଣପ୍ରସ୍ରବଣ ଧାରରେ ହାଣ୍ଡି ବସାଇ ରନ୍ଧାବଢ଼ା କରୁଛନ୍ତି । ଏହା ଠିକ୍ ହେଉଛି କିନା ବୋଲି ଟେବାକାଙ୍କ ଭଳି ପଚାରେ । ସନ୍ତାନ ସନ୍ତତିଗଣ ତ ଅନ୍ୟାନ୍ୟ ପାଖରୁ ଶ୍ରେଣ କରି-ପାରନ୍ତି । ରଙ୍ଗୀ ସସମ୍ମାନେ ଉତ୍ତର ଦେଲେ, ସେମାନଙ୍କ ପିଲାପିଲି ଯେପରି ଚୋରି ନକରନ୍ତି ସେକଥା ସେମାନଙ୍କୁ ଶିକ୍ଷା ଦିଆଯାଏ । ଏଭଳି ମୃଦୁଭର୍ତ୍ସନା ମୋର ପ୍ରାପ୍ୟହିଁ ଥିଲା । ପିଲାପିଲିଙ୍କୁ ଭଲକରି ଶିକ୍ଷାଦେଇ ସଫଳକାମ ହେବା ମୋ ଜୀବନର କାମ୍ୟଥିଲା । ମାଓରି ମାନଙ୍କ କ୍ଷେତ୍ରରେ ସେହି ସଫଳତା ଶେଷ ସିଦ୍ଧାନ୍ତରେହିଁ ପହଞ୍ଚିଥିଲା ।

ଏଥର ଅଷ୍ଟ୍ରେଲିଆରେ ଯାଇ ପହଞ୍ଚେ । କର୍ଣ୍ଣେଲ ହବ୍‌ସନ୍, ଲେଫଟ୍-ନ୍ୟାଣ୍ଟ ଜେନେରାଲ ଆର, ଏଲ, ଏଇଚ ଲର୍ଗାର ବା ତାଙ୍କର ସହକାରୀ ବ୍ରିଗେଡ଼ିୟାର ଜେନେରାଲ ସି, ଇ, ବେଟ୍ରାର୍ମି ମଧ୍ୟ ମୋ ପ୍ରତୀକ୍ଷାରେ ଥିଲେ । ସେମାନେ ମୋର ଭ୍ରମଣ ପରିକଳ୍ପନା ସୁଷ୍ଠୁ ଭାବରେ ସମ୍ପୂର୍ଣ୍ଣ ହୋଇଛି ବୋଲି ଜଣାନ୍ତି । ମୁଁ କ୍ୟାନେବେରାରେ ଗଭର୍ଣ୍ଣର ଜେନେରାଲ ଓ ତାଙ୍କର ସ୍ତ୍ରୀ ଲର୍ଡ ଓ ଲେଡ଼ି ଗୌରୀଙ୍କ ଅତିଥି ହୁଏ । ସହୃଦୟତାର ମୂର୍ତ୍ତି ପ୍ରତୀକ ସେମାନେ । ମୁଁ ବହୁ ବଡ଼ ବଡ଼ ସଭାରେ ବକ୍ତୃତା ଦିଏ । ଅନେକ ହଂସପାତାଳ ବୁଲି ଦେଖିଲି, ତାପରେ ସେବିକାମାନଙ୍କ ବିଶ୍ରାମାଗାର ଓ

ସୈନ୍ୟମାନଙ୍କର ପ୍ରମୋଦଶାଳାକୁ ଯାଏ । ସୈନ୍ୟମାନେ ଅଷ୍ଟ୍ରେଲିଆର ପ୍ରତି ଘରେ ଯେଉଁ ସମାଦର ପାଉଛନ୍ତି, ତାହା ଜଣାନ୍ତି । ନିଉଜିଲାଣ୍ଡରେ ମଧ୍ୟ ଏପରି ଘଟିଛି ।

ଆମ୍ଭମାନଙ୍କର ବନ୍ଧୁ ନାର୍ସ ଯେଉଁସବୁ ହଂସପାତାଳରେ କାମ କରନ୍ତି, ସେଠାରେ ମଝିରେ ମଝିରେ ପାଣି ପାଇବା ଖୁବ ଦୁଷ୍କର ହୋଇପଡ଼େ । ଲୁଗାପଟା ଧୋଇବା ଓ ପିଇବା ପାଇଁ ପ୍ରତିଦିନ ପିଆଲାଏ ଲେଖା ପାଣି ଖଞ୍ଜାଥିଲି । ମଝିରେ ମଝିରେ କାଦୁଅ ଏତେ ବେଶୀ ହେଉଥିଲି ଯେ ବୁଟ୍ ପିନ୍ଧି, ଟ୍ରାଉଜର ଟେକି ମଧ୍ୟ ଯିବା ଆସିବାରେ ଖୁବ ଅସୁବିଧା ହେଉଥିଲି । ପ୍ରକୃତ ପକ୍ଷରେ କାହାକୁ ଯଥାର୍ଥ ଅଭିଯୋଗ କରିବାରେ ଶୁଣିନାହିଁ ।

ଉତ୍ତର ଅଷ୍ଟ୍ରେଲିଆର ଅରଣ୍ୟ ଯୁଦ୍ଧ ପଦ୍ଧତି ମୁଁ ନିଜେ ଦେଖେ । ଘରୁ ଆସିବା ଆଗରୁ ମୁଁ ଜଣେ ସ୍ତ୍ରୀଲୋକଙ୍କ ପାଖରୁ ଚିଠି ପାଏ । ସେ ଚିଠି ଲେଖିଥିଲି ଯେ ତାଙ୍କର ପୁଅ ଲୁସିଆନା, ଜୋଙ୍ଗଲରେ ଯାହା ଶିଖିଛି, ତା ପକ୍ଷରେ ତାହା ନିଷ୍ଠୁର, ବର୍ବର ଓ ଅପ୍ରୟୋଜନୀୟ ବୋଲି ମନେହୁଏ । ମୋର ସେହି ଚିଠିକଥା ମନେଥିଲି । ତେଣୁ ବିଶେଷ ଉତ୍ସାହ ସହକାରେ ଅରଣ୍ୟ ଯୁଦ୍ଧ ପ୍ରଣାଳୀ ଦେଖିବାକୁ ଯାଏ । ମୁଁ ସୈନିକମାନଙ୍କ ସଙ୍ଗରେ ଅଷ୍ଟ୍ରେଲିଆ ଜନପଥରେ ବୁଲେ । ସେମାନଙ୍କୁ ଯେତେବେଳେ ସ୍ଥିରହୋଇ ରହିବା, ବା ଲୁଚି ଛପି ରହିବା ପ୍ରଣାଳୀ ଶିକ୍ଷା ଦିଆ ହେଉଥାଏ, ମୁଁ ତାହା ଦେଖିଛି । ଦେଖିଛି ସେମାନେ କିପରି ଭାବରେ ଶତ୍ରୁ ଆସୁଛନ୍ତି ବୋଲି ଜାଣି ପାରିବେ । କିପରି ଭାବରେ ଅଦୃଶ୍ୟ ହୋଇ ରହିବେ, ତାହାର ଉପାୟ ଶିକ୍ଷା ପାଇବାକୁ । ଫାନ୍ଦ ବି ପତା ହେଉଥିଲି । କୌଣସି ଲୋକ ଯଦି ଶୃଙ୍ଖଳା ଭଙ୍ଗ କରୁଥିଲା, ତାକୁ ପଡ଼ିବାକୁ ହେଉଥିଲି ସେହି ଫାନ୍ଦରେ । ତାକୁ ମୃତ ବୋଲି ଧରିନିଆ ହେଉଥିଲି । ଭାବୁଥିଲି, ସ୍ତ୍ରୀଲୋକ ଜଣକ ଚିଠିର ଉତ୍ତର ଦେବା ଆଗରୁ ଏ ସବୁ ଦେଖି ପାରିଲେ କେଡ଼େ ଭଲ ହୋଇ ନଥାନ୍ତା । ତାକୁ ମୁଁ ବୁଝାଇ ଦେଇ ପାରିଥାନ୍ତି ଯେ ଲୁସିଆନା ଜୋଙ୍ଗଲରେ ତାଙ୍କ ପୁତ୍ର ଭବିଷ୍ୟତ୍ ନିରାପତ୍ତା ପାଇଁହିଁ ଶିକ୍ଷା ପାଉଛନ୍ତି ।

ଗୋଟିଏ ପ୍ରଚଳିତ ଗଳ୍ପ ଅଛି ଓ ଏହା ବହୁଳାଂଶରେ ସତ । ମୁଁ ଫେରିବା ପରେ ଓ୍ୟାଶିଂଟନରେ ଗୋଟିଏ ଝିଅକୁ ପରିଚୟ ଦେଇ ଜଣାଏ ଯେ, ତାଙ୍କ ପ୍ରେମିକଙ୍କ ନିକଟରୁ ତାଙ୍କପାଇଁ ଖବର ଆଣିଛି । ସେ କହିଲା, "ଥଟ୍ଟା କରିବେ ନାହିଁ, ବୋକା କାହାକୁ ଠିଅରେଇଛନ୍ତି ?" ଯେତେବେଳ ପର୍ଯ୍ୟନ୍ତ ତାଙ୍କୁ ଗ୍ରେଟ ଖଣ୍ଡେ ଚିଠି ନ ପଠାଏ ସେ ବିଶ୍ୱାସ କରି ପାରୁ ନଥିଲି ଯେ ପ୍ରକୃତରେ ମୁଁ ତାଙ୍କୁ ଟେଲିଫୋନ କରିଛି ବୋଲି ।

ଅଷ୍ଟ୍ରେଲିଆରୁ ଫେରିବା ଶେଷଦିନ ରାତିରେ ମିସେସ ଡଗଲାସ ମାକ୍‌ଆର୍ଥାରଙ୍କ ସହିତ ପ୍ରାତଃ ଭୋଜନ କରେ । ତହିଁରେ ଜେନେରାଲଙ୍କ ସହିତ ମୋର ସାକ୍ଷାତ୍ ହୋଇ ପାରିଲା ନାହିଁ । ସେ ସେତେବେଳକୁ ନିଉ ଗିନିରେ, ମୋ ମନେହେଲା ବିପଦର ସମ୍ଭାବନା ଅଛି; ମୋତେ ସେଠାକୁ ଯିବାକୁ ଅନୁମତି ମିଳିବ ନାହିଁ ।

ନିଉମିଆକୁ ଫେରିଆସି ସୁଦ୍ଧା ମୁଁ ବୁଝିପାରି ନଥିଲି ଯେ ମୋତେ ଗୋୟାଡାଲ କ୍ୟାନାଲକୁ ଯିବାକୁ ପଡ଼ିବ ନା ଘରକୁ ଫେରିଯିବାକୁ ହେବ । ଶେଷଦିନର କଥା, ସାରାଦିନ ଆଡ୍‌ମିରାଲ ହ୍ୟାଲସଙ୍କ କଥା ମୁତାବକ କାମଦାମ କରେ । ସନ୍ଧ୍ୟାବେଳେ ସେ ଶାନ୍ତ ଭାବରେ ଜଣାନ୍ତି ଯେ ପରଦିନ ସକାଳ ୮ଟାରେ ଏଫେଟକୁ ଯିବାପାଇଁ ମୋତେ ପ୍ରସ୍ତୁତ ହେବାକୁ ପଡ଼ିବ । ଦ୍ୱୀପର ନାମଟି କୁହାହେଲା ନାହିଁ । ଜାପାନୀମାନେ ଏହା ଉପରେ କେବେହେଲେ ବୋମା ପକାଇ ପାରି ନାହାନ୍ତି । ଏଠାରେ ଆମର କେତୋଟି ବଡ଼ ବଡ଼ ହଂସପାତାଳ ଥାଏ । ସେ ଆଶା କରିଥିଲେ ଯେ ସେଠାରେ ଶତ୍ରୁଗଣ ଆମର ସନ୍ଧାନ ପାଇବେ ନାହିଁ । ଏଫେଟରୁ ମୁଁ ଏସପୀରିଟ ସ୍ୟାଣ୍ଟୋକୁ ଯିବ । ସେଠାରୁ ଗୋୟାଡାଲ କ୍ୟାନାଲକୁ ଯିବାକୁ ହେବ । ଆପଣମାନେ ବେଶ ବୁଝି ପାରୁଛନ୍ତି ମୁଁ ଯଥା ସମୟରେ ପ୍ରସ୍ତୁତ ହୋଇ ରହେ ।

ତା ପରଦିନ କେତୋଟି ଖୁବ କାର୍ଯ୍ୟବ୍ୟସ୍ତ ରହେ । ମୋର ସମସ୍ତ ଭ୍ରମଣ ମଧ୍ୟରେ ଏହି ଦିନ କେତୋଟି ଖୁବ କୌତୁହଳମୟ । ତେଣୁ ଡାୟେରୀରୁ ସେହି କଥା ଗୁଡ଼ିକୁ ଉଦ୍ଧୃତ କରିବା ଯୁକ୍ତିଯୁକ୍ତ ।

ଭୋର ୬ଟା ସମୟରେ ଗୋଡ୍ଷ୍ଟାଡାଲ କେନାଲରେ ଆସି ହାଜର ହୁଏ । ବିମାନ ଘାଟିରେ ଆମେସବୁ ସେନାଧ୍ୟକ୍ଷଙ୍କ ସହିତ ପ୍ରାତଃଭୋଜନ କରୁ । ସାମରିକ ବିଭାଗର ଅଫିସରଗଣ ମୋତେ ନେବାକୁ ଆସିଥିଲେ । ଆମେସବୁ ଯେତେବେଳେ ମଟରରେ ଯାଉଥିଲୁ, ଟ୍ରାକ୍‌ରେ ସୈନ୍ୟଗଣ ସେତେବେଳକୁ ଆସୁଥିଲେ । କଲେଟାରିସ୍ତାନ ଓ ମୁଁ ଗାଡ଼ିରୁ ଝୁଙ୍କିପଡ଼ି ସେମାନଙ୍କୁ ହସ୍ତ ଚାଳନା କରି ଅଭିବାଦନ ଜଣାଉଁ । ପ୍ରଥମରେ ସେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ । ପରେ ଜଣେ ଉଚ୍ଚ କଣ୍ଠରେ ଚିତ୍କାର କରି ଉଠିଲେ, "ଆରେ, ଆମ ଏଲିନର ଆସିଛନ୍ତି ଯେ ।" ମୁଁ ଭାବି ସ୍ଥିର କରି ପାରିଲି ନାହିଁ, ଏ ସମ୍ଭାଷଣରେ ମୁଁ ଲଜ୍ଜିତ ହେବି ନା ସମ୍ମାନିତ ହେବି । ଏମାନେ ସ୍ତ୍ରୀ ଲୋକଙ୍କୁ ଦେଖି ଯେ ଖୁବ ବେଶୀ ଖୁସି ହୋଇଛନ୍ତି, ଏହା ପରିଷ୍କାର ଜଣା ପଡ଼ିଲା । ଆମେସବୁ ମୃଦୁ ହାସ୍ୟ ହସି କରି ସଞ୍ଚାଳନ କରୁ କରୁ ଯାଉଥାଉ । ଅଧ୍ୟକ୍ଷ ମୋ ସହିତ ସୈନ୍ୟମାନଙ୍କର ଏପରି ସହଜ ଓ ଖୋଲଖୋଲି ବ୍ୟବହାର ଦେଖି ସ୍ତମ୍ଭିତ ହୋଇ ଯାଆନ୍ତି । ସେଇଥି ପାଇଁ ଆମେ ସବୁ ଦେଖାଇବାକୁ ଚେଷ୍ଟା କଲୁ ଯେ ମୁଁ ଏହାକୁ ଖୁବ ସମ୍ମାନଜନକ ସମ୍ଭାଷଣ ବୋଲି ମନେ କରୁଛି ।

ଏହି ଦ୍ୱୀପ ଆମ୍ଭମାନଙ୍କ ଅଧୀନକୁ ଆସିବା ପରେ, ଯେଉଁଠାରେ ଯେଉଁ ସବୁ ଉନ୍ନତି ହୋଇଛି, ତାହା ଦେଖେ । ଏହି ଦ୍ୱୀପର ଅପର ପାର୍ଶ୍ୱରେ କେତେକ ଜାପାନୀ ଛପି ରହିଛନ୍ତି ବୋଲି ମନେ ହେଉଥିଲା । ସେତେ-ବେଳେ ବି ବିମାନ ଆକ୍ରମଣ ଚାଲିଥାଏ ।

ଗୋଡ୍ଷ୍ଟାଡାଲ କ୍ୟାନାଲର ଗୋଟିଏ ବିଷୟ ମୁଁ କେଉଁଦିନେହେଲେ ଭୁଲି ପାରିବି ନାହିଁ । ତାହା ହେଉଛି ଏଠାକାର ଶ୍ମଶାନ ଦର୍ଶନ । ଯେଉଁ ଛୋଟ ଗୀର୍ଜାଟିକୁ ଏଠାକାର ଅଧିବାସୀମାନେ ନିର୍ମାଣ କରିଥିଲେ, ସେଇଟିକୁ ସୈନ୍ୟମାନଙ୍କୁ ଛାଡ଼ି ଦିଆ ହୋଇଛି । ସେମାନେ ବେଦୀ ମଧ୍ୟ ପ୍ରସ୍ତୁତ କରିଥିଲେ । ବେଦୀ ଉପରେ କାରୁକାର୍ଯ୍ୟ ବିଶିଷ୍ଟ ପାତ୍ର ମଧ୍ୟ ଥୁଆ ହୋଇ-ଥାଏ । ଗୀର୍ଜାଟିକୁ ସେମାନେ ନାନା ପ୍ରକାର ଦୀପାବଳୀରେ ସୁସଜ୍ଜିତ

କରି ରଖିଥିଲେ । ଏହି ପ୍ରଦୀପ ସବୁର ବିଶେଷ ତାତ୍ପର୍ଯ୍ୟ ସେମାନଙ୍କ ପାଖରେ ଅଛି । ନାନା ଜାତୀୟ ମାଛ ମଧ୍ୟ ଦୀର୍ଘ ଜୀବନର ଓ ଅନନ୍ତର ପ୍ରତୀକ । ଏପରି ଆହୁରି କେତେକଣ ଅଛି । କବର ମଧ୍ୟ ଦେଇ ଯାଉଁ ଯାଉଁ ବିଚଳିତ ହୋଇ ପଡୁଥିଲି । ମନେ ହେଉଥିଲା, ଧର୍ମ ଓ ଐତିହ୍ୟ ମଧ୍ୟରେ ପ୍ରଭେଦ ଥିଲେହେଁ, ଆଜି ସମସ୍ତେ ଏଠାରେ ଏକତ୍ରିତ ହୋଇଛନ୍ତି । ସୈନିକମାନଙ୍କର ବ୍ୟବହାର୍ଯ୍ୟ ପାଗ ବା ଶିରସ୍ତ୍ରାଣ, କେଉଁଠିବା କ୍ରୁସ ଉପରେ ଝୁଲାଇ ଦିଆ ହୋଇଛି । କ୍ରୁସ ଗୁଡ଼ିକରେ ଇହୁଦୀ, କ୍ୟାଥଲିକ ବା ପ୍ରୋଟେଷ୍ଟାଣ୍ଟ ବିଶ୍ୱାସ ଅନୁସାରେ ନାନା ପ୍ରକାରର ପ୍ରତୀକ ବନ୍ଧୁବାନ୍ଧବମାନେ ଖୋଦିତ କରିଛନ୍ତି । ହୃଦୟରୁ ଯେଉଁ କଥା ବାହାରି ପଡ଼ିଛି, ସେହିସବୁ କଥା କବର ଉପରେ ମଧ୍ୟ ଖୋଦିତ ହୋଇଛି । "ସେ ଥିଲେ ଭାରି ଚମତ୍କାର ଲୋକ ।" "ଏପରି ସଙ୍ଗୀ ଆଉ ହୁଏନାହିଁ"—ଏପରି ସବୁ ବହୁକଥା ।

ଶ୍ମଶାନଟି ସୁନ୍ଦର ଭାବରେ ସୁରକ୍ଷିତ । ସମାଧି ଉପରେ ପତାକା ଫର ଫର ହୋଇ ଉଡୁଥାଏ । ଶୀର୍ଷ୍ଠାରେ ଧର୍ମଯାଜକ ମୋତେ କହନ୍ତି ଯେ ସେ ଫଟ ଉଠାଇ ମୃତବ୍ୟକ୍ତିର ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ନିକଟକୁ ପଠାଇ ଦେଇଛନ୍ତି ।

ହଂସପାତାଳ ଓ ଶ୍ମଶାନ ଏହି ସ୍ଥାନ ଦୁଇଟି ମୋ ମନରେ ଗୁନ୍ଥିହୋଇ ରହିଛି । ଶିକ୍ଷାନବିଶ ସୁସ୍ଥ ସବଳ ସୈନ୍ୟମାନଙ୍କ ସହିତ କଥାବାର୍ତ୍ତା ବେଳେ ଏ କଥାହିଁ ମୁଁ ଭାବିଥିଲି । ଗୋଷ୍ଟାଡେଲ କ୍ୟାନାଲ ଓ ଅନ୍ୟାନ୍ୟ ସ୍ଥାନରେ ବୁଲିଲା ବେଳେ ମନେ ମନେ ମାନବିକତା ବୋଧ ବୃଦ୍ଧି ପାଇଁ ଅନବରତ ପ୍ରାର୍ଥନା କରିଛି । ଭବିଷ୍ୟତକୁ ବିବାଦ ମେଣ୍ଟାଇବା କାର୍ଯ୍ୟରେ ଆମ୍ଭମାନଙ୍କୁ ଯେପରି ଶକ୍ତିର ପ୍ରୟୋଗ କରିବାକୁ ନ ହୁଏ । ହାଓଯ୍ୟାଇରୁ ପୁନର୍ବାର ଖ୍ରୀଷ୍ଟମାସ ଦ୍ୱୀପ ବାଟଦେଇ ଫେରିଆସେ । ମୋର ନିର୍ଦ୍ଧାରିତ ଯାତ୍ରା ପଥରେ ସେତେବେଳକୁ ଆକ୍ରମଣ ଚାଲୁଥାଏ । ସେ ବାଟରେ ଯିବା ନିରାପଦ ନୁହେଁ ବୋଲି ଏ ବ୍ୟବସ୍ଥା ହୁଏ । ଖ୍ରୀଷ୍ଟମାସ ଦ୍ୱୀପରେ ଖୁବ

କମ ସମୟ ରହେ । ଗୋଟିଏମାନ ସୈନିକଙ୍କୁ ଦେଖିବାକୁ ଯାଇଥିଲି । ଡାକ୍ତର ତାଙ୍କ ସମ୍ବନ୍ଧରେ ଉଦ୍‌ଗ୍ରୀବ ହୋଇ ପଡ଼ିଥିଲେ । ହଂସପାତାଳରେ ତାଙ୍କୁ ଦେଇ ଶପଥ କରାଏ । ଯେବେ ଫେର ତା ମା ସାଙ୍ଗରେ ଦେଖା-କରେ, ତାହେଲେ ଯାଇଁ ସେ ଆରୋଗ୍ୟ ଲାଭ କରିବା ପାଇଁ ଯଥା ସାଧ୍ୟ ଚେଷ୍ଟା କରିବ । ମୁଁ ମା ସାଙ୍ଗରେ ଦେଖା ବି କରିଥିଲି । ଭାଗ୍ୟ ଭଲ ଯେ ପିଲାଟି ଆରୋଗ୍ୟ ଲାଭ କରିଥିଲା । ସେ ଯୁକ୍ତରାଷ୍ଟ୍ରକୁ ଫେରି ଆସିଲା ପରେ ମୋ ସହିତ ଦେଖା କରିବାକୁ ଆସିଥିଲା ।

ଏଥର ମୁଁ ଘରକୁ ଫେରି ଆକାଶ ପଥରେ ବାହାରିଲି । ମୋ ସ୍ଵାମୀଙ୍କ ଦ୍ୱାରା ... ବିମାନ ଘାଟିର ସ୍ଥାୟୀ ହୋଇ ରହିଛି । ଆମେ ସବୁ ବିମାନରେ ବସିରହୁ । ବାହାରରୁ ପବନ ଆସିବା ବାଟକୁ ବନ୍ଦ କରି ଦିଆହୁଏ । ନାନା ପରିଶୋଧକ ଦ୍ରବ୍ୟ ଦ୍ୱାରା ଆମ୍ଭମାନଙ୍କୁ ଶୁଦ୍ଧ କରାହୁଏ ।

ମୁଁ ହାଓୟାଇ, ଖ୍ରୀଷ୍ଟମାସ ଦ୍ୱୀପ; ପେନେରିନ ଦ୍ୱୀପ, ବୋରା-ବୋରା, ଆଇଟୁ ଟାକି, ଟୁଟାଇଲା, ସାମୋୟା, ଫିଜି, ନିଉକ୍ୟାଲେଡୋନିୟା, ନିଉଜି-ଲାଣ୍ଡର ଅକ୍‌ଲାଣ୍ଡ, ଓ୍ୱେଲିଂଟନ, ରୋଟୋରୁଆ. ଅଷ୍ଟ୍ରେଲିୟାର ସିଡ୍‌ନୀ, କ୍ୟାନବେରା, ମେଲବୋର୍ଣ୍ଣ, ରକ୍‌ହାମ୍ପଟନ, କେଓ୍ୱର୍ଣ୍ଣସ, ବ୍ରିଜବେନ, ଏଫେଟ୍ ଏସ୍ପିରିଟସାନ୍‌ଟୋ, ଗୋୟାଡାଲ କ୍ୟାନାଲ୍ ଓ ଓ୍ୟାଲିସ୍ ବୁଲି ଆସିଲି ।

ଦ୍ୱିତୀୟ ଥର ପାଇଁ ସାମରିକ ଇଲାକାରେ ମୋର ଶଫର ଶେଷହୁଏ । ୧୯୪୩ ମସିହା ହେମନ୍ତ ଋତୁରେ ନଭେମ୍ବର ୯ ତାରିଖରେ ହ୍ୱାଇଟ ହାଉ-ସର ପୂର୍ବ ହଲରେ ଗୋଟିଏ ଉତ୍ସବ ହୁଏ । ମୋ ସ୍ୱାମୀ ସେଦିନ ଆନନ୍ଦରେ ଥିଲେ । ସେ ବିଶେଷ ଘଟଣା ଗୁଡ଼ିକୁ ନାଟକୀୟ ଭଙ୍ଗୀରେ ପରିଷ୍କୁଟ କରିବା ପାଇଁ ଚାହୁଁଥିଲେ । ୪୪ଟି ଜାତି ସମ୍ମିଳିତ ଜାତି ପୁନର୍ବସତି ସାହାଯ୍ୟ ଓ ପୁନର୍ବସତି ଚୁକ୍ତିରେ ସ୍ୱାକ୍ଷର କରିବା ଦିନଟି ଖୁବ ଘନଘଟାରେ ସମ୍ପୂର୍ଣ୍ଣ ହେବ ବୋଲି ଆଶା କରିଥିଲେ । ମୁଁ ମଧ୍ୟ ଏହି ବିରାଟ ପ୍ରତିଷ୍ଠାନର ସେଦିନର ସୂଚନା ଦେଖିବା ସୌଭାଗ୍ୟ ପାଇ ଖୁବ ଆନନ୍ଦିତ ହୁଏ ।

ଏହି ପ୍ରତିଷ୍ଠାନଟି ଉଠିଯିବା ଆଗରୁ ବହୁ ଲୋକଙ୍କୁ ସାହାଯ୍ୟ କରିଥିଲା । ଏହାର ପ୍ରଥମ କାର୍ଯ୍ୟାଧ୍ୟକ୍ଷ ଥିଲେ ନ୍ୟୁଇୟର୍କର ଭୂତପୂର୍ବ ଗଭର୍ଣ୍ଣର ହାରବାର୍ଟ, ଏଇଚ. ଲେମ୍ୟାନ । ଏକାଠି ବହୁବର୍ଷ କାମ କରିଥିଲେ ବୋଲି ତାଙ୍କ କର୍ମଠତା ଉପରେ ଫ୍ରାଂକଲିନଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ।

ମିଷ୍ଟର ଲେମ୍ୟାନ ଯେପରି ଭାବରେ ତାଙ୍କର ପ୍ରତିଷ୍ଠାନଟିକୁ ଗଢ଼ି ପାରିଥିଲେ ଓ କାର୍ଯ୍ୟ ଚଳାଇ ପାରିଥିଲେ, ତାକୁ ଦେଖିଲେ ସେ ଯେ ଜଣେ ଭଲ ସଂଗଠକ, ଏହା ପ୍ରତୀୟମାନ ହେଉଥିଲା । ବାଇବେଲର ଜବ୍‌ଙ୍କ ଭଳି ଥିଲା ତାଙ୍କର ସହିଷ୍ଣୁତା । ନଭେମ୍ବର ୧୧ ତାରିଖରେ ଫ୍ରାଂକଲିନ ତାଙ୍କର ଦ୍ୱିତୀୟ ସମରକାଳୀନ ପରିଭ୍ରମଣରେ ବାହାରନ୍ତି । କାଇରୋରେ ତାଙ୍କର ଜେନେରାଲୀ ସୀମ ଓ ମାଦାମ ଚିୟାଂକାଇସାକ୍‌ଙ୍କ ସାଙ୍ଗରେ ଦେଖା କରିବାର କଥା । ଜେନେରାଲ ସୀମୋଙ୍କ ସହିତ ଏହି ତାଙ୍କର ପ୍ରଥମ ସାକ୍ଷାତ୍ । ମାଦାମ ଚିୟାଂ ଦୋଭାଷୀର କାର୍ଯ୍ୟ ପରିଚାଳନା କରିବେ । ମିଷ୍ଟର ଚର୍ଚ୍ଚିଲ ମଧ୍ୟ କାଇରୋରେ ଫ୍ରାଂକଲିନଙ୍କ ସହିତ ଦେଖା କରନ୍ତି । ଆଲାପ ଆଲୋଚନା ସୁଷ୍ଠୁ ଭାବରେ ଚଳେ ।

ଇଉ, ଏସ, ଏସ, ଆର ସେତେବେଳେ ବି ଯୁଦ୍ଧରେ ଜାପାନୀମାନଙ୍କ ବିରୁଦ୍ଧରେ ଅବତୀର୍ଣ୍ଣ ହୋଇ ନଥିଲେ ବୋଲି ମାରଶାଲ ଷ୍ଟାଲିନ୍ ଚୀନ ସର-କାରଙ୍କ ପ୍ରଧାନଙ୍କ ସହିତ ଦେଖା କରିବା ପାଇଁ ରାଜି ନଥିଲେ । ସେଇଥିଯୋଗୁଁ କାଇରୋଠାରେ ଆଲାପ ଆଲୋଚନା ଶେଷ ହେବା ପରେ ମିଷ୍ଟର ଚର୍ଚ୍ଚିଲ ଓ ଫ୍ରାଙ୍କଲିନ୍ ତେହେରାନକୁ ମାର୍ଶାଲ୍ ଷ୍ଟାଲିନଙ୍କ ସହିତ ସାକ୍ଷାତ କରିବା ପାଇଁ ଯାଆନ୍ତି । ମୋ ସ୍ୱାମୀଙ୍କ ସହିତ ମାର୍ଶାଲ ଷ୍ଟାଲିନଙ୍କର ଏହି ପ୍ରଥମ ସାକ୍ଷାତ । ଫ୍ରାଙ୍କଲିନ୍ ଏହି ଦୃଢ଼ ଆଶା ନେଇ ଯାଇଥିଲେ ଯେ ଯଦି ସମ୍ଭବ ହୁଏ, ତାହେଲେ ସେମାନଙ୍କ ମଧ୍ୟରେ ଖୁବ ଭଲ ସମ୍ବନ୍ଧ ସୁପ୍ରତିଷ୍ଠିତ ହେବ ଓ ପରସ୍ପର ପରସ୍ପରକୁ ବୁଝିବାର ସୁଯୋଗ ହେବ । ଭ୍ରମଣ ଆଗରୁ ସେ ମାର୍ଶାଲଙ୍କ ସହିତ ସାକ୍ଷାତ ବ୍ୟାପାରରେ ଖୁବ କୌତୁହଳୀ ହୋଇ ଉଠିଥିଲେ । ତାଙ୍କର ମନେ ହୋଇଥିଲା ଏ ଗୋଟିଏ ଆହ୍ୱାନ

ଏକା । କାରଣ ଇଉ, ଏସ, ଏସ, ଆରର ସରକାରୀ ପ୍ରତିନିଧିଗଣ ଯେ କିପରି ସନ୍ଦିଗ୍ଧଚିତ୍ତ, ତାହା ସେ ଭଲକରି ଜାଣିଥିଲେ । ଷ୍ଟାଲିନ୍ ନିଜେ ରୁଷବାହିନୀ ଓ ତାର ସମର କୌଶଳର ସମସ୍ତ ଦାୟିତ୍ୱ ନିଜେ ନେଇ-ଥିଲେ ବୋଲି ମାର୍ଶାଲ ନିଜ ଦେଶ ଛାଡ଼ିହେଉନାକୁ ବେଶୀ ଦୂରକୁ ଯିବା ପାଇଁ ରାଜି ହେଲେନାହିଁ । ଅନିଚ୍ଛା ସତ୍ତ୍ୱେ, ଫ୍ରାଙ୍କଲିନ ଷ୍ଟାଲିନଙ୍କର ଏହି ସିଦ୍ଧାନ୍ତ ମାନି ନିଅନ୍ତି । ତାଙ୍କର ଇଚ୍ଛାଥିଲା ସେ ଷ୍ଟାଲିନଙ୍କର ବିଶ୍ୱାସ ଭାଜନ ହେବାପାଇଁ ଯଥାସାଧ୍ୟ ଚେଷ୍ଟା କରିବେ । ଯଦି ସମ୍ଭବ ହୁଏ, ତେବେ ଆମ ଦୁଇ ସରକାରଙ୍କ ମଧ୍ୟରେ ଆଗଠାରୁ ଭଲ ସମ୍ବନ୍ଧ ସୁପ୍ରତିଷ୍ଠିତ ହେବ । ପରେ ସ୍ୱାମୀ କହିଥିଲେ ଯେ, ପ୍ରଥମରେ ଦେଖା ହେଲାକ୍ଷଣି ସେ ବୁଝି ପାରିଥିଲେ ଯେ ମାର୍ଶାଲ ଷ୍ଟାଲିନଙ୍କ ମନ ମଧ୍ୟରେ ଖୁବ ଅବିଶ୍ୱାସର ଭାବ ରହିଛି । ସେ ଯେତେବେଳେ ଚାଲିଆସନ୍ତି, ସେ ବୁଝିପାରି ନଥିଲେ ସେଥିରୁ କିଛି ସେ ଦୂରକରି ପାରିଛନ୍ତି କି ନା । ସେ ଏହା ମଧ୍ୟ କହିଥିଲେ ଯେ ଆମେ ଆମର ପ୍ରତିଜ୍ଞା ପ୍ରତି ଅକ୍ଷରେ ଅକ୍ଷରେ ପାଳନ କରିବାରେ କୃତକାର୍ଯ୍ୟ ହୋଇ ପାରିଛୁ । ଗ୍ରେଟ ବ୍ରିଟେନ୍ ମଧ୍ୟ ସେଇଆ କରିବ ବୋଲି ସେ ଆଶା କରନ୍ତି । ଯଦ୍ଦ୍ୱାରା ସେମାନେ ସେଇଆ କରନ୍ତି, ସେହି ଚେଷ୍ଟାହିଁ ସେ କରିବେ । ସେ ବୁଝି ପାରିଥିଲେ ଯେ ଆମ୍ଭମାନଙ୍କ ପ୍ରତିଜ୍ଞା ରକ୍ଷାକରି ପାରିଲେ ଆମେ ସବୁ ନେତାଙ୍କ ବିଶ୍ୱାସ ଭାଜନ ହୋଇ ପାରିବା । ତାଙ୍କର ଜାତି ଆମ୍ଭମାନଙ୍କ ସଙ୍ଗରେ ଯୋଗଦେଇ ଆମ ତରଫରୁ ଯୁଦ୍ଧ କରିଲେ ବି ସେମାନେ ଆମ୍ଭମାନଙ୍କୁ ପୂର୍ଣ୍ଣ ବିଶ୍ୱାସ କରୁନଥିଲେ । ଆମ୍ଭମାନଙ୍କର ଯେଉଁ ବିରାଟ ଉତ୍ପାଦନ ଶକ୍ତି ଅଛି, ତାହାରି ବଳରେ ଆମେ ଇଉ, ଏସ, ଏସ, ଆରକୁ ସେମାନଙ୍କର ଯାହା କିଛି ପ୍ରୟୋଜନ ତାହା ଦେଇଦେବୁ । ଆମ୍ଭେମାନେ ଏଇଥିପାଇଁ ସେମାନଙ୍କ ନିକଟରେ କୃତଜ୍ଞ ଯେ, ଇଉ, ଏସ, ଏସ, ଆର ଯୁଦ୍ଧରେ ବହୁ ଜାର୍ମାନୀ ବାହିନୀ ନିୟୁକ୍ତ ହୋଇଛନ୍ତି । ମୋ ସ୍ୱାମୀ ଷ୍ଟାଲିନ୍‌ଙ୍କ ସହିତ ପ୍ରଥମ ସାକ୍ଷାତରେ ଖୁବ ଉପଭୋଗହିଁ କରିଥିଲେ । ତାଙ୍କ ନିଜ ମତକୁ ଟାଣି ଆଣିବା ପାଇଁ କୌଣସି ନୂତନ ଲୋକର ସାକ୍ଷାତ

ତାଙ୍କ ନିକଟରେ ଦ୍ୱନ୍ଦ୍ୱଯୁଦ୍ଧ ବୋଲି ମନେ ହେଉଥିଲା । ଅଧିକନ୍ତୁ ଏ ସାକ୍ଷାତ କଥା ସ୍ୱତନ୍ତ୍ର । ଫେରିଆସି ସେ ତାଙ୍କ କଥା ଖୁବ ସମ୍ଭ୍ରମତାର ସହିତ କହୁଥିଲେ । ଷ୍ଟାଲିନ ଲୋକଟି ଦେଖିବାକୁ ବାଙ୍ଗରିଆ । ଦେହ ଗଠନ ପ୍ରଣାଳୀ ବଳିଷ୍ଠ । ସେ ଯେ କୌଣସି ସାଧାରଣ ଲୋକଙ୍କ ଠାରୁ ଢେର ବଡ ବୋଲି ନିଜକୁ ଭାବନ୍ତି ।

ଏହି ସାକ୍ଷାତକାର ପରେ ଫ୍ରାଙ୍କଲିନ୍ ସବୁବେଳେ ରୁଷ ନେତାଙ୍କ ଭୋଜି କଥା ଗପ କରନ୍ତି । ବହୁ ଅର୍ଥ ବ୍ୟୟ କରି ଭୋଜି ଦିଆ ହୋଇଥିଲା । ଖାଦ୍ୟ ଓ ମଦର ପରିମାଣ ଦେଖି ସେ ଅବାକ୍ ହୋଇଥିଲେ । ଫ୍ରାଙ୍କଲିନ ଡିସେମ୍ବର ୧୭ ତାରିଖରେ ଖୁବ ଆପ୍ୟାୟିତ ହୋଇ ଘରକୁ ଫେରି ଆସି-ଥିଲେ । ମନ ତାଙ୍କର କୌତୁହଳୀରେ ଭରପୂର । ସ୍ୱାସ୍ଥ୍ୟ ଉନ୍ନତି ଲାଭ କରିଥିଲା । ସବୁ ବିଷୟରେ ତାଙ୍କର ଜିଦ୍‌ଗ୍ରୀବ ଓ କୌତୁହଳ ଥିଲା । ସେଇହେତୁ ପ୍ରଥଥର ଭ୍ରମଣରେ ଏପରି ଭଲ ଫଳ ଫଳୁଥିଲା ।

୧୯୪୩-୪୪ ମସିହାର ସମସ୍ତ ଶୀତକାଳ ଯାକ ମୋ ସ୍ୱାମୀ ମୃଦୁଜ୍ୱରରେ ଭୋଗୁଥିଲେ । ଆମ୍ଭମାନଙ୍କର ଯେତେଦୂର ମନେ ହେଉଥିଲା, ଗରମରେ ବୁଲିଲା ବେଳେ ଓଡ଼ିଶ କାମୁଡ଼ା ଜନିତ ବୋଧହୁଏ ଏହି ଜ୍ୱର ହୋଇଛି କିମ୍ବା ଏହି ଜ୍ୱର ହାଇଡ ପାର୍କର ଗୋରୁମାନଙ୍କ ଠାରୁ ଆସିଛି । ଏହା ଗୋଟିଏ ଭୁଲ ଧାରଣା । ଯେତେବେଳେ ଲକ୍ଷଣ ଦେଖି କିଛି ଧରି ନହେଲା ସେତେବେଳେ ସବୁ ପ୍ରକାରର ଭାବନା ହେବା ସ୍ୱାଭାବିକ । ଫ୍ରାଂକଲିନ ମଧ୍ୟ ଖୁବ ନିସ୍ତେଜ ହୋଇ ପଡ଼ନ୍ତି । ଏହା ବିଚିତ୍ର ମଧ୍ୟ ନୁହେଁ । କେଇବର୍ଷ ଧରି ତାଙ୍କୁ ଖୁବ ଅତିରିକ୍ତ ପରିଶ୍ରମ କରିବାକୁ ହୋଇଛି । ଶେଷକୁ ୯ ଅପ୍ରେଲରେ ସେ ଠିକ କଲେ ଦକ୍ଷିଣ କ୍ୟାଲିଫୋରନିଆର ଜର୍ଜଟାଉନରେ ବାର୍ଣ୍ଣାଡ ବାରୁକଙ୍କର ହବକାଉ ନାମରେ ଯେଉଁ ବଗିଚା ଅଛି ସେଠାକୁ ସେ ଯିବେ । ମିଷ୍ଟାର ବାରୁକ ତାଙ୍କ ସହିତ ଗୃହର ବାକରିଙ୍କ ଦେଖି ଆସିବାକୁ କହିଥିଲେ ।

ହବକାଉ ସ୍ଥାନଟି ଫ୍ରାଂକଲିନଙ୍କପାଇଁ ଉପଯୁକ୍ତ ଥିଲା । ସେ ଏହି ଗ୍ରାମାଞ୍ଚଳ ଜୀବନଧାରଣ ପ୍ରଣାଳୀକୁ ଖୁବ ଭଲ ପାଉଥିଲେ । ପ୍ରାୟ ମାସେଖଣ୍ଡେ ସେ ସେଠାରେ କଟାନ୍ତି । ଦିନେ ଆମ ଓ ମୁଁ ଲଞ୍ଚ ଖାଇଲା-ବେଳେ ଇଉରୋପ୍ଲେନରେ ଅଷ୍ଟ୍ରେଲିଆର ପ୍ରଧାନ ମନ୍ତ୍ରୀ ଓ ତାଙ୍କର ସ୍ତ୍ରୀ ମିଷ୍ଟାର ଓ ମିସେସ୍ କାର୍ଟିନଙ୍କୁ ନେଇଯାଇ । ଘରକୁ ଫେରିଲା ବେଳେ ମନେହେଲା, ଏହାଠାରୁ ଫ୍ରାଂକଲିନଙ୍କ ପକ୍ଷରେ ଆଉ କିଛି ଭଲ ହୋଇ ନପାରେ । ଏହି ଅବସ୍ଥା ହେତୁ ମିଷ୍ଟାର ବାରୁଜଙ୍କ ପାଖରେ ମୁଁ ଚିର କୃତଜ୍ଞ ।

୧୯୪୪ ମସିହାର ୬ ତାରିଖ ଜୁନ ଗୋଟିଏ ବିଶେଷ ଦିନ । ବହୁ ଦିନଧରି ଆକ୍ରମଣର ତୋଡ଼ଜୋଡ଼ କଥା ଶୁଣିଥିଲି । ହେଲେ ସବୁକଥା ଗୋପନରେ ରଖା ହୋଇଥିଲା । ଯଥା ସମୟରେ ଫ୍ରାଂକଲିନ ବେତାରରେ ଡ଼ି-ଡେର୍ ପ୍ରାର୍ଥନା ଜଣାନ୍ତି । ଆକ୍ରମଣକାରୀ—ଉପକୂଳ ସୈନିକମାନଙ୍କ ନିକଟରେ ମନ ଲାଗି ରହିଥାଏ । ଧୀରେ ଧୀରେ ଖବର ଆସି ପହଞ୍ଚେ । ବହୁ ପରିବାରଙ୍କର ଚିର ବିଦାୟ ଦୁଃଖ ଘୋଟି ଆସିଲା । ତଥାପି ଯେତେ-ବେଳେ ଆମ ସୈନ୍ୟସବୁ ଉପକୂଳରେ ଅବତରଣ କରି ପାରିଛନ୍ତି ଖବର ଶୁଣେ ଓ ଆହୁରି ଶୁଣେ ଇଉରୋପରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଛି, ସେତେବେଳେ ଗୋଟିଏ ବିରାଟ ଆଶ୍ୱସ୍ତି ମନ ମଧ୍ୟରେ ଦେଖାଦେଲା ।

୧୯୦୪ ମସିହାର ବସନ୍ତ କାଳରେ ଆଉ ଗୋଟିଏ ପ୍ରେସିଡେଣ୍ଟ ନିର୍ବାଚନ ବ୍ୟାପାର ଘେନେଇ ଆସେ । କାହାରିକୁ ନ ପଚାରି ସ୍ୱତଃହିଁ ଜାଣି-ଥିଲି, ଯୁଦ୍ଧ ଚାଲିବା ଯାଏ ଫ୍ରାଂକଲିନ ଯଦି ସୁସ୍ଥ ରହନ୍ତି, ତାହେଲେ ସେ ନିଶ୍ଚୟ ନିର୍ବାଚନରେ ଠିଆହେବେ । ଏ ସିଦ୍ଧାନ୍ତ ଚୂଡ଼ାନ୍ତ ବୋଲି କହିଲେ ଚଳେ । ବହୁ ଡାକ୍ତରଙ୍କୁ ଡକାହୁଏ । ସେମାନେ ପୁଙ୍ଖାନୁପୁଙ୍ଖ ରୂପରେ ତାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରିବାକୁ ଲାଗିଲେ । ଅନ୍ୟ ଲୋକ ହାତରେ କାମ ଦେବାଟା ଖୁବ କଠିନ ବ୍ୟାପାର ବୋଧ ହେଉଥିବାରୁ ଏହା ଠିକହେଲା ଯେ ଡାକ୍ତରମାନଙ୍କ କଥା ମୁତାବକ ଚାଲିଲେ ତାଙ୍କୁ କାମ କରିବାକୁ ଦିଆଯିବ ।

ମୋ ମନେହୁଏ, ଆମେସବୁ ଜାଣିଥିଲୁ ଫ୍ରାଂକଲିନ ମୋଟେ ସୁସ୍ଥ ନଥିଲେ । ଏ ସମ୍ବନ୍ଧରେ କେହି ମତାମତ ପ୍ରକାଶ କରିନଥିଲୁ । କାରଣ ଆମେସବୁ ଜାଣୁଥିଲୁ ସେ ଯଦି ମନେ କରନ୍ତି ଯେ ତାଙ୍କର ସେହି ପଦରେ ଅଧିଷ୍ଠିତ ହୋଇ ରହିବା ଏକାନ୍ତ କର୍ତ୍ତବ୍ୟ, ତାହେଲେ ଆମ୍ଭମାନଙ୍କର ଉଚିତ୍—ସେ ଯେପରି ସ୍ୱୀୟ କାର୍ଯ୍ୟ ଅନାୟାସରେ କରି ପାରନ୍ତି ତାହାର ବ୍ୟବସ୍ଥା କରିବା ।

ଜୁଲାଇ ୧୫ ତାରିଖ ଠାରୁ ଅଗଷ୍ଟ ୧୭ ତାରିଖ ଯାଏ ଫ୍ରାଂକଲିନ ପ୍ରଶାନ୍ତ ମହାସାଗରର ଅଞ୍ଚଳ ସମୂହ ପରିଭ୍ରମଣ କରନ୍ତି । ସେ ବହୁଥର ଇଂରେଜର ଅଧିକାରଭୁକ୍ତ ଅଞ୍ଚଳ ସମୂହକୁ ଯାଆନ୍ତି । ଏଥର ସେ ଏହି ଅଞ୍ଚଳର ଅଫିସରମାନଙ୍କ ସହିତ ଯୋଗାଯୋଗ ସ୍ଥାପନ ଓ ସମର ପରିକଳ୍ପନା ବିଷୟଗୁଡ଼ିକ ଜାଣିବାକୁ ଚାହୁଁଥିଲେ । ତେଣୁ ହାୱାଇ ଦ୍ୱୀପରେ ବୈଠକର ଗୋଟିଏ ବ୍ୟବସ୍ଥା ହୁଏ । ସେଠାରୁ ସେ ଯାଆନ୍ତି ଆଲସ୍କା ଓ ଆଲିଉସିଏନ ଦ୍ୱୀପପୁଞ୍ଜକୁ ।

ସେପ୍ଟେମ୍ବର ୧୦ ତାରିଖରେ ଆମେସବୁ ଆଉ ଗୋଟିଏ ଯୁକ୍ତ-ବୈଠକରେ ଯୋଗ ଦେବାକୁ କୋଏବେକ୍‌କୁ ଯାଉ । ମିସେସ୍ ଚର୍ଚ୍ଚିଲ ସେଠାରେ ତାଙ୍କ ସ୍ୱାମୀଙ୍କ ସହିତ ଉପସ୍ଥିତ ରହିବେ ବୋଲି ଫ୍ରାଂକଲିନ ମୋତେ ଯିବାକୁ କହନ୍ତି ।

୧୮ ତାରିଖରେ ଫ୍ରାଙ୍କଲିନ୍ ମିସେସ ଚର୍ଚ୍ଚିଲଙ୍କୁ ନେଇ ହାଇଡ ପାର୍କକୁ ଫେରି ଆସନ୍ତି । ସେଠାରେ ଅଳ୍ପ ସମୟ ପାଇଁ ବିଶ୍ରାମର ବ୍ୟବସ୍ଥା ହୁଏ । କାରଣ ୧୯୪୪ ମସିହାର ନିର୍ବାଚନୀ ଅଭିଯାନ ଆରମ୍ଭ ହେବାକୁ ଯାଉଛି ।

ଫ୍ରାଂକଲିନ ଓ୍ୱାଶିଂଟନରେ ଟିମଷ୍ଟାର ଇଉନିୟନ ଡିନାରରେ ନିର୍ବାଚନୀ ଅଭିଯାନର ଉଦ୍‌ବୋଧନ କରନ୍ତି । ସେହି ଡିନାର ପରେ ଅଭିଯାନ ସୁରୁହୁଏ । ମୁଁ ସେତେବେଳେ ଏପରି କେତେ ଗୁଡ଼ିଏ କାର୍ଯ୍ୟ ନେଇ ବ୍ୟସ୍ତ, ଯାହା ସଙ୍ଗରେ ଅଭିଯାନର କୌଣସି ସମ୍ପର୍କ ନାହିଁ । ଅକ୍‌ଟୋବର ୪ ତାରିଖ ଓ ୫ ତାରିଖରେ ହ୍ୱାଇଟ ହାଉସରେ ଗୋଟିଏ ଗ୍ରାମ୍ୟ ଶିକ୍ଷା ସମ୍ମେଳନ ହୁଏ ।

ମୋ ଜନ୍ମଦିନ ପରେ ମୁଁ ମଝିରେ ମଝିରେ ରେଡକ୍ରସର ବ୍ଲାଡ୍‌ବ୍ୟାଙ୍କକୁ ରକ୍ତଦାନ କରିବାକୁ ଯାଏ । ସେଠାକାର ଭାରପ୍ରାପ୍ତ ତରୁଣୀ ମହିଳା ଜଣକ ହତଭମ୍ବ ହୋଇ ପଡନ୍ତି ! କାରଣ ମୁଁ ସେତେବେଳକୁ ୬° ବର୍ଷ ଅତିକ୍ରମ କରିଛି । ୬° ବର୍ଷରୁ ବେଶୀ ବୟସ୍କ ଲୋକଙ୍କର ରକ୍ତ ଦେବାର କଥାନୁହେଁ । ମୁଁ ଟିକିଏ ରାଗି ଉଠିଲି । ବୁଝି ପାରିଲି ନାହିଁ ଯେ, ଏହି କେତେସପ୍ତାହ ମଧ୍ୟରେ ମୋ ରକ୍ତରେ କପରି ପରିବର୍ତ୍ତନ ହେଲା । ତଥାପି ଏହା ବୁଝିଲି ଯେ, ରକ୍ତ ଦେବାପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ବୟସ ଥିବା ଦରକାର । ମୋର ମନେହେଲା ଏଥର ୧୯୦୪ ମସିହା ଅଗଷ୍ଟ ୧୧ ତାରିଖରେ ମୁଁ ପ୍ରୌଢ଼ତ୍ୱ ଅତିକ୍ରମ କରି ବୃଦ୍ଧତ୍ୱରେ ପଦାର୍ପଣ କରିଛି ।

ଡାକ୍ତର ମ୍ୟାକଇନ୍‌ଟାୟାର ଏହି ପ୍ରେସିଡେଣ୍ଟ ଅଭିଯାନ ସମ୍ବନ୍ଧରେ ଆଶଙ୍କାହିଁ କରିଥିଲେ । ହେଲେ, ହେମନ୍ତର ପ୍ରାରମ୍ଭରେ ମୁଁ କହିଲି ଫ୍ରାଙ୍କଲିନ୍ ଜନସାଧାରଣଙ୍କ ସହିତ ମିଳାମିଶି କାମକଲେ ବଳ ସଞ୍ଚୟ କରି ପାରିବେ । ନିଉୟର୍କ ସହରକୁ ଯେଉଁଦିନ ଯାଏ, ଫ୍ରାଂକଲିନ ମୋର ଧାରଣା ଠିକ୍ ବୋଲି ପ୍ରଶଂସା କରିଥିଲେ । ଅଭିଯାନର ପ୍ରାରମ୍ଭରେ ଯାହାଥିଲେ, ତାହା-ଠାରୁ ସେଠାରେ ଭଲହିଁ ଥିଲେ ।

ଅକ୍‌ଟୋବର ୨୧ ତାରିଖରେ ଫ୍ରାଂକଲିନ ପରରାଷ୍ଟ୍ରନୀତି ସଙ୍ଘ ଭୋଜନ ସଭାରେ ବକ୍ତୃତା ଦିଅନ୍ତି । ପରେ ଶୁଣିବାକୁ ପାଏ ସେଠାରେ କାହାର କାହାର ମନେ ହୋଇଥିଲା, ସେ ଅସୁସ୍ଥ ହୋଇ ପଡ଼ିବେ ବୋଲି । ସେ କ୍ଳାନ୍ତ ହୋଇ ପଡ଼ିଥିଲେ ବୋଲି ମୁଁ ମୋଟେ ଅବାକ ହୋଇନାହିଁ । ନିର୍ବାଚନ ପାଇଁ ହାଇଡ ପାର୍କକୁ ଯାଉଁ । ଫଳାଫଳରୁ ଜଣା ପଡ଼ିଲା, ପ୍ରକୃତରେ ସେ ନିର୍ବାଚିତ ହୋଇଛନ୍ତି । ଆମ ପ୍ରତିବେଶୀ ସବୁ ଆଗ ଯେପରି ସମ୍ଭାଷଣ କରିବାକୁ ଆସୁ-ଥିଲେ ଏଥର ବି ସେପରି ଆସୁଛନ୍ତି । ସେ ମଧ୍ୟ ବାରଣ୍ଡାକୁ ଯାଇ ସେମାନଙ୍କୁ ସମ୍ବର୍ଦ୍ଧନା ଜଣାନ୍ତି ।

ଥ୍ୟାଙ୍କସ୍ ଗିଭିଂ ଉତ୍ସବରେ ଫ୍ରାଂକଲିନ ଓ୍ୟାର୍ମସ୍ପ୍ରିଂକୁ ଯାଆନ୍ତି । ସେଠାରେ ପ୍ରାୟ ତିନି ସପ୍ତାହ ସେ କଟାନ୍ତି । ଯେତେବେଳେ ସେ ସେଠାକୁ

ଯିବାର ସମସ୍ତ ପାଉଥିଲେ, ମୁଁ ଖୁସୀ ହେଉଥିଲି । ରୋଗୀମାନଙ୍କ ସାଙ୍ଗରେ ମିଶି ସେ ଖୁବ ଆନନ୍ଦ ପାଉଥିଲେ । ରୋଗୀ ଯେବେ ଅଳ୍ପ ବୟସର ହୁଏ, ତାହେଲେ କଥେବା'ର । ମନେହୁଏ ଯେଉଁମାନେ ତାଙ୍କ-ଭଳି ଭୋଗୁଛନ୍ତି, ସେମାନଙ୍କ ପାଇଁ ସେ ଯେ କିଛି କରିଛନ୍ତି, ଓ୍ୟାର୍ମସ୍ପ୍ରିଂ ତାହାର ପ୍ରତୀକ ହୋଇ ଉଠିଥିଲା ।

ଏଥର ଆମେ ବଡ଼ ଦିନରେ ହାଇଡ ପାର୍କକୁ ଯାଉଁ । ତାର କିଛି ପରେ ଫ୍ରାଂକଲିନ ଇଯାଲଟା ଭ୍ରମଣର ଆୟୋଜନ କରନ୍ତି । ସେ ଏତେ ବ୍ୟସ୍ତ ଥିଲେ ଯେ, ସେ ବଡ଼ ଦିନର ଉପହାର ସବୁକୁ ଖୋଲିବାର ସୁଯୋଗ ଜାନୁୟାରୀ ମାସରେ ଯାଇ ପାଆନ୍ତି। ତାଙ୍କର ଏହି କାମ ଆମେସବୁ କରିଦେଉ —ସେ ତାହା ଖୋଜୁଥିଲେ । ତେଣୁ ଡିନାରର କେଇ ମିନଟ ଆଗରୁ ଆସ୍ତେ ଆସ୍ତେ ଉପହାରର ପୋଟଳା ଗୁଡ଼ିକ ଖୋଲି ସେ ଆନନ୍ଦ ପାଉଥିଲେ । ଜାନୁୟାରୀ ପ୍ରଥମ ଆଡ଼କୁ ସେ ବୁଝି ପାରିଥିଲେ ଯେ, ଏହି ତାଙ୍କର ଶେଷ ଅଭି-ଷେକ ଉତ୍ସବ । ଏପରି ଆଶା କରି ଯାଇଥିଲି ଯେ, ସେ ଆମ ସାଙ୍ଗରେ ଆଉ ବେଶୀଦିନ ରହି ପାରିବେ ନାହିଁ । ଯଦ୍ୱାରା ନାତି ନାତୁଣୀ ସବୁ ହ୍ୱାଇଟ ହାଉସକୁ ଆସି ୨୦ ତାରିଖ ଯାଏ ରହନ୍ତି, ସେ ସମ୍ପର୍କରେ ପୀଡ଼ାପୀଡ଼ି ଆରମ୍ଭ କରନ୍ତି । ୩ରୁ ୧୬ ବର୍ଷ ବୟସ ପର୍ଯ୍ୟନ୍ତ ୧୩ଟି ପିଲାପିଲାଙ୍କୁ ଆଣିବା ପାଇଁ ମୋର ଅନିଚ୍ଛା ଥିଲା । କେତେବେଳେ ମିଳିମିଳା ଓ ବସନ୍ତର ପ୍ରକୋପ ହୁଏ, ସେ କଥା କିଏ ବା କହିବ । କିନ୍ତୁ ତାଙ୍କ ପୀଡ଼ାପୀଡ଼ିରେ ରାଜି ହେବାକୁ ପଡ଼ିଲା ।

ଅଭିଷେକ ଉତ୍ସବ ପରେ ଫ୍ରାଂକଲିନ ଯେ କେତାନ୍ତ ଅସୁସ୍ଥ, ତାହାକ୍ରମେ ସ୍ପଷ୍ଟ ହେବାକୁ ଲାଗିଲା । ତାପରେ ସେ ଇୟଲଟାକୁ ଯିବେ ବୋଲି ସ୍ଥିର କରନ୍ତି । ଯେତେବେଳେ ସେ କୌଣସି ଗୋଟାଏ ନୂଆକାମ କରିବେ ବୋଲି ଠିକ୍‌କରନ୍ତି, ସେଥିରୁ ଖୁବ କମ କ୍ଷେତ୍ରରେ ସେ ହୁଅନ୍ତି ନିରସ୍ତ। ଏହି ଭ୍ରମଣକୁ ସେ ଉପଭୋଗ ମଧ୍ୟ କରୁଥିଲେ । ଯୁଦ୍ଧ ଜାହାଜରେ ଅଧିକାଂଶ ପଥ ଯାଇ ପାରିଥିଲେ, ଆଉକିଛି କହିବାର ନଥାନ୍ତା ।

ଫ୍ରାଂକଲିନଙ୍କର ଖୁବ ଆଶାଥିଲା ଯେ, ସେ ଏହି ବୈଠକରେ ନିଜ ଓ ମାର୍ଶାଲ ଷ୍ଟାଲିନ୍‌ଙ୍କ ମଧ୍ୟରେ ବ୍ୟକ୍ତିଗତ ସମ୍ବନ୍ଧ ସ୍ଥାପନ ଦିଗରୁ ଅନେକଦୂର ଆଗେଇ ଯାଇ ପାରିବେ । ଭବିଷ୍ୟତ୍‌କୁ ଶାନ୍ତି ଯେତେବେଳେ ଆସିବ, ସେହିଦିନ ଉପରେ ସେ ଖୁବ ଗୁରୁତ୍ୱ ଆରୋପ କରୁଥିଲେ । ସେ ବୁଝି ପାରୁଥିଲେ ଯୁଦ୍ଧ ସମୟ ଠାରୁ ବେଶୀ ସମସ୍ୟା ଦେଖାଦେବ ଶାନ୍ତି ସମୟରେ । ସେ ମୋତେ କହୁଥିଲେ, ସମ୍ଭବପର ହେଲେ ସେ ନେତାମାନଙ୍କ ସହିତ ସାକ୍ଷାତ୍ କରି ପ୍ୟାଲେଷ୍ଟାଇନ୍ ପରିସ୍ଥିତିର ଶାନ୍ତିପୂର୍ଣ୍ଣ ଉପାୟ ବାହାର କରିବାକୁ ଚେଷ୍ଟା କରିବେ ।

ମୋର ମନେ ହୋଇଥିଲା ଏହି ଭ୍ରମଣରେ ଫ୍ରାଂକଲିନଙ୍କର ଉପକାରହିଁ ହେବ । ସେ ଭଲ ଫଳ ଫଳିଛି ବୋଲି ଅନୁମାନ କରିଥିଲେ । ବିଶେଷକରି ମାର୍ଶାଲ ଓ ଫ୍ରାଂକଲିନଙ୍କ ସହିତ କଥା ବାର୍ତ୍ତାରୁ ବେଶ ସୁଫଳ ଫଳିବ । ଫେରିବା ବେଳେ ଜେନେରାଲ ଓ୍ୟାଟ୍‌ସନ୍‌ଙ୍କର ଅସୁଖ ହୁଏ । ଫ୍ରାଂକଲିନଙ୍କର ସେଥିରେ ଉଦ୍‌ବେଗ ଖୁବ ବଢ଼ିଯାଏ । ଜେନେରାଲ ଓ୍ୟାଟ୍‌ସନହିଁ ସବୁଠାରୁ ବେଶୀ ଏହି ଭ୍ରମଣ ବ୍ୟାପାର ପ୍ରତ୍ୟାଶା କରିଥିଲେ । ଭୂମଧ୍ୟସାଗର ପାର ନ ହେଉଣୁ ସେ ମରିଗଲେ । ଏହି ଭ୍ରମଣ ସମୟରେ ହ୍ୟାରି ହପ୍‌କିନ୍‌ସ ମଧ୍ୟ ଖୁବ ଅସୁସ୍ଥ ହୋଇ ପଡ଼ନ୍ତି । ସେ ଲ୍ଲୁଟିଘେନି ମାଉରକେଳ୍‌କୁ ବିଶ୍ରାମ ଉପଭୋଗ କରିବା ପାଇଁ ଚାଲି ଯାଆନ୍ତି । ଫଳରେ ଖଣ୍ଡେ କଳା ମେଘ ଯେପରି ଜାହାଜକୁ ଢାଙ୍କିଦେଲା । ମୁଁ ସେତେବେଳକୁ ଖାଲି ଉତ୍କଣ୍ଠିତ । ଯାହାହେଉ, ଫ୍ରାଂକଲିନ ଯେତେବେଳେ ଜାହାଜରୁ ଓହ୍ଲାନ୍ତି, ସେ ଖୁବ ଭଲଥିଲେ ବୋଲି ମନେ ହେଉଥିଲା । ଦୁଃଖ ଥିବାଷଣ୍ଟେ ସେ କେତେ ଟୁଡ଼ିଏ ମଜାର ସ୍ମୃତି ଘେନି ଘରକୁ ଫେରି ଭ୍ରମଣର ଗପ କହିବାକୁ ବସନ୍ତି । ଏ କାମ ସେ ସବୁବେଳେ ଭଲ ପାଉଥିଲେ ।

ଇୟଲଟା ଚୁକ୍ତି ଅନୁସାରେ ଯୁକ୍ତରାଷ୍ଟ୍ରର ସ୍ୱାର୍ଥ ବିସର୍ଜନ ସମ୍ବନ୍ଧରେ ବହୁକଥା କୁହା ହୋଇଛି । ଏଡ୍‌ଓ୍ୟାର୍ଡସ ଷ୍ଟେଟେନିୟାସ ତାଙ୍କର ନୂଆ ବହିରେ ଏହି ଅଭିଯୋଗର ଯଥାଯଥ ଉତ୍ତର ଦେଇଛନ୍ତି । ଯେଉଁମାନେ

ମୁହୂର୍ତ୍ତିକ ପାଇଁ ଭାବିଛନ୍ତି ଯେ, ଫ୍ରାଂକଲିନ ମୁହୂର୍ତ୍ତିକ ପାଇଁ ଯୁକ୍ତରାଷ୍ଟ୍ରର ସ୍ୱାର୍ଥପ୍ରତି ଦୃଷ୍ଟିପାତ କରନ୍ତୁନାହିଁ, ଆଶାକରେ ସେମାନେ ଏହି ବହିଖଣ୍ଡିକ ପଢି ଦେଖନ୍ତୁ । ଆମ ଦେଶର ମଙ୍ଗଳ ଯେ ଅନ୍ୟ ଦେଶର ମଙ୍ଗଳ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ, ଏ ଗଭୀର ବିଶ୍ୱାସ ତାଙ୍କର ଥିଲା । ସେ ଏହା ମଧ୍ୟ ବିଶ୍ୱାସ କରୁଥିଲେ ଯେ, ଅନ୍ୟ ଦେଶମାନଙ୍କ ସହିତ ଆମ୍ଭମାନଙ୍କର ବନ୍ଧୁତ୍ୱର ପ୍ରୟୋଜନ ଅଛି । ସେ ଜାଣୁଥିଲେ ମୀମାଂସା କଥାବାର୍ତ୍ତାର ସଙ୍ଗେ ସଙ୍ଗେ ଆଦାନ ପ୍ରଦାନର କଥାବାର୍ତ୍ତା ମଧ୍ୟ ଆସିଯିବ । କିନ୍ତୁ ସେ ଭଲ ଭାବରେ ଦର କଷାକଷି କରି ପାରୁଥିଲେ । "ପୋକାର" ଖେଳାଳି ହିସାବରେ ତାଙ୍କର ଖ୍ୟାତି ମଧ୍ୟ ଥିଲା । ମୋଟ ଉପରେ ଆପୋଷ ମୀମାଂସା ଖୁବ ଭଲ ଭାବରେ କରି ପାରୁଥିଲେ । ମୋର ଧ୍ରୁବ ବିଶ୍ୱାସ, ଏପରିକି ଇୟାଲଟା ବୈଠକରେ ବି ଅନ୍ୟ ବୁଦ୍ଧି ସହିତ ନିଜବୁଦ୍ଧି ପରୀକ୍ଷାର ଆବଶ୍ୟକତା ତାଙ୍କୁ ଉତ୍ସାହିତ କରିଥିଲା । ଅନେକ ସମୟରେ ସେ କ୍ଳାନ୍ତ ବୋଧ କରୁଥିଲେହେଁ ତାଙ୍କର ସତର୍କତା ଓ ଉତ୍ସାହ ତାଙ୍କୁ କୌଣସି ରକମରେ ବଞ୍ଚାଇ ରଖୁଥିଲା ।

ଯେଉଁ ଚୂଡ଼ାନ୍ତ ସମାଧାନର କଥା ଫ୍ରାଂକଲିନଙ୍କର ମନେଥିଲା, ଇୟେଲଟା ତାର ଗୋଟିଏ ସୋପାନ ମାତ୍ର । ଆହୁରି ଆପୋଷ ଆଲୋଚନା ଚାଲିବ ଓ ବୈଠକ ବସିବ ଏ କଥା ସେ ଜାଣିଥିଲେ । ସେ ଆଶା କରୁଥିଲେ ଶାନ୍ତି ଓ ଉପଲବ୍ଧିର ଯୁଗ ପୁନର୍ବାର ଆବିର୍ଭୂତ ହେବ । ଦିନକରେତ ଶାନ୍ତି ଫେରିଆସିବ ନାହିଁ ବୋଲି ସେ ଭଲକରି ଜାଣୁଥିଲେ । ଭବିଷ୍ୟତରେ ଦିନ ପରେ ଦିନ, ବର୍ଷ ପରେ ବର୍ଷ ଆମେସବୁ ଯଦି ଶାନ୍ତି ପ୍ରଚେଷ୍ଟାରେ ଅବିରାମ ଉଦ୍ୟମ କରୁ, ତେବେ ଯାଇ ଫେରି ଆସିବ ଶାନ୍ତି । ଯେତେବେଳେ ଇୟାଲଟାକୁ ଯାତ୍ରା ଆରମ୍ଭ କରନ୍ତି, ତାଙ୍କର ଏହି ବିଶ୍ୱାସ ଥିଲା ଯେ, ସେ ଷ୍ଟାଲିନଙ୍କ ସହିତ କାମକରି ପାରିବେ । ଘରକୁ ଫେରିବାର କିଛିଦିନ ପରେ ତାଙ୍କର ମନେହେଲା, ମାର୍ଶାଲ ତାଙ୍କ କଥା ରଖୁନାହାନ୍ତି । ଏପରି କଥା ଉପେକ୍ଷା କରିବା ତାଙ୍କର ସାଧ୍ୟାତୀତ ଥିଲା । ମୋ ମନେହୁଏ,

ସେ ତାଙ୍କୁ କଡ଼ାକଡ଼ି ଅନେକ ଚିଠି ଲେଖିଥିଲେ । ସେ ସେତେବେଳକୁ ଭାବିଥିଲେ ଯେ ପରିଣାମରେ ସେ ଷ୍ଟାଲିନଙ୍କୁ ନିଜ କଥାରେ କାମ କରାଇ ପାରିବେ । ସେ, ଷ୍ଟାଲିନ ଓ ଚର୍ଚ୍ଚିଲ ଏକାଠି ମିଳିମିଶି ଯୁଦ୍ଧ କରିଛନ୍ତି । ପରସ୍ପର ମଧ୍ୟରେ ଶ୍ରଦ୍ଧା ଓ ନିଜନିଜ ମଧ୍ୟରେ ପରସ୍ପରକୁ ବୁଝିଲା ଭଳି ବିଶ୍ୱାସ ଯେତେବେଳେ ଅଛି, ସେଥିରେ ନିଶ୍ଚୟ କାର୍ଯ୍ୟ ହାସଲ କରି ପାରିବେ ।

ମାର୍ଚ୍ଚ ତା୧ ରିଖ । ଫ୍ରାଙ୍କ୍ଲିନ୍ କଂଗ୍ରେସରେ ବକ୍ତୃତା ଦିଅନ୍ତି । ସେ ବସି ବସି ବକ୍ତୃତା ଦିଅନ୍ତି । ତାଙ୍କର ପଙ୍ଗୁତାକୁ ସମସ୍ତେ ମାନି ନେଇଥିଲେ । ପ୍ରତି ମାସରେ ଲୋକମାନଙ୍କ ସହିତ କଥାବାର୍ତ୍ତା କରିବାକୁ ସେ ପସନ୍ଦ କରୁ-ନଥିଲେ । ଦୁଇ ପ୍ରହର ସମୟରେ ସେ ବିଶ୍ରାମ ଖୋଜୁଥିଲେ । ଏହାର ଆବଶ୍ୟକତା ମଧ୍ୟ ହୋଇ ପଡ଼ିଥିଲା । ସବୁ ଛାଡ଼ି ବାହାରକୁ ଯିବାପାଇଁ ମନ ତାଙ୍କର ଉଦ୍‌ଗ୍ରୀବ ଥାଏ । ଯେତେବେଳେ ସେ ଓ୍ୟାର୍ମ ସ୍ପ୍ରିଙ୍କୁ ଯିବାକଥା କରନ୍ତି ମୁଁ ସେତେବେଳକୁ ଖୁସିହୁଏ । ଆଗରୁ କହି ରଖିଛି ଯେ ସେଠାକୁ ଗଲେ ତାଙ୍କର ଶରୀର ଭଲ ହେଉଥିଲା, ଶକ୍ତିମଧ୍ୟ ବଢୁଥିଲା । ୧ଲା ଏପ୍ରିଲ ଇଷ୍ଟାର ରବିବାର ଦିନ ଝିମୀ ଓ ମୁଁ ସୂର୍ଯ୍ୟୋଦୟ ଉପାସନାକୁ ଯଥା ରୀତି ଯାଉ । ତା ପର ଦିନ କାମ ଦାମରେ ମୋଦିନ ଅତିବାହିତ-ହୁଏ । ପ୍ରତିଦିନ ଓ୍ୟାର୍ମ ସ୍ପ୍ରିଂରୁ ଫୋନ୍‌ରେ ଖବର ପାଉ ଥିଲୁ । ଭଲ ଖବରହିଁ ପାଉଥିଲୁ । ଏପ୍ରିଲ ତା୧୨ରିଖ ଦିନ ଅପରାହ୍ଣରେ ଲରଡେଲ୍‌ନୋ ମୋତେ ଫୋନ୍‌ରେ ଡାକି କହିଲେ । ଫ୍ରାଙ୍କ୍ଲିନ୍ ତାଙ୍କ ଛବି ଆଙ୍କାଇବା-ପାଇଁ ବସିଥିଲେ, ସେହି ମୂହୂର୍ତ୍ତରେ ମୂର୍ଚ୍ଛାଯାନ୍ତି । ସାଙ୍ଗେ ସାଙ୍ଗେ ତାଙ୍କୁ ନେଇ ବିଛଣାରେ ଶୋଇ ଦିଆହୁଏ । ମୁଁ ଡାକ୍ତର ମ୍ୟାକନ୍‌ଟାୟାରଙ୍କ ସହିତ କଥାକହେ । ଦେଖିଲି ସେ ଭୟ ପାଇ ନାହାନ୍ତି । ଯାହାହେଉ, ସେ ଦିନ ସନ୍ଧ୍ୟାରେ ଓ୍ୟାର୍ମସ୍ପ୍ରିଙ୍କୁ ଯିବାର ସ୍ଥିରୀକୃତ ହୁଏ । ସେ ମୋତେ କହିଲେ ଅପରାହ୍ଣର କାର୍ଯ୍ୟ ସାରି ଯିବାକୁ । କାରଣ ଶେଷ ମୁହୂର୍ତ୍ତରେ ଏହି ସବୁକୁ ବାତିଲ କରିଦେଲେ ଡ଼ୁମୂଳ ବିରୁଦ୍ଧ ସମାଲୋଚନା ଆରମ୍ଭ ହେବ ।

ଓ୍ୱାଶିଂଟନ୍‌ରେ ସାଲଗ୍ରେଭ୍ କ୍ଲାବ୍‌ରେ "ଥ୍ରୀପଟ୍ ସପ୍" ଅଭିନୟର ସାହାଯ୍ୟ ରଜନୀ ଅନୁଷ୍ଠାନକୁ ଯାଏ । ସେଠିକି ଫୋନ୍ ଆସିଥିଲା । ଷ୍ଟିଫ୍ ଆରଲୀ ହତଭମ୍ବ ହୋଇ କହିଲା ମୋତେ ବର୍ତ୍ତମାନ ଘରକୁ ଯିବାକୁ ହେବ । କାରଣ ପଚାରି ପାରିଲି ନାହିଁ । ମୋର ଅନ୍ତରର ଅନ୍ତରତମ ପ୍ରଦେଶ ମଧ୍ୟରେ ଗୋଟିଏ କିଛି ବଡ଼ ଦୁର୍ଘଟଣା ଘଟିଛି ବୋଲି ଭାବିନେଲି । ତଥାପି ସାମାଜିକ ଶିଷ୍ଟାଚାର ନ ପାଳିଲେ ନୁହେଁ । ତେଣୁ ପାର୍ଟିକୁ ଫେରି-ଯାଇ ବିଦାୟ ନିଏ । ଦୁଃଖର ସହିତ ସେମାନଙ୍କୁ ଜଣାଇଲି ଘରେ ଏପରି ଗୋଟିଏ କିଛି ଘଟିଛି, ଯାହାପାଇଁ ବର୍ତ୍ତମାନ ନଗଲେ ନୁହେଁ । ମୁଁ ଗାଡ଼ିରେ ଯାଇଁ କାଠ ପୁତୁଳି ଭଳି ବସି ରହିଲି । ହସ୍ତ ପଦ ଅବଶ । ଏପରି ଅବସ୍ଥାରେ ହ୍ୱାଇଟ୍ ହାଉସରେ ଆସି ପହଞ୍ଚେ । କ'ଣ ଘଟିଛି ତାହା ଜାଣିଥିଲି । ଷ୍ଟିଫ ଆରଲୀ ଓ ଡାକ୍ତର ମ୍ୟାକନ୍‌ଟାୟାର ଖବର ଦେବାକୁ ଆସନ୍ତି । ଓ୍ୱାର୍ମ ସ୍ପ୍ରିଂରୁ ଡାକ୍ତର ବ୍ରୁଏନ୍ ମଧ୍ୟ ପ୍ରଥମରେ ଫ୍ରାଙ୍କ୍‌ଲିନ୍‌ଙ୍କର ରକ୍ତ ସ୍ରାବର ଖବର ଦିଅନ୍ତି । ପରେ ଆସେ ମୃତ୍ୟୁ ସମ୍ବାଦ । ସନ୍ଧ୍ୟାବେଳେ ମୋ ସହିତ ଷ୍ଟୀଫ୍ ଓ ଡାକ୍ତର ମ୍ୟାକନ୍‌ଟାୟାରଙ୍କର ଯିବାର ବ୍ୟବସ୍ଥା କରେ ।

ଯେତେବେଳେ ଭାଇସ୍ ପ୍ରେସିଡେଣ୍ଟ ଆସନ୍ତି; ସେତେବେଳେ ତାଙ୍କୁ ଯେ କଅଣ କହିବି କିଛି ଭାବି ପାରିଲି ନାହିଁ । କେବଳ ଖୁବ୍ ଦୁଃଖିତ ବୋଲି ତାଙ୍କୁ ଜଣାଏ । ଆମେ ସବୁ ଯଥା ସାଧ୍ୟ ସାହାଯ୍ୟ ତାଙ୍କୁ କରିବୁ । ଦେଶର ଜନ ସାଧାରଣଙ୍କ ପାଇଁ ମୁଁ ଖୁବ ଦୁଃଖିତ । ଯୁଦ୍ଧରେ ପ୍ରଥମ ଜୟ କରିବା ଆଗରୁ ସେମାନେ ତାଙ୍କର ନେତାଙ୍କୁ ହରାଇଲେ ।

ପରେ ପିଲାଙ୍କ ପାଖକୁ ତାର କରେ । ବାପାଙ୍କର ନଶ୍ୱର ଶରୀରର ଅବସାନ ଘଟିଛି । ସେ ଆଶା କରୁଥିଲେ ତୁମ୍ଭେମାନେ ତୁମ୍ଭମାନଙ୍କର କର୍ତ୍ତବ୍ୟ କରିବ । ଆନମନା ହୋଇ ଉଡ଼ାଜାହାଜରେ ଯାଇ ବସେ । ସାରା ବାଟସାରା ପ୍ଲେନ୍ ଯାଏ । ଓ୍ୱାର୍ମ ସ୍ପ୍ରିଂର ଦୂରତା ଖୁବ୍ ଦୀର୍ଘ ବୋଲି ମନେ ହେଲା । ହୃଦ ଯେପରି ଫାଟି ଯାଉଥିଲା । ଏ ଆଘାତ ଖୁବ୍ ପ୍ରଚଣ୍ଡ ହେଲେହେଁ, ଏ ଦୁଃଖକୁ ବ୍ୟକ୍ତିଗତ ଭାବରେ ଭାବିବାର ଉପାୟ ମୋର

ନାହିଁ । ଯିଏ ଅଜ ମୃତ୍ୟୁର ଅଙ୍କଦେଶରେ ଚିରଦିନ ପାଇଁ ଢଳି ପଡ଼ିଲେ, ଯିଏ ଥିଲେ ମୋର ସ୍ୱାମୀ, ସେ ଯାହାଙ୍କ ନିକଟରେ ଶକ୍ତି ଓ ଦୃଢ଼ତାର ପ୍ରତୀକ ଥିଲେ, ଏ ଦୁଃଖ ସେ ସମସ୍ତଙ୍କର ।

ଅବଶେଷରେ ମନ୍ଥରଗତିରେ ଶୋକଯାତ୍ରା ରେଲ ଷ୍ଟେସନ୍ ଆଡ଼କୁ ଯାଏ । ଆମେ ସବୁ ରେଲ୍‌ରେ ଉଠି ଓ୍ୟାଶିଂଟନକୁ ଯାଉ । ଗାଡ଼ି ପଛରେ ଶବାଧାର । ପରିବେଷ୍ଟିତ ହୋଇ ରହିଥାନ୍ତି ରକ୍ଷୀଗଣ । ଏଠାରେ ଫ୍ରାଙ୍କ୍‌ଲିନ୍ ଅନେକ ଦିନ ବସିଥିଲେ । ମୁଁ ମୋ ବାର୍ଥରେ ସାରା ରାତି ଶୋଇ ରହେ । ଝରକା ଖଡ଼ ଖଡ଼ି ଟେକ ଦେଇ ଗ୍ରାମ୍ୟଦୃଶ୍ୟ ଦେଖୁ ଥାଏ । ସେ ଭଲ ପାଉଥିଲେ ଏ ସବୁ ଗ୍ରାମକୁ । ଷ୍ଟେସନ୍‌ରେ, ରାସ୍ତାରେ ଠିଆ ହୋଇଥିବା ଲୋକମାନଙ୍କ ଅବସ୍ଥା ଦେଖେ । ସେମାନେ ଆସିଥାନ୍ତି ସେମାନଙ୍କର ଶେଷ ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ । ସାରାରାତି ବ୍ୟାପୀ ଏପରି ଚଳେ ।

ଫ୍ରାଙ୍କ୍‌ଲିନ୍ ଯେପରି ଚାହୁଁ ଥିଲେ, ଅନ୍ତ୍ୟେଷ୍ଟିକ୍ରିୟାରେ ସେପରି ବ୍ୟବସ୍ଥା କରାହୁଏ । ଆମେ ପ୍ରାୟ ଆଲୋଚନା କରିଥିଲୁ, ଯେତେବେଳେ କଂଗ୍ରେସ ଭବନରେ କୌଣସି ଅନ୍ତ୍ୟେଷ୍ଟି ଉତ୍ସବ ହୋଇଛି, ମୁକ୍ତ ଶବାଧାର ପାଖଦେଇ ଜନତା ଚାଲି ଯାଇଛି । ଏପ୍ରଥା ମୋତେ ଭଲ ଲାଗିନାହିଁ । ଏପରି କରିବାକୁ ଦେବୁ ନାହିଁ ବୋଲି ଠିକ୍ କରିଥିଲୁ । ସେଇଥି ଯୋଗୁଁ ମୁଁ ଜଣାଇଲି ଯେ ପୂର୍ବ ହଲ ଘରକୁ ନେବା ପରେ ଶବାଧାର ଥରେ ମାତ୍ର ଖୋଲା ଯିବ । ଏହାବେଳେ ବନ୍ଦହେବା ଆଗରୁ, ମୁଁ ଏହାପାଇଁ କେତୋଟି ଫୁଲ ଦେଇ ଆସିବି । ଜୀବନରେ ଯେପରି ସମସ୍ତେ ତାଙ୍କୁ ମନେ ରଖିଥିଲେ, ମରଣରେ ତାହାହିଁସେ କାମନା କରିଥିଲେ । ଅନ୍ତ୍ୟେଷ୍ଟି କ୍ରିୟାଦିନ ପୂର୍ବପଟ ହଲଘରେ ସମସ୍ତ ବନ୍ଧୁ ବାନ୍ଧବ ମାନଙ୍କ ଉପସ୍ଥିତି ଆତ୍ମମାନଙ୍କର ଥିଲା କାମନା ।

ମୋର ମନେହେଲା ପୃଥିବୀର ସମସ୍ତେ ଅନ୍ତ୍ୟେଷ୍ଟିକ୍ରିୟାରେ ପୂର୍ବହଲ ଘରେ ଆସି ସମବେତ ହୋଇଛନ୍ତି । ଆସିନଥିଲେ କେବଳ ମୋ ପୁଅ

ହନୋଟିଯାକ । କେବଳ ଏଲିଯ୍ଟ୍‌ହିଁ ଭାଗ୍ୟ ଜୋରରେ ଆସି ପହଞ୍ଚିଥିଲା । ଲଣ୍ଡନରୁ ମିଷ୍ଟାର ବାରୁଚ ଓ ଆଉ କେଇଜଣ ଆସନ୍ତି । ତାଙ୍କ ସହିତ ସେ ଆସିବାର ହୁକୁମ ପାଏ । ଜମି ପ୍ରାଚ୍ୟରୁ ଆସିଥିଲା । ହାଇଡ୍ ପାର୍କରେ ଅନ୍ତ୍ୟେଷ୍ଟିକ୍ରିୟା ସମାପ୍ତ ହୁଅନ୍ତେ ସେ ଆସି ପହଞ୍ଚେ ନ୍ୟୁଇୟର୍କରେ । ଆମେସବୁ ଯେତେବେଳେ ଓ୍ୱାଶିଂଟନକୁ ଫେରୁଥିଲୁ, ସେତେବେଳେ ସେ ଆମ୍ଭମାନଙ୍କ ସାଙ୍ଗରେ ଯୋଗଦିଏ । ଗ୍ରେଟ ଫ୍ରାଙ୍କ୍‌ଲିନ୍ ଓ ଜନ ସେତେ-ବେଳେ ପ୍ରଶାନ୍ତ ମହାସାଗର ଅଞ୍ଚଳରେ ଥାଏ ।

ଓ୍ୱାଶିଂଟନରେ ଅନ୍ତ୍ୟେଷ୍ଟି କ୍ରିୟାପରେ ଆମେସବୁ ହାଇଡ୍ ପାର୍କକୁ ଆସୁ । ଏଥର ଆମେ କେହି ଶୋଇ ପାରିଲୁ ନାହିଁ । ଗବାକ୍ଷ ଦେଇ ଦେଖୁ ଜନତା ସମସ୍ତ ରାସ୍ତା ଭିଡ଼ କରି ରହିଆନ୍ତି । ସେମାନେ ସବୁ ଆସିଥିଲେ ଦୁଃଖ ଓ ଶ୍ରଦ୍ଧା ଜଣାଇବାକୁ । ଏତେ ବନ୍ଧୁ ବାନ୍ଧବମାନଙ୍କୁ ଦେଖି ଅଭିଭୂତ ହୋଇ ପଡ଼େ । ସେମାନେ ପ୍ରତ୍ୟୁଷରେ ସ୍ୱସ୍ୱ ଘରଦ୍ୱାର ଛାଡ଼ି ହାଇଡ୍ ପାର୍କକୁ ଅନ୍ତ୍ୟେଷ୍ଟିକ୍ରିୟା ଦେଖିବାକୁ ଛୁଟି ଆସିଆନ୍ତି ।

ମୁଁ ନିଶ୍ଚିନ୍ତ ଭାବରେ କହିପାରେଯେ ସେ ଜୀବନକୁ ଯେପରି ସ୍ୱୀକାର କରି ନେଇଥିଲେ, ମୃତ୍ୟୁ ମଧ୍ୟ ଏଚିନ୍ତାରୁ ବାଦ୍ ପଡ଼ି ନଥିଲା । ତାଙ୍କର ଧର୍ମବିଶ୍ୱାସ ଥିଲା ପ୍ରଗାଢ଼ । ସେ ଧର୍ମ ତାଙ୍କର ବ୍ୟକ୍ତିଗତ ପଦାର୍ଥ । ମନେହୁଏ ସେ ଯଥାର୍ଥ ଭାବରେ ଅନୁଭବ କରୁଥିଲେ ସବୁବେଳେ ଭଗବାନଙ୍କୁ ଡାକିବାପାଇଁ । ହିଦ୍ଦେଶ୍ୟ ଭଗବାନ୍ ଯେପରି ତାଙ୍କୁ ସବୁବେଳେ ନିର୍ଦ୍ଦେଶ ଦିଅନ୍ତି । ସେ ସବୁବେଳେ ନିର୍ଦ୍ଦେଶ ମଧ୍ୟ ପାଉଥିଲେ । ସେଇଥି ଯୋଗୁ ସେ ତ୍ରିବିଂଶତି ଗୀଥାର ହିସାରମନ ଅନ୍ଧ ମାଉଣ୍ଟ ଓ ପ୍ରଥମ କରନ୍ଥେ-ନିୟାନ୍‌ର ତ୍ରୟୋଦଶ ଅଧ୍ୟାୟ ପଢ଼ିବାକୁ ଭଲ ପାଉଥିଲେ । ସେ ନିଜଧର୍ମ ଓ ବିଶ୍ୱାସକଥା କେବେ ହେଲେ କହୁନଥିଲେ । ଯାହା ସେ ବିଶ୍ୱାସ କରୁ-ଥିଲେ, ସେ ସମ୍ବନ୍ଧରେ ବୁଦ୍ଧିର ଜଟିଳତା ଆଦୌ ଦେଖା ଦେଇ ନଥିଲା । ଯାହାସବୁ ତାଙ୍କର ମନଯୋଗ ଆକର୍ଷଣ କରୁଥିଲା, ସେ ପ୍ରତି ତାଙ୍କର ଉଦାର ମନୋଭାବ ଥିଲା । ସେ ଯାହା ଦେଖିବାକୁ ଚାହୁଁଥିଲେ, ତାହା

ପର୍ଯ୍ୟାଲୋଚନା କରୁଥିଲେ । ହେଲେ, ତାଙ୍କର ସ୍ୱଭାବ ଥିଲା ଶିଶୁ ସୁଲଭ । ଯେଉଁ ଶିଶୁ ,ସରଳ, ସହଜ ପରିବେଶ ମଧ୍ୟରେ ବଢ଼ି ଉଠିଛୁ, ଠିକ୍ ତାହାରି ପରି । ଚିରକାଳ ଅନୁଭୂତି ଅନୁସାରେ ସେ ଧର୍ମକୁ ଜୀବନର ଧ୍ରୁବତାରା ବୋଲି ଜାଣିଥିଲେ । ସେ ଥିଲା ତାଙ୍କ ପାଖରେ ସତେ ଯେପରି ଶକ୍ତି ଓ ପରିଚାଳନାର ଉତ୍ସ । ସେଇଥି ଯୋଗୁଁ ମୋର ସ୍ଥିର ବିଶ୍ୱାସ ଯେ ଜୀବନରେ ସେ ଯେପରି ସବୁ ଘଟଣାକୁ ଶାନ୍ତ ଭାବରେ ଦେଖୁଥିଲେ, ଠିକ୍ ସେହିପରି ଭାବରେ ଭବିଷ୍ୟତ୍‌କୁ ଟିକିଏ ଶାନ୍ତିପୂର୍ଣ୍ଣ ଦୃଷ୍ଟିରେ ଦେଖୁ ଦେଖୁ ତାଙ୍କର ପ୍ରାଣବାୟୁ ବାହାରି ଯାଏ ।

ପଛ ଆଡ଼କୁ ଦେଖିଲେ ବେଶ୍ ବୁଝାପଡ଼େ, ଅଜ୍ଞାତ ସାରରେ ଫ୍ରାଙ୍କ୍‌ଲିନ୍‌ଙ୍କର ପିତା ମାତା ତାଙ୍କୁ ଭଲଭାବରେ ଗଠନ କରିଥିଲେ । ସେମାନଙ୍କ ସଂସ୍ପର୍ଶରେ, ବିଦେଶ ଭ୍ରମଣରେ, ବହୁଦେଶ ବିଦେଶର ମାନବ ଓ ସେମାନଙ୍କର ରାଜନୀତି ସହିତ ପରିଚିତ ହୋଇ ସେ ରାଜନୀତିର ବହୁ ସମସ୍ୟାର ସମ୍ମୁଖୀନ ହୋଇ ସୁଦ୍ଧା ଦଣ୍ଡାୟମାନ ହୋଇଥିଲେ । ସେମାନେ ଭାବିନଥିଲେ ଯେ ରାଜନୀତି ତାଙ୍କର କର୍ମକ୍ଷେତ୍ର ହେବବୋଲି । ହେଲେ ଯେଉଁ ଶିକ୍ଷା ସେମାନେ ଦେଇଥିଲେ, ତାହାରି ଫଳରେ ତାଙ୍କ କର୍ତ୍ତବ୍ୟ ସମ୍ପାଦନ କରିବାରେ ସେ ସକ୍ଷମ ହୁଅନ୍ତି । ତଥାକଥିତ ନିଉଡ଼ିଲ୍‌ରେ ଆମ୍ଭମାନଙ୍କ ଅର୍ଥନୈତିକ ବ୍ୟବସ୍ଥାକୁ ଚାଲୁରଖିବାର ପ୍ରଚେଷ୍ଟାଛଡ଼ା ଆଉକିଛି ନୁହେଁ ।

ଆଜି ପୃଥିବୀ ସହିତ ପର୍ଯ୍ୟାଲୋଚନାକଲେ, ବେଶ୍ ଜଣାପଡ଼େ, ଅନ୍ୟ-ଦେଶମାନଙ୍କର ନିଉଡ଼ିଲ ସହିତ ଆଲୋଚନା କଲାଭଳି କୌଣସି ବ୍ୟବସ୍ଥା ଯଦି ଥାଆନ୍ତା, ତାହେଲେ ସେମାନେ ଆଗରୁ ନିଜ ନିଜର ନିରପତ୍ତାବୋଧ ଓ ବିଶ୍ୱାସଯୋଗ ଦ୍ୱିତୀୟ ମହାଯୁଦ୍ଧରେ ଆହୁରି ଭଲଭାବରେ ମସ୍ତକ ଉତ୍ତୋଳନ କରି ରହିଥାନ୍ତେ । ଯୁଦ୍ଧସମାପ୍ତିରେ ସବୁ ମନୁଷ୍ୟଙ୍କ ଭିତରେ ଏହି ଗୁଣ ଦୁଇଟିକୁ ପୁନର୍ବାର ଗଢ଼ିବାକୁ, ଆମ୍ଭମାନଙ୍କ ପକ୍ଷରେ ଯୁଦ୍ଧର ପ୍ରଥମ ଆଡ଼ୁ ଏତେ ଉତ୍ପାଦନ ସମ୍ଭବପର ହୋଇଥିଲା । ଆଉ ଏଇଥିପାଇଁ, ଆମ୍ଭମାନଙ୍କ

ଇତିହାସରେ ଆମ୍ଭେମାନେ ସବୁଠାରୁ ବେଶୀଭାବରେ ଯୁଦ୍ଧରେ ଉତ୍ତୀର୍ଣ୍ଣ ହୋଇ ପାରିଛୁ ଓ ଜୟଲାଭ କରିଛୁ ।

ମୋ ସ୍ୱାମୀ ଯେଉଁ ଦୁଇଟି ଯୁଦ୍ଧର ସମ୍ମୁଖୀନ ହୋଇଥିଲେ, ତାହା ଥିଲା ଗୋଟିଏ ଅପରଟି ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ସେ ଗୋଟି-କରେ ସଫଳକାମ ହୋଇ ନପାରିଲେ ବି ଅନ୍ୟଟି କରିବାକୁ ଛାଡ଼ୁ ନଥିଲେ । କାରଣ ଜନ ଗଣ ଯେବେ ଅନୁସରଣ କରିବାକୁ ରାଜି ନ ହୁଅନ୍ତି, ତା ହେଲେ କୌଣସି ନେତା ବଡ଼ ଧରଣର କିଛି କାମ କରି ନ ପାରନ୍ତି ।

ଫ୍ରାଙ୍କ୍‌ଲିନ୍‌ଙ୍କ ମୃତ୍ୟୁପରେ କେତେ ଖଣ୍ଡ ଯେ ଚିଠି ଯାଇଛି, ସେଥିରୁ ଏହା ସ୍ପଷ୍ଟତର ହୋଇ ଉଠିଛି । ସେମୁଡ଼ି, ଏବେ ଫ୍ରାଙ୍କ୍‌ଲିନ୍ ଡି, ରୁଜଭେଲ୍ଟ ଗ୍ରନ୍ଥାଗାରେ ସାଇତି ରଖାଯାଇଛି । କେତେଲୋକ ସେମାନଙ୍କର ନିଜର ଜୀବନବାର୍ତ୍ତା ମର୍ମସ୍ପର୍ଶୀ ଭାଷାରେ ବ୍ୟାଖ୍ୟାନ କରିଛନ୍ତି । ମୋ ସ୍ୱାମୀଙ୍କ ଯେଉଁ ସବୁ ପରିକଳ୍ପନା ଓ ନୀତି ସେମାନଙ୍କ ଜୀବନକୁ ଉନ୍ନତତର କରିଛି, ସେ କଥା ବି ସେମାନେ ତହିଁରେ ଉଲ୍ଲେଖ କରିଛନ୍ତି । ବହୁ କ୍ଷେତ୍ରରେ ସେ ସେମାନଙ୍କୁ ପୂର୍ଣ୍ଣ ହତାଶାରୁ ରକ୍ଷା କରିଥିଲେ ।

ଫ୍ରାଂକଲିନ ଓ୍ୱାଶିଂଟନରେ ଯେଉଁ ଭାବରେ ଦିନ ଯାପନ କରୁଥିଲେ, ତାଙ୍କ ପକ୍ଷରେ ବ୍ୟକ୍ତିଗତ ବନ୍ଧୁତ୍ୱ ରକ୍ଷା କରିବା ସମ୍ଭବପର ନୁହେଁ । କିନ୍ତୁ ତାଙ୍କ ପକ୍ଷରେ ତାହା ସମ୍ଭବପର ହୋଇଥିଲା । ସରକାରୀ କାର୍ଯ୍ୟରେ ଉଚ୍ଚ ପଦରେ ଯେ ଅଧିଷ୍ଠିତ, ସେ ବି ପ୍ରଚଳିତ ଅର୍ଥ ଅନୁସାରେ ସ୍ୱାମୀ, ପିତା ବା ବନ୍ଧୁ ନୁହନ୍ତି । କିନ୍ତୁ ମୁଁ ଏହା ବିଶ୍ୱାସ କରେ ଯେ, ଫ୍ରାଂକଲିନ ମାନବର ସ୍ମୃତିରେ ସେପରି ଜଣେ ମହାମାନବ ହିସାବରେ ବରାବର ବଞ୍ଚି ରହିବେ, ଯାହାଙ୍କର ଗଭୀର ଇତିହାସ ବୋଧ ଥିଲା ଓ ସେହି ସମ୍ପର୍କରେ ନିଜର କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ ଓ ତାହା ସମ୍ପୂର୍ଣ୍ଣ କରିବାର ଖୁବ୍ ଦାୟିତ୍ୱବୋଧ ମଧ୍ୟ ତାଙ୍କର ଥିଲା । ଯେଉଁମାନେ ଫ୍ରାଂକଲିନଙ୍କୁ ସେବା କରୁଥିଲେ, ସେମାନଙ୍କ କଥା ମୋର ମନେ ପଡ଼େ । ସେମାନେ ସଂଖ୍ୟାରେ ବହୁ । କେହିବା ବୁଦ୍ଧି କେହିବା ଅନ୍ୟଭାବରେ ତାଙ୍କୁ ସାହାଯ୍ୟ କରୁଥିଲେ । ସମସ୍ତେ ଥିଲେ ବିଶ୍ୱାସୀ ।

ସେମାନଙ୍କ ମଧ୍ୟରେ ସୁନ୍ଦର ସମ୍ପର୍କ ଗଢ଼ି ଉଠିଥିଲା । ଆହୁରି ମଧ୍ୟ ତାଙ୍କର ଛୋଟଖାଟ କାମ ଯେଉଁମାନେ କରୁଥିଲେ, ସେମାନଙ୍କୁ ବରାବର ମନେପଡ଼େ । ସେମାନେ ଖାଦ୍ୟ ଯୋଗାଉଥିଲେ, ରକ୍ଷା କରୁଥିଲେ । ସେମାନେ ଦୈହିକ ପଙ୍ଗୁତାକୁ ଦବେଇ ରଖିବା ପାଇଁ ସହାୟତା ମଧ୍ୟ କରୁଥିଲେ । ଦୈନନ୍ଦିନ ଜୀବନରେ ତାଙ୍କ ପାଖରେ ସେକ୍ରେଟାରୀଗଣ ଥାଆନ୍ତି । ଲୁଇସହୋ ଜେନେରାଲ ଓ୍ୱାଟସନ୍, ଷ୍ଟୀଭ୍ ଆରଲି, ମାରଭିନ ମାକନ୍‌ଟାୟାର, ବିଲ ହ୍ୟାସେଟ୍, ମାର୍ଗେଟ ଲିହାଣ୍ଡ ଓ ଗ୍ରେସ୍‌ଟୁଲି । ଡାକ୍ତର ମ୍ୟାକନ୍‌ଟାୟାର ପ୍ରତ୍ୟହ ତାଙ୍କୁ ଦେଖିବାକୁ ଆସୁଥିଲେ । ସେଥିଲେ ତାଙ୍କର ବିଶ୍ୱସ୍ତ ବନ୍ଧୁ ବନ୍ଧ୍ୱଲେକ ବକ୍ତୃତା ବ୍ୟାପାରରେ ତାଙ୍କୁ ସାହାଯ୍ୟ କରିଛନ୍ତି । ସାମରୋ ଜେନ୍‌ମ୍ୟାନ୍ କେବଳ ବକ୍ତୃତା ବ୍ୟାପାରରେ ନୁହେଁ, ଅନ୍ୟାନ୍ୟ ବିଶେଷକାର୍ଯ୍ୟରେ ମୃତ୍ୟୁପର୍ଯ୍ୟନ୍ତ ତାଙ୍କୁ ସାହାଯ୍ୟ କରୁଥିଲେ । ବବ୍‌ସେରଉଡ୍‌ଙ୍କ ସହିତ ତାଙ୍କର ସହଯୋଗୀତା ବନ୍ଧୁତ୍ୱରେ ପରିଣତ ହୋଇଥିଲା । ତାଙ୍କର ଭୂତପୂର୍ବ ଆଇନ ବ୍ୟବସାୟର ଅଂଶୀଦାର ବେସିଲ ଓ କନୋର ଖୁବ ପ୍ରିୟ ବ୍ୟାପାରରେ ତାଙ୍କର ବନ୍ଧୁ ଓ ସହଯୋଗୀ ଥିଲେ । ମନ୍ତ୍ରୀ ସଭାର ସଦସ୍ୟମାନଙ୍କ ମଧ୍ୟରେ କେତେଜଣ ତାଙ୍କର ପ୍ରକୃତ ବନ୍ଧୁ ଓ ସହକର୍ମୀ ଥିଲେ ।

ମୋଟାମୋଟି କହିବାକୁ ଗଲେ ମୋ ମନେହୁଏ, ଏହିବର୍ଷ ସମୂହରେ ମୁଁ ମୋର ନିଜସ୍ୱ ସତ୍ତା ଦେଇ ଜୀବନ ଅତିବାହିତ କରିନାହିଁ । ମୁଁ ମୋର ନିଜର ବାହାରରେ ଆଉ ଜଣକୁ ଗଢ଼ି ତୋଳିଥିଲି । ସେଥିଲେ ପ୍ରେସି-ଡେଣ୍ଟଙ୍କ ପତ୍ନୀ । ମୁଁ ମୋ ନିଜ ମଧ୍ୟରେ କେଉଁ ଅଥଳ ଜଳରେ ଯେ ବୁଡ଼ି ରହିଥିଲି, ତାହା ଜାଣେ ନାହିଁ । ହ୍ୱାଇଟ ହାଉସ ଛାଡ଼ିବା ଦିନଠୁଁ ମୋ ମନୋଭାବ ଏପରି ହୋଇ ଯାଇଛି ।

ଯେଉଁମାନଙ୍କ ସଙ୍ଗରେ ଜୀବନ କଟାଇଛୁ, ଯେଉଁମାନେ ହୃଦୟର ଗଭୀର ଭାବାବେଗ ଦେଇ ସେବା କରିଛନ୍ତି, ସେମାନଙ୍କୁ ବିଦାୟ ସମ୍ଭାଷଣ ଦିଆଯାଇ ନପାରେ । ଏବେ ତାର ତ ପରିସମାପ୍ତି ଘଟିଲା । ମୋତେ ଏବେ ନିଜକୁ ନେଇ ରହିବାକୁ ହେବ ।